# ଆମ ଜୀବନ ବିଦ୍ୟାଳୟ



ସଂକଳକ
ଚୈତନ୍ୟ ପ୍ରସାଦ ସେଠୀ

ଶିକ୍ଷାସନ୍ଧାନ
ଭୁବନେଶ୍ୱର

# ଆମ ଜୀବନ ବିଦ୍ୟାଳୟ

ସଙ୍କଳକ — ଚୈତନ୍ୟ ପ୍ରସାଦ ସେଠୀ

ପ୍ରକାଶକ — **ଶିକ୍ଷାସନ୍ଧାନ,**
ଏନ୍.ଡ଼ି-୭, ଭି.ଆ.ପି ଏରିଆ
ନୟାପଲ୍ଲୀ, ଭୁବନେଶ୍ୱର-୭୫୧୦୦୩,
ଫୋନ୍-୦୬୭୪-୨୫୫୬୧୦୯, ୨୫୫୦୬୫୬

ମୁଦ୍ରଣ — **ଶିକ୍ଷାପ୍ରକାଶନୀ,**
ଏ-୧୨, ହାଉସିଂ ବୋର୍ଡ଼ କଲୋନୀ, ବରମୁଣ୍ଡା,
ଭୁବନେଶ୍ୱର-୭୫୧୦୦୩,

ପ୍ରଚ୍ଛଦ — ଦିବାକର ଭାଇ (ଜୀବନ ବିଦ୍ୟାଳୟର ପୁରାତନ ଛାତ୍ର)

ପ୍ରକାଶନ — ଜୁନ୍, ୨୦୧୦

ଆଇ.ଏସ୍.ବି.ଏନ୍ : ୧୩ : ୯୭୮-୮୧-୮୭୯୮୨-୬୧-୬

ମୂଲ୍ୟ — ଟ. ୭୦/-

---

## Ama Jibana Vidyalaya

Compiled by Chaitanya Prasad Sethi

Publisher — **Sikshasandhan,**
ND-7, VIP area, Nayaplly
Bhubaneswar

Printed at — **Siksha Prakashani,**
A-12, Housing Board Colony, Baramunda,
Bhubaneswar-751003,
Ph-0674-2556109,2550656

Cover Design — Dibakar Bhai (Ex-student of Jiban Vidyalaya)

First Edition — June, 2010

I.S.B.N — 13 : 978-81-87982-61-6

Price — Rs. 70/-

# ଉତ୍ସର୍ଗ

ଶିକ୍ଷା ମାଧ୍ୟମରେ ସୁସମାଜ, ସୁନାଗରିକ ଓ ଦେଶ ଗଢ଼ିବାରେ ଜୀବନ ବିଦ୍ୟାଳୟ୍ ହିଁ ସକଳ ଦୃଷ୍ଟିରୁ ଏକ ସ୍ୱପ୍ନ ଥିଲା । ଏବେ ମଧ୍ୟ ତା'ର ମୁମୂର୍ଷ ଅବସ୍ଥାରେ ସେ ଆସ୍ଥାନଟି ସେଇ ଅନନ୍ୟ ସ୍ୱପ୍ନର ପ୍ରେରଣା ଆମକୁ ଯୋଗାଇ ଦେଉଛି । ଯେଉଁମାନେ ଆଗାମୀ ଦିନର ପୂର୍ଣ୍ଣାଙ୍ଗ ଜୀବନ ଓ ପୂର୍ଣ୍ଣାଙ୍ଗ ଶିକ୍ଷାର ସ୍ୱପ୍ନ ଆଜି ଦେଖୁଥିବେ, ସେଇ ମାନଙ୍କର ପବିତ୍ର କର କମଳରେ ଜୀବନ ବିଦ୍ୟାଳୟର ସ୍ମୃତି ଅନୁଭୂତିପୂର୍ଣ୍ଣ ଆଲେଖ୍ୟ-ସଂକଳନ ଆମ ଜୀବନ ବିଦ୍ୟାଳୟଟି ବିନମ୍ରତାର ସହିତ ଅର୍ପିତ ।

ସଂକଳକ

**ଚୈତନ୍ୟ ପ୍ରସାଦ ସେଠୀ**

# ସୂଚୀପତ୍ର



□

# ପ୍ରଥମରୁ ପଦେ

## (କ)

ସରକାରୀ କଲେଜମାନଙ୍କରେ ଅଧ୍ୟାପନା କରୁଥିବା କାଳରେ ମୋର ବହୁ ଅଧ୍ୟାପକ ବନ୍ଧୁମାନେ ସମୟେ ସମୟେ ବେଶ୍ କୌତୁହଳି ହୋଇ ପିଲାଦିନେ ମୁଁ ପାଠ ପଢୁଥିବା ଜୀବନ ବିଦ୍ୟାଳୟ ସମ୍ପର୍କରେ କିଛି ଜାଣିବା ପାଇଁ ମୋତେ ନାନା ପ୍ରଶ୍ନ ପଚାରିଥାଆନ୍ତି। ମୋ ତୁଣ୍ଡରୁ ସେ ସବୁର ଉତ୍ତର ଶୁଣି ଯେତିକି ଖୁସି ହୁଅନ୍ତି ତତୋଃଧିକ ମ୍ରିୟମାଣ ହୋଇ କହନ୍ତି ଯେ-ସେପରି ଏକ ଜୀବନଧର୍ମୀ ଶିକ୍ଷାଧାରା ଓ ଆଦର୍ଶ ଶିକ୍ଷାୟତନ ତଥା ତହିଁରେ ଅନୁସୃତ ହେଉଥିବା ଅଧ୍ୟାପନା ପ୍ରଣାଳୀଟିର ଅକାଳ ଅବସାନ ସତରେ ଆମ ଦେଶ ଏବଂ ଜାତି ପାଇଁ ଏକ ଅଭାବନୀୟ ଦୁଃଖଦ ଘଟଣା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ। ପୁଣି ମୋ ଉପରେ ସେମାନେ ଦୋଷାରୋପ କରି କହନ୍ତି ଯେ- ସେଇ ଜୀବନ ବିଦ୍ୟାଳୟ ବିଷୟରେ ତୁ କିଛି ତୋ ଲେଖାଲେଖି ମାଧ୍ୟମରେ ଆଲୋକପାତ କରୁନାହୁଁ କାହିଁକି ? ସେତେବେଳେକୁ ମୁଁ ପ୍ରକୃତରେ ଅସହାୟ ଭାବେ ଚୁପ୍ ହୋଇ ରହିଥାଏ।

ଏପରି ଚୁପ୍ ହୋଇ ରହିଯିବାକୁ ଦୁଇଟି କାରଣ ମୋତେ ବାଧ୍ୟ କରନ୍ତି। ପ୍ରଥମତଃ ଚିତ୍ତଭାଇ (ପ୍ରଫେସର ଚିତ୍ତରଞ୍ଜନ ଦାସ, ଯିଏ ସେ ଅନୁଷ୍ଠାନର ପ୍ରତିଷ୍ଠାତା-ସଦସ୍ୟ ଓ ପ୍ରଧାନ ଶିକ୍ଷକ ଥିଲେ।) ସେ ଏପରି ଜଣେ ଅନନ୍ୟ ସୁପରିଚିତ ଶିକ୍ଷାବିତ୍, ସୁପ୍ରସିଦ୍ଧ ସାହିତ୍ୟ ଓ ସଂସ୍କୃତି, ଧର୍ମ ଚେତନାର ଗବେଷକ ଦାର୍ଶନିକ ଓ ନୂଆ ନୂଆ ମାନବଧର୍ମୀ ଚିନ୍ତା ତଥା ଚେତନାଯୁକ୍ତ ମନସ୍ତତ୍ତ୍ୱବିତ୍, ଯେ ତାଙ୍କଦ୍ୱାରା ଲିଖିତ (ଆମ ସ୍କୁଲ ବିଷୟରେ) "ଜଙ୍ଗଲ ଚିଠି" "ଜୀବନ ବିଦ୍ୟାଳୟ" ଭଳି ବହୁଜନ ଆଦୃତ, ସାହିତ୍ୟ ଏକାଡ଼େମୀ ପୁରସ୍କୃତ ବହି ଥାଉଁ ଥାଉଁ ମୁଁ ଅଧିକ ଅବା କ'ଣ ଲେଖି ପାରିବି !! ଦ୍ୱିତୀୟ କାରଣଟି ହେଉଛି, ଜୀବନ ବିଦ୍ୟାଳୟର ଏପରି ଅଭାବନୀୟ ଅଧୋଃଗତି ହୋଇଯିବା ପଛରେ ତତ୍କାଳୀନ ସର୍ବୋଚ୍ଚ ଶିକ୍ଷା ନିର୍ଦ୍ଦେଶକ (D.P.I.), ବିଦ୍ୟାଳୟର ପରିଚାଳନା ମଣ୍ଡଳିରେ ଥିବା ବ୍ୟକ୍ତି ବିଶେଷମାନଙ୍କର ପିଲାଖେଳ ପରି ମାନ ଅଭିମାନର ଖିଆଲି ଭାବ ଓ ତତ୍ସମ୍ବନ୍ଧିତ କାର୍ଯ୍ୟାବଳୀମାନଙ୍କର ସ୍ମୃତିଚାରଣା କରି ନିଜେ ଅସହାୟ ଭାବେ ଦୁଃଖ କରିବା ଛଡ଼ା ମୋ ଦ୍ୱାରା ଯେ ସକାରାତ୍ମକ ଭାବେ

ନିର୍ଦ୍ଦିଷ୍ଟ କିଛି ହୋଇପାରିବ, ତାହାର ଅଭାବ ବୋଧ ମୋତେ ଏ କାର୍ଯ୍ୟ ପ୍ରତି ବୀତସ୍ପୃହ କରି ପକାଇଲା । ତେଣୁ ମୁଁ ଏଯାବତ୍ ନୀରବ ରହି ବସିଥିଲି ।

ମାତ୍ର ପରବର୍ତ୍ତୀ ସମୟରେ ମୋର ଚାକିରୀକାଳ ପୂରିଯିବା ପରେ ସେଇ ଅଧ୍ୟାପକ ବନ୍ଧୁମାନଙ୍କ ତରଫରୁ ଅଧ୍ୟାପକ ସନତ୍ ଦାସ ପଟ୍ଟନାୟକ, ଓ ଡ଼ଃ ଗିରୀଶ ଚନ୍ଦ୍ର ମିଶ୍ର ଜୀବନ ବିଦ୍ୟାଳୟର ସ୍ମୃତିଚାରଣା କରିବା ପାଇଁ ପୁନର୍ବାର ମୋତେ ଉସୁକାଇ ବାରେ ଲାଗିଲେ । ଏତିକି ବେଳକୁ ଚିତ୍ତଭାଇ ଓ ଭାଉଜ (ପ୍ରଫେସର ଡ଼ଃ ଉଷା ଦାସ) ଦିନେ ୨୦୦୭ ମସିହା ଡ଼ିସେମ୍ବର ମାସ ଶୀତ ଶୀତୁଆ ଉପର ବେଳାରେ ହଠାତ୍ ମୋ ଘରେ ଆସି ପହଞ୍ଚିଗଲେ । ସେଦିନ ଆମଘରେ ଗୋଟାଏ ଖୁବ୍ ଖୁସିର ଆସର ଜମି ଉଠିଲା । ଆମେ ସମସ୍ତେ ଏକାଠି ବସି ନାନା ଭଲ ମନ୍ଦ ବିଷୟର ଚର୍ଚ୍ଚା ଭିତରେ ଆଜିକାଲିକାର ବିଦ୍ୟାଳୟ ଓ ମହାବିଦ୍ୟାଳୟର ଶିକ୍ଷାରେ କିପରି ଅହେତୁକ ଅଧୋଗତି ହୋଇ ଚାଲିଛି, ସେ ବିଷୟରେ ମଧ୍ୟ ଘମାଘୋଟ ଆଲୋଚନା କରିଲୁ । ଏତିକିବେଳେ ମୋ' ପୁଅ ଜୀବନ ବିଦ୍ୟାଳୟ କଥା ଉଠାଇ କଥାର ମୋଡ଼ ବଦଳାଇ ଦେଲା । ତେଣୁ ଚିତ୍ତଭାଇ ମୋତେ ଦୋଷାରୋପ କରି କହିଲେ- "ଚୈତନ୍ୟ ସେ ବିଦ୍ୟାଳୟର ଛାତ୍ର ହୋଇ ମଧ୍ୟ ଏବେ ସୁଦ୍ଧା ସେ ବିଷୟରେ ନା' କିଛି ଭାବିଲା, ନା' କିଛି ତା'ର ସ୍ମୃତି ଚାରଣା କଲା ! ଖାଲି କବିତା ଲେଖି ସମୟ ବର୍‌ବାଦ କଲା ।" ଏ କଥା ଶୁଣି କଟା ଘାଆରେ ପୁଣି ଆଘାତ ଦେଲାପରି ମୋତେ ତୀର୍ଯ୍ୟକ ଭାବେ ମୋ ପୁଅ କହିଲା- "ସତରେ ବାପା ! ତମେ କିଛି କରିବା ଉଚିତ ଥିଲା ।"

ଏ କଥା ସବୁ ଶୁଣିବା ପରେ ମୋତେ ବି କେମିତି କେମିତି ନିଜକୁ ଦୋଷୀ ଦୋଷୀ ପରି ଲାଗିଲା । ସେ ଦିନ ସନ୍ଧ୍ୟାବେଳେ ଚିତ୍ତଭାଇ ଓ ଭାଉଜଙ୍କୁ ଆମ ଘର ପାଖ ସ୍କୁଲ ପାଖରେ ବଳେଇ ଦେଇ ଫେରିବା ବାଟରେ ମନେ ମନେ ସ୍ଥିର କଲି ଯେ-ସେତେବେଳେ ଆମ ସ୍କୁଲରେ ପାଠ ପଢୁଥିବା ଛାତ୍ର ଭାଇ ଭଉଣୀମାନଙ୍କର ଠିକଣା ସଂଗ୍ରହ କରି ତାଙ୍କୁ ବ୍ୟକ୍ତିଗତ ଭାବେ ଅନୁରୋଧ କରିବି । ସେମାନେ ସେମାନଙ୍କର ଚମ୍ପତିମୁଣ୍ଡା ଜୀବନ ବିଦ୍ୟାଳୟରେ ଥିବା ଅବଧି ଭିତରର ସ୍ମୃତି ଓ ଅନୁଭୂତି ବିଷୟରେ ଲେଖି ମୋ ଠିକଣାରେ ପଠାଇଲେ ସେ ସବୁକୁ ଏକାଠି କରି ଗୋଟିଏ ବହି କରିବା । ତଦନୁଯାୟୀ କାର୍ଯ୍ୟରେ ଲାଗିପଡ଼ିଲି । ଯେଉଁ ଭାଇଭଉଣୀମାନଙ୍କର ଫୋନ୍ ନମ୍ବର ପାଇଲି, ତାଙ୍କୁ ଫୋନ୍‌ରେ ଅନୁରୋଧ କରିଲି ଓ ଅନ୍ୟମାନଙ୍କୁ ପୋଷ୍ଟକାର୍ଡ ଖଣ୍ଡେ ଖଣ୍ଡେ ଲେଖି ତହିଁରେ ମଧ୍ୟ ସେମାନଙ୍କଠାରୁ ଲେଖା ମଗାଇଲି ।

ମାତ୍ର ଏଥିରେ ପ୍ରଥମେ ପ୍ରଥମେ ମୋତେ ନିରାଶ ହେବାକୁ ପଡ଼ିଥିଲା । ପ୍ରଥମେ ବିଦ୍ୟାଳୟର ସର୍ବ ପ୍ରଥମ ବ୍ୟାଚ୍‌ର ଜଣେ ପ୍ରମୁଖ ଭାଇଙ୍କୁ ଫୋନ୍ କରି ମୋ ଅଭିପ୍ରାୟ

ଜଣାଇବାରୁ ସେ ଅତି ବେଖାତିର ଭାବେ ଅନୁଗୋଳ ବାଜିରାଉତ ଛାତ୍ରାବାସ ଓ ଜୀବନ ବିଦ୍ୟାଳୟ ପ୍ରତି ତାଙ୍କର ନାନା କାରଣରୁ ରହି ଆସିଥିବା ବିତୃଷ୍ଣା ହେତୁରୁ ଏପରି ଏକ କାର୍ଯ୍ୟରେ ହାତ ଦେବା ଆଦୌ ଉଚିତ୍ ନୁହେଁ ବୋଲି କହିଲେ। ତଥାପି ତାଙ୍କୁ ବହୁତ ବୁଝାଇବା ପରେ ଏକ ଉଦାସିଆ ଭାବ ରଖି କହିଲେ- 'ହଉ, ଦେଖିବା', ଏବଂ ସାଙ୍ଗେ ସାଙ୍ଗେ ତାଙ୍କ ଫୋନ୍‌ଟି ଥୋଇଦେଲେ। ସେ ମଧ୍ୟ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କ ଲେଖା ଦେଲେ ନାହିଁ। କିନ୍ତୁ ଖୁସୀର କଥା ଯେ- ପରବର୍ତ୍ତୀ ସମୟରେ ଅନ୍ୟମାନେ (ଯେଉଁମାନଙ୍କର ଲେଖା ଏ ବହିରେ ଗୁନ୍ଥା ହୋଇଛି) ଜଣକ ପରେ ଜଣେ ନିଜେ ନିଜର ଲେଖାଟି ମାନ ମୋ ପାଖକୁ ଆଗ୍ରହର ସହ ପଠାଇବାକୁ ଲାଗିଲେ। ତେଣୁ ସେମାନଙ୍କ ପାଖରେ ଆଜି ମୁଁ ବହୁତ କୃତଜ୍ଞ।

ଅନୁଗୋଳର ଆନନ୍ଦ ଭାଇ (ଆର୍ଟିଷ୍ଟ ଶ୍ରୀଯୁକ୍ତ ଆନନ୍ଦ ଚନ୍ଦ୍ର ପଣ୍ଡା) ଓ ଢ଼େଙ୍କାନାଳ ସ୍ୱୟଂଶାସିତ ମହାବିଦ୍ୟାଳୟର ଇଂରାଜୀ ପ୍ରାଧ୍ୟାପକ ଶ୍ରୀଯୁକ୍ତ ବେଣୁଧର ଚମ୍ପତି (ଆମ ଗାଁ ଭାଇ), ଦୁହେଁଯାକ ଅଯାଚିତ ଭାବେ ମୋତେ ବହୁ ଦିଗରୁ ଅନେକ ସାହାଯ୍ୟ କରି ଥିବାରୁ ଇତ୍ୟବସରରେ ତାଙ୍କୁ ମୁଁ କୃତଜ୍ଞତା ଜ୍ଞାପନ କରୁଛି। ଆଜିକାଲିର ମହରଗ ଯୁଗରେ ଶିକ୍ଷା ସନ୍ଧାନ ପ୍ରକାଶନ ସଂସ୍ଥାର ଅନୀଲ ଭାଇ (ଶ୍ରୀଯୁକ୍ତ ଅନୀଲ୍ ପ୍ରଧାନ) ସାଦରେ ଏ ବହିଟିର ମୁଦ୍ରଣ ଭାର ଗ୍ରହଣ କରିବା ପାଇଁ ଆଗ୍ରହ ଦେଖାଇଥିବାରୁ ତାଙ୍କ ପାଖରେ ମୁଁ ଚିରକୃତଜ୍ଞ ରହିବି। ଘରର ଯାବତୀୟ ଜଂଜାଳ ଭିତରେ ବହିଟିର କଳେବର ଛାପା ହେବା ପୂର୍ବରୁ ସବୁଗୁଡ଼ିକ ସଜେଇବାରେ ସାହାଯ୍ୟ କରିଥିବାରୁ ପ୍ରମିଳା (ମୋ ଧର୍ମପତ୍ନୀ)ଙ୍କୁ ମଧ୍ୟ ଏଇ ଅବସରରେ ସାଧୁବାଦ ଦେଉଛି। ଅଧ୍ୟାପକ ବଂଧୁ ଇଂରାଜୀ ପ୍ରାଧ୍ୟାପକ ଶ୍ରୀ ସନତ୍‌ଦାସ ପଟ୍ଟନାୟକ ଓ ପ୍ରାଧ୍ୟାପକ ଡ଼ଃ ଗିରୀଶ ଚନ୍ଦ୍ର ମିଶ୍ରଙ୍କର ଉତ୍ସାହ ଓ ପ୍ରରୋଚନା ଏ ବହିଟିର ରୂପାୟନ ପାଇଁ ମୁଖ୍ୟତଃ ଦାୟୀ। ତେଣୁ ସେ ଦୁହିଁଙ୍କୁ ମଧ୍ୟ ମୋର କୃତଜ୍ଞତା ଜଣାଉଛି। ପରିଶେଷରେ ପରିଶିଷ୍ଟରେ ଦିଆଯାଇଥିବା ଜୀବନ ବିଦ୍ୟାଳୟର କିଛି ଫଟୋ ଉତ୍ସାହର ସହ ତା'ର ଅନୁଗୋଳ ଷ୍ଟଡ଼ି ଟୁର୍ ବେଳେ ଆମ ଜୀବନ ବିଦ୍ୟାଳୟକୁ ଯାଇ ଉଠାଇ ଆଣିଥିବାରୁ ସାଇଶ୍ରୀ ଲୋକନାଥ ପ୍ରସାଦ ସେଠୀ (ମୋ ପୁଅ)କୁ ଧନ୍ୟବାଦ ଜଣାଉଛି।

ଆଶା ଓ ବିଶ୍ୱାସ, ଓଡ଼ିଶାର ଯେଉଁ ସଚେତନ ପାଠକମାନେ ଶିକ୍ଷାଭଳି ଏକ ମହତ୍ୱପୂର୍ଣ୍ଣ ସମସ୍ୟାକୁ ନେଇ ଆଜିକାଲିର ଶିକ୍ଷାରେ ଦୃଶ୍ୟମାନ ହେଉଥିବା ନାନା ବ୍ୟଷ୍ଟିଗତ, ସମଷ୍ଟିଗତ, ସାମାଜିକ, ସାଂସ୍କୃତିକ ଓ ଧର୍ମୀୟ ଅଭାବବୋଧକୁ ନେଇ ଚିନ୍ତିତ ହେଉଛନ୍ତି, ସେମାନଙ୍କୁ ଜୀବନ ବିଦ୍ୟାଳୟର ଶିକ୍ଷାପଦ୍ଧତିର ପରିଚୟ ଦେଶର

ଭବିଷ୍ୟତ ଶିକ୍ଷା ଯୋଜନାର ଆଲେଖ୍ୟ ତିଆରି କରିଲା ବେଳକୁ ବହୁତ କିଛି ସାହାଯ୍ୟ କରିବ ।

## (ଖ)

ବିଦେଶୀମାନଙ୍କ କବଳରୁ ଆମ ଦେଶ ସ୍ୱାଧିନ ହେଲା । ଲୋକେ ନିଃଶ୍ୱାସ ମାରି ଭାବିଲେ- ତାଙ୍କ ଜୀବନର ବହୁ ଅବହେଳିତ ପରିବେଶର କିଛି ଉନ୍ନତି ହୋଇପାରିଲେ ସେମାନଙ୍କର ସର୍ବାଙ୍ଗିନ ଉନ୍ନତି ସମ୍ଭବପର ହୋଇପାରିବ । ବିଶେଷ କରି ଭାରତୀୟ ଜନଜୀବନରେ ଶିକ୍ଷାର ଏକ ଜାତୀୟ ଜୀବନାଭିମୁଖୀ ଆଲୋକିତ ସଂସ୍କାର ହୋଇପାରିଲେ ସମସ୍ତେ ସମାନ ଭାବେ ଶିକ୍ଷାର ସର୍ବନିମ୍ନ ସ୍ୱାଦ ଓ ସୁବିଧା ପାଇପାରିବେ ବୋଲି ସେତେବେଳେର ବହୁ ଛୋଟ ବଡ଼ ଆଦର୍ଶନିଷ୍ଠ ସ୍ୱାଧିନତା ସଂଗ୍ରାମୀମାନେ ଚିନ୍ତା ଓ ଚର୍ଚ୍ଚା କରିବସିଲେ । ଆମ ଓଡ଼ିଶାରେ ମଧ୍ୟ ସେଇ ଚେତନା ଓ ଚିନ୍ତା ଯେଉଁମାନଙ୍କୁ ଘାରିଥିଲା, ସେମାନଙ୍କ ଭିତରୁ ସତ୍ୟବାଦୀ ବନବିଦ୍ୟାଳୟର ପଞ୍ଚସଖାଙ୍କର ଉଦ୍ୟମ ଓ ଅୟମାରମ୍ଭ ପରେ ଭୂତପୂର୍ବ ମୁଖ୍ୟମନ୍ତ୍ରୀ ୰ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ, ୰ଶ୍ରୀମତୀ ମାଳତୀ ଚୌଧୁରୀ ଓ ପ୍ରଫେସର ଚିତ୍ତରଞ୍ଜନ ଦାସଙ୍କୁ ଆମେ ପ୍ରଥମତଃ ସ୍ମରଣ କରିଥାଉଁ ।

ଏଇ ଦୂରଦ୍ରଷ୍ଟା ଚିନ୍ତାନାୟକମାନେ ଭଲ ଭାବେ ହୃଦୟଙ୍ଗମ କରି ପାରିଥିଲେ ଯେ- ଇଂରେଜ ଅମଳରେ ପ୍ରଚଳିତ ଶିକ୍ଷା, କେବଳ ଗୁଡ଼ିଏ ପରାଙ୍ଗ୍‌ପୁଷ୍ଟ ବାବୁ ସୃଷ୍ଟି କରିବା ବ୍ୟତୀତ ଆମ ସମାଜ, ଦେଶ, ଜାତି ଓ ସଂସ୍କୃତିର ସାମୂହିକ ତଥା ସର୍ବାଙ୍ଗିନ ଉନ୍ନତି ପରିକଳ୍ପେ କିଛି କରି ପାରିବେନାହିଁ । ସେମାନେ ଯେନତେନ ପ୍ରକାରେଣ ପରୋକ୍ଷରେ ଅଥବା ପ୍ରତ୍ୟକ୍ଷରେ ଅନ୍ୟର ତଣ୍ଟି ଚିପି ନିଜସ୍ୱ ଅଣ୍ଟି ଭରଣରେ ସାରାଜୀବନ ବ୍ୟାପୃତ ରହିବେ, ଯଦ୍ୱାରା ସାମାଜିକ ଜୀବନରେ ଶିକ୍ଷିତ ଅଶିକ୍ଷିତ, ଧନୀ ଦରିଦ୍ର, ଉଚ୍ଚନୀଚ ଭଳି ନାନା ଶ୍ରେଣୀ ବିଭାଜନ ଦୃଢ଼ରୁ ଦୃଢ଼ତର ହୋଇ ରହି ଗଡ଼ି ଚାଲିଥିବ । ଭାରତୀୟ ସଂସ୍କୃତିର ମହାନ ଆଦର୍ଶ ଯାହା ସାମାଜିକ ଜୀବନରେ ଚିରଭାସ୍ୱର- "ବସୁଧୈବ କୁଟୁମ୍ବକମ୍" ନୀତି ନିୟମଟି କେଉଁ ସୁଦୂର ପରାହତ ହୋଇ ରହିବ ।

ଆମ ଦେଶରେ ଇଂରେଜମାନଙ୍କ ପ୍ରଚଳିତ ଶିକ୍ଷା ସେତେବେଳେ ସେମାନଙ୍କର ଲକ୍ଷ୍ୟ ସାଧନ ପାଇଁ କେବଳ ଉଦ୍ଦିଷ୍ଟ ଥିଲା । ସେଇ ଶିକ୍ଷାର ବଦ-ଅକଲ୍‌ରେ ପରିଚାଳିତ ଆମ ଦେଶୀୟ ବାବୁମାନେ ନିଜର ସୁଖ ଓ ସ୍ୱାଚ୍ଛନ୍ଦକୁ ଆଖି ଆଗରେ ରଖି ଇଂରେଜମାନଙ୍କ ତୋଷଣରେ ଜୀବନ ବିତାଉଥିଲେ । ନା' ଥିଲା ତାଙ୍କର ସ୍ୱଦେଶୀ ସାଂସ୍କୃତିକ ସ୍ୱାଭିମାନ, ନା' ନିଜ ନିଜ ଦେଶର ଲୋକଙ୍କ ପାଇଁ କିଛି ହିତ ଚିନ୍ତା । ବରଂ

ବିଦେଶୀ ସଂସ୍କୃତିର ଅନ୍ଧାନୁକରଣ କରି ସେମାନେ ଆମ ଭାରତର ଚାଷଚବାସ ଭରା ଆତ୍ମୀୟ ସାମାଜିକ ଜନଜୀବନର ସହଜ, ସରଳ, ସୁଖକର ପରିବେଶଟିରେ ନିଜେ ନିଜକୁ ଅଲଗା ଏକ ଉଚ୍ଚ ଗୋଷ୍ଠିର ବୋଲି ପରିଚିତ କରାଉଥିଲେ, ଯାହାର ଫଳସ୍ୱରୂପ, ଆଜି ମଧ୍ୟ ଆମ ପରିବାର ଭିତରେ ଓ ସମାଜରେ ନାନା ଭେଦଭାବର ମର୍ମାନ୍ତିକ ବିଭୀଷିକା ଆମକୁ ନାନା ହନ୍ତସନ୍ତରେ ପକାଇ ଦେଇ ଘାଣ୍ଟି ଚକଟି ଚାଲିଛି । ଆମ ପାରିବାରିକ ଜୀବନ ବିଚାର, ଆମ ସାମାଜିକ ଚଳଣି ସବୁ ସେମାନଙ୍କ ଲାଗି ଅରୁଚିକର ଓ ମୂଲ୍ୟହୀନ ହୋଇ ପଡ଼ିଛି ବୋଲି ସେମାନେ ଭାବୁଥିଲେ । ସ୍ୱାର୍ଥ ସର୍ବସ୍ୱ ସ୍ୱାର୍ଥପର ବା ଆପଣା ସୁଖୀର ଚରମ ସୀମାରେ ସେତେବେଳେ ମଣିଷ ଆସି ପହଞ୍ଚି ଯାଇଥିଲା ।

ଇଂରେଜ ଶାସିତ ଭାରତରେ ସେତେବେଳର ପାଠୁଆ, ଅଥବା ଅର୍ଦ୍ଧପାଠୁଆ ସରକାରୀ ଚାକିରିଆ ପୁଅ, ନିଜର ସାମାନ୍ୟତମ ସୁଖ ସୁବିଧା ଓ ଆତ୍ମସମ୍ମାନ ପାଇଁ ଶେଷ ଜୀବନରେ ଉପନୀତ ନିଜ ଅସହାୟ ବୃଦ୍ଧ ବାପକୁ ଇଂଲିସ୍ ଭୁଷି ମାରି ଓ ଗୋଇଠା ମାରି ଆଡ଼େଇ ଦେଇ ଘରୁ ତଡ଼ିଦେବାକୁ ପଶ୍ଚାତ୍‌ପଦ ହେଉନଥିଲା । ଏଇ ପ୍ରଚଳିତ ଶିକ୍ଷା, ଆମ ସମାଜକୁ ଏପରି ସବୁ ଅଭାବନୀୟ ଅବସ୍ଥାକୁ ଠେଲିଦେଇ ଚାଲିଥିଲା ଏବଂ ତାହା ବର୍ତ୍ତମାନ ମଧ୍ୟ ଏ ତଥାକଥିତ ଏକବିଂଶ ଶତାବ୍ଦୀର ସଭ୍ୟ ସମାଜରେ ଭିନ୍ନ ଭିନ୍ନ ପ୍ରକାରେ ଚାଲିଛି ।

ଏଇ ସବୁ କଥା ଜୀବନର ପ୍ରତିଟି ପଦରେ ଦେଖି ଦେଖି ତହିଁରେ ବ୍ୟଥିତ ହୋଇ, ଏ ପ୍ରଚଳିତ ଶିକ୍ଷା ଯେ ଆମ ଜନଜୀବନକୁ ଭାରତର ସ୍ୱକୀୟ ସାମାଜିକ ଏବଂ ସାଂସ୍କୃତିକ ଆଧାର ଦେଇ ଉଚିତ୍ ମାର୍ଗରେ ଆଦୌ ପରିଚାଳିତ କରୁନାହିଁ ଓ କରିପାରିବ ନାହିଁ, ତାହା ସ୍ପଷ୍ଟ ଭାବେ ସେଇ ଉତ୍ସର୍ଗିକୃତ ସ୍ୱାଧିନତା ସଂଗ୍ରାମୀମାନେ ହୃଦ୍‌ବୋଧ କରିପାରିଥିଲେ । ସେମାନେ ଖୁବ୍ ଭଲ ଭାବେ ଜାଣିଥିଲେ ଯେ- ଏଇ ପ୍ରଚଳିତ ଶିକ୍ଷା କଦାପି ଆମଦେଶର ସଂସ୍କୃତି, ଭାରତୀୟ କୃଷି-କୃଷ୍ଟିରେ ଉବୁଟୁବୁ ଜନମନଙ୍କ ଆବଶ୍ୟକତା ଏବଂ ସମସ୍ତ ମାନବିକ ତଥା ଆଧ୍ୟାତ୍ମିକ ମୂଲ୍ୟବୋଧକୁ ସର୍ବାଦୌ ଉପେକ୍ଷା କରି ଚାଲିଛି ଓ ଚାଲିଥିବ । ଏ ଶିକ୍ଷା ଆମକୁ ଆମ ଦେଶୀୟ ଜୀବନର ସ୍ୱାଦ ଦେବା ପରିବର୍ତ୍ତେ, ମରଣର ମହାମାୟାରେ ପକାଇ ଅକୁହା ବେଦନାରେ କ୍ଳେଦାକ୍ତ କରି ଚାଲିଥିବ । ଦେଶର ଏତାଦୃଶ ସାମାଜିକ ଶିକ୍ଷା ବ୍ୟାଧିରୁ କିପରି ନିଷ୍କୃତି ମିଳିପାରିବ, ସେ ବିଷୟରେ ସ୍ୱାଧିନତା ପୂର୍ବ ବନ୍ଦୀ ଜୀବନାବସ୍ଥାରୁ ମଧ୍ୟ ସେମାନେ ବନ୍ଦୀଶାଳାର ଅନ୍ଧାରୀ କକ୍ଷ ଭିତରେ ଥାଇ ପରସ୍ପର ସହ ବିଚାରବିମର୍ଷ କରି ଏକ ନୂତନଶିକ୍ଷା ବ୍ୟବସ୍ଥାର ସ୍ୱପ୍ନ ଦେଖୁଥିଲେ । ଗାନ୍ଧିଜୀଙ୍କ ନୈତାଲିମ୍ ଶିକ୍ଷା ବିଚାର ସହ ଆମ ଦେଶର ଗୁରୁକୁଳ ଶିକ୍ଷା ଦର୍ଶ ତଥା ଆଧୁନିକ

ବିଶ୍ୱର ଅନ୍ୟ ନାନା ବିକଶିତ ଜୀବନାଭିମୁଖୀ ଶିକ୍ଷା ପଦ୍ଧତିକୁ ଏକତ୍ର ବିଚାର କରି ସବୁରିଙ୍କ ଲାଗି ସହଜ ଲଭ୍ୟ ସମୁଚିତ ଶିକ୍ଷା ବ୍ୟବସ୍ଥାଟିର ପ୍ରାରମ୍ଭିକ ନକ୍ସାଟିଏ ବାହାର କରିଥିଲେ। ଅନୁଗୋଳସ୍ଥିତ ବାଜି ରାଉତ ଛାତ୍ରାବାସର ପରିକଳ୍ପନା ଓ ପ୍ରାରମ୍ଭ ତହିଁର ଆଦ୍ୟାରମ୍ଭ ହୋଇ ସେତେବେଳେ ପରିପ୍ରକାଶିତ ହୋଇଥିଲା ବୋଲି କହିଲେ ଆଦୌ ଅତ୍ୟୁକ୍ତି ହେବ ନାହିଁ ।

ସେଠି ସ୍ୱାଧିନତା ସଂଗ୍ରାମୀମାନଙ୍କର ଅବହେଳିତ ପୁଅଝିଅଙ୍କୁ ଏକତ୍ର ଆବାସିକ ଶିକ୍ଷା ବ୍ୟବସ୍ଥାରେ ପ୍ରଥମେ ସାମିଲ କରି ମୌଳିକ ଶିକ୍ଷାର ଏକ ପ୍ରୟୋଗ ଆରମ୍ଭ କରାଯାଇଥିଲା । ପରେ ପରେ ସାରା ଓଡ଼ିଶାର ସବୁ ଅଭାବୀଘରର ପିଲାମାନଙ୍କ ସହ ଆଦିବାସୀ ଓ ହରିଜନ ପିଲାମାନଙ୍କୁ ବାଛି ବାଛି ଆଣି ନୂଆ ଏକ ଶିକ୍ଷା ଧାରାରେ ଶିକ୍ଷିତ କରାଇବାର ପ୍ରଚେଷ୍ଟା ଚାଲିଲା । ସେଇ ନୂତନ ଶିକ୍ଷା ପଦ୍ଧତିଟିର କ୍ରମବର୍ଦ୍ଧିଷ୍ଣୁ ଆଲୋକିତ କାଯ୍ୟରୁ ଆମ ଦେଶ ତଥା ଜାତିର ସ୍ୱକୀୟ ସାମାଜିକ ମୂଲ୍ୟବୋଧ, ସାଂସ୍କୃତିକ ଚେତନା, ଦେଶପ୍ରେମ, ଶାରୀରିକ ପରିଶ୍ରମର ମର୍ଯ୍ୟାଦା, ଜୀବନରେ ସ୍ୱାବଲମ୍ବନଶୀଳତା ଇତ୍ୟାଦିର ସମ୍ୟକ୍ ସମନ୍ୱୋୟଧର୍ମି ଜୀବନ ଚଳଣି ପ୍ରକଟିତ ହେବାର ଅନୁଭୂତି ମିଳିଲା । ସେଇ ଶିକ୍ଷା ପ୍ରଥମତଃ ଜୀବନକୁ ମୂଳ କେନ୍ଦ୍ର କରି ଗଢ଼ି ଉଠିଲା । ସେଠି ଜୀବନ ଭିତର ଦେଇ ଶିକ୍ଷା ଓ ଶିକ୍ଷା ଭିତର ଦେଇ ଜୀବନକୁ ଗଢ଼ିବାର ଅଭିନବ ଶିକ୍ଷା ପ୍ରୟୋଗଟିଏ ଚାଲିଲା । ସେଇଠାରେ ସମ୍ଭବତଃ "ଜୀବନ ବିଦ୍ୟାଳୟ"ର ପରିକଳ୍ପନା କରାଯାଇଥିଲା ।

ସାଧାରଣତଃ, ବିଦ୍ୟାଳୟ ବିଦ୍ୟାର୍ଜନର ସ୍ଥାନ । ମାତ୍ର ସବୁ ବିଦ୍ୟାଳୟରେ ଶିକ୍ଷା ଏଯାବତ୍ ସାର୍ବଜନୀନ ହୋଇପାରିନାହିଁ, ଯାହାଫଳରେ ଆମ ଦେଶରେ, ବିଶେଷ କରି ଓଡ଼ିଶାରେ ସବୁ ପିଲାଏ ଯେ ବିଦ୍ୟାର୍ଜନର ସବୁ ଦୃଷ୍ଟିରୁ ସହଜଲଭ୍ୟ ଆସ୍ଥା ଓ ଆସ୍ଥାନଟିଏ ପାଇ ପାରିବେ, ତାହା ଏ ପର୍ଯ୍ୟନ୍ତ ମଧ୍ୟ ସମସ୍ତଙ୍କ ଲାଗି ଉନ୍ମୋଚିତ ହୋଇପାରିଲା ନାହିଁ। ଆମ ରାଜ୍ୟର ସବୁ ଶିଶୁ ସୁଶିକ୍ଷିତ ହୋଇ ଆସନ୍ତା କାଲିର ସୁନାଗରୀକ ରୂପେ ଉଭା ହୋଇ ରାଜ୍ୟକୁ ସୁଖ ସମୃଦ୍ଧିରେ ଭରିଦେବେ, ଏଇ ସ୍ୱପ୍ନ ପ୍ରାକ୍ ସ୍ୱାଧିନତା କାଳରୁ ଚିନ୍ତାଇ, ସ୍ୱର୍ଗତ ବାପି (ଶ୍ରୀ ନବକୃଷ୍ଣ ଚୌଧୁରୀ), ୰ନୁମା (୰ଶ୍ରୀମତୀ ମାଳତୀ ଚୌଧୁରୀ)ଙ୍କୁ ଅନବରତ ଘାରିଥିଲା । ତେଣୁ ଏକ ସାର୍ବଜନୀନ ଜୀବନାଭିମୁଖୀ ଜୀବନଭିତ୍ତିକ ସ୍ୱାଭାବିକ ଶିକ୍ଷା ପଦ୍ଧତି ଓ ବିଦ୍ୟାଳୟଟି ଏପରି ହେବ, ଯେଉଁଠି ଜୀବନକୁ କେନ୍ଦ୍ର ବିନ୍ଦୁ କରି, ଉଭୟେ ଛାତ୍ର ଓ ଶିକ୍ଷକ ଏକ ମୁକ୍ତ ଓ ନିର୍ଭୟ ବାତାବରଣରେ ପରସ୍ପରର ପରିପୂରକ ଭାବେ କାର୍ଯ୍ୟ କରି ସ୍ୱକୀୟ ବିଦ୍ୟାର୍ଜନ ମାଧ୍ୟମରେ ନିଜକୁ ନିଜ ହାତରେ ଗଢ଼ିତୋଳି ଦେଶର, ଜାତିର ଓ ଲୋକମନର

ଆବଶ୍ୟକତାକୁ ପୂରଣ କରିବାରେ ସମର୍ଥ ହେବେ । ସେଠି ଶିକ୍ଷକ ତଥା ବିଦ୍ୟାର୍ଥୀର ଜୀବନ ଚ଼ର୍ଯ୍ୟାରେ ଆମ ଜାତୀୟ ସଂସ୍କୃତିର ସର୍ବକାଳୀନ ମହତ୍ତ୍ୱ ଓ ସାମାଜିକ ସଦ୍‌ଭାବନା ସହିତ ଜୀବନର ପୂର୍ଣ୍ଣାଙ୍ଗ ବିକାଶର ଆଧ୍ୟାତ୍ମିକ ଦିଗଟି ମଧ୍ୟ ପ୍ରତିଭାତ ହୋଇପାରୁଥିବ, ସେଥିନିମିତ୍ତ ଶିକ୍ଷକର ଦାୟିତ୍ୱ ଜଣେ ସ୍ରଷ୍ଟାର ଦାୟିତ୍ୱଠାରୁ କୌଣସି ଗୁଣରେ କମ୍ ନୁହେଁ । ଏକ ସୃଷ୍ଟିଶୀଳ ମନ ଓ ଜୀବନ ନେଇ ଉତ୍ସର୍ଗିକୃତ ଭାବେ ପ୍ରତ୍ୟେକ ଶିକ୍ଷକ ଛାତ୍ରମାନଙ୍କର ଦିଗ୍‌ଦର୍ଶକ (Guide) ଓ ଆପଣାର ଶୁଭାନୁଧ୍ୟାୟୀ ବଡ଼ ଭାଇଟିଏ ପରି ଛାତ୍ରମାନଙ୍କ ସହ ଜୀବନ ଅତିବାହିତ କରିବା ଲାଗି ସତତ ପ୍ରସ୍ତୁତ ହୋଇ ରହିଥିବେ । ଛାତ୍ରମାନଙ୍କର ଅନ୍ତରଙ୍ଗ ଭାବେ ସେମାନଙ୍କ ନିହାତି ବ୍ୟକ୍ତିଗତ ଓ ସାମୂହିକ ଭାବ ଅଭାବର ଚ଼େତନା ରାଜ୍ୟରେ ବିଚ଼ରଣ କରିପାରୁଥିବେ ଏବଂ ତଦନୁଯାୟୀ ଛାତ୍ରଟିକୁ ସମୁଚ଼ିତ ଦିଗ୍‌ଦର୍ଶନ କରାଇ ପାରୁଥିବେ । ଠିକ୍ ତତ୍‌ସହିତ କଳ୍ପିତ ବିଦ୍ୟାଳୟର ଛାତ୍ର ଛାତ୍ରୀମାନେ ମଧ୍ୟ ବିଦ୍ୟାର୍ଜନ ଲାଗି ନିଷ୍ଠାର ସହିତ ଓ ବିଶ୍ୱାସର ସହିତ ନିଜର ଗ୍ରହଣଶୀଳ ମନ ପାତ୍ରଟିକୁ ଶିକ୍ଷକଙ୍କ ସାମ୍ନାରେ ଜିଜ୍ଞାସୁ ହୃଦୟ ନେଇ ସତତ ଉନ୍ମୋଚ଼ିତ କରି ରଖିପାରୁଥିବେ । ନୁମା, ବାପି ଓ ଚ଼ିତ୍ତଭାଇଙ୍କ ମନୋରାଜ୍ୟରେ ଏହିପରି ଏକ ବିଦ୍ୟାଳୟର ପ୍ରତ୍ୟୟ (concept)ଟି ସୁସଜ୍ଜିତ ହୋଇ ପ୍ରତ୍ୟେକଙ୍କୁ ପ୍ରାରମ୍ଭରୁ ଉଦ୍ଦିପୀତ କରି ଦେଇଥିଲା ।

ସେଇଥିପାଇଁ ଦେଶ ସ୍ୱାଧିନ ହେବା ପରେ ପରେ ଏ ଦେଶର ଜନଜୀବନର ଉନ୍ନତି ପରିକଳ୍ପେ ନୁମା, ବାପି ବହୁ ଗୁରୁତ୍ୱପୂର୍ଣ୍ଣ ଗଠନମୂଳକ କାର୍ଯ୍ୟ ହାତକୁ ନେଇ ବାଜି ରାଉତ ଛାତ୍ରାବାସ, ନବଜୀବନ ମଣ୍ଡଳ, ନାରୀ ଶିକ୍ଷା ଓ ମାତୃମଙ୍ଗଳ, ଭୂଦାନ, ସର୍ବୋଦୟ ଇତ୍ୟାଦିର ପରିଚ଼ାଳନାରେ ସେମାନଙ୍କର ସମସ୍ତ ଶକ୍ତି ଓ ସମୟ ଖଟାଇ ଚ଼ାଲିଲେ । ଏସବୁ ଭିତରେ ଶିକ୍ଷା ସଂସ୍କାରର କଥାଟି ବେଶ୍ ଚ଼ିନ୍ତା କରୁଥିଲେ । ସ୍ୱାଧିନତା ସଂଗ୍ରାମ ଓ କାରାବାସ ଅବଧି ଭିତରେ ସେମାନେ ଚ଼ିତ୍ତଭାଇଙ୍କର ଅତି ନିକଟ ସମ୍ପର୍କରେ ଆସି ଜାଣି ପାରିଥିଲେ ଯେ ସେ ଜଣେ ବହୁ ଦିଗ୍‌ଦର୍ଶୀ ଜ୍ଞାନଦୀପ୍ତ ଉତ୍ସର୍ଗିକୃତ ଉତ୍ସାହୀ ଯୁବକ, ଯିଏ ଶିକ୍ଷା ମାଧ୍ୟମରେ ଦେଶଗଠନର ମହତ୍ୱଟି ଅତି ଅନ୍ତରଙ୍ଗ ଓ ଗଭୀର ଭାବେ ଉପଲବ୍‌ଧି କରି ପାରୁଥିଲେ । ସ୍ୱାଧୀନତା ସଂଗ୍ରାମରେ ଅଳ୍ପବୟସରୁ ଝାସ ଦେଇ ଉଚ୍ଚଶିକ୍ଷା ବାଧାପ୍ରାପ୍ତ ସେଇ ଚ଼ିତ୍ତରଂଜନଙ୍କୁ ଉତ୍ସାହିତ କରି ନୁମା ଓ ବାପି, ତାଙ୍କୁ ଶାନ୍ତି ନିକେତନରେ ଉଚ୍ଚତର ଅଧ୍ୟୟନ କରିବାର ସୁବନ୍ଦୋବସ୍ତ କରି ଦେଇଥିଲେ । ଶାନ୍ତି ନିକେତନରୁ ଶିକ୍ଷା ସମାପ୍ତ ପରେ, ଆହୁରି ଉଚ୍ଚତର ଶିକ୍ଷା ଓ ଗବେଷଣା ପାଇଁ ମଧ୍ୟ ଡ଼େନ୍‌ମାର୍କ ଯିବାପାଇଁ ଚ଼ିତ୍ତରଂଜନଙ୍କୁ ସମସ୍ତ ସାହାଯ୍ୟ ସୁବିଧା କରାଇ ଦେଇଥିଲେ । ତାଙ୍କ ପାଇଁ ଏସବୁ କରିବା ମୂଳରେ ନୁମା, ବାପିଙ୍କର ଗୋଟିଏ ଉଦ୍ଦେଶ୍ୟ ନିହିତ ଥିଲା, ତାହା ହେଉଛି- ଜଣେ ସଚ୍ଚା ଶିକ୍ଷାପ୍ରେମୀ ଉତ୍ସର୍ଗୀକୃତ,

ଉତ୍ସାହୀ, ସ୍ୱଚ୍ଛ ବିଚାରଶୀଳ ଯୁବକଙ୍କର ବହୁ ଦିଗ୍‌ଦର୍ଶୀ ପାଣ୍ଡିତ୍ୟ ଓ ପ୍ରଚେଷ୍ଟାଦ୍ୱାରା ଓଡ଼ିଶାର ଶିକ୍ଷାକ୍ଷେତ୍ରରେ ଏକ ନୂତନ ଉଦ୍ୟୋଗର ପ୍ରାରମ୍ଭ ଓ ତହିଁର ପରିଚାଳନା । ଏଇ କଥାଟି ତାଙ୍କ ରଚିତ ଜୀବନୀ "ମିତ୍ରସ୍ୟ ଚକ୍ଷୁଷା"ରେ ଚିତ୍ତଭାଇ ଉଲ୍ଲେଖ କରିଛନ୍ତି । ସେ ଲେଖିଛନ୍ତି- "ବମ୍ବେରୁ କଲିକତା, କଲିକତାରୁ କଟକ, କଟକରୁ ଗାଁକୁ ନ ଯାଇ ମୁଁ ସିଧା ଅନଗୁଳ ଯାଇଥଲି । ଶ୍ରୀମତୀ ମାଳତୀ ଚୌଧୁରୀଙ୍କର ତତ୍ତ୍ୱାବଧାନରେ ଗତ କେତେ ବର୍ଷ ଧରି ବାଜି ରାଉତ ଛାତ୍ରାବାସ ନାମରେ ଯେଉଁ ଆବାସିକ ସ୍ନେହ ପରିବାରଟି ସାକାର ହୋଇ ଉଠିଥାଏ, ମୁଁ ସେହି ପରିବାରରେ ନାମ ଲେଖାଇବାକୁ ସେଠାକୁ ଗଲି । ପରିବାର ବହୁ ଆଗରୁ ମୋତେ ନିଜ ଭିତରକୁ ଗ୍ରହଣ କରି ନେଇଥିଲା । କେବଳ ମୋର ପଟୁ ହିଁ ଔପଚାରିକ ଭାବରେ ସେଠାକୁ ଯାଇ ନାଆଁ ଲେଖାଇ ଆସିବା ଯାହା ବାକି ଥିଲା । ପ୍ରଧାନତଃ ଶ୍ରୀଯୁକ୍ତ ଓ ଶ୍ରୀମତୀ ଚୌଧୁରୀଙ୍କର ଉତ୍ସାହ ତଥା ଉଦ୍ୟମରେ ହିଁ ମୁଁ ୟୁରୋପକୁ ପାଠ ପଢ଼ି ଯାଇଥିଲି । ୟୁରୋପରୁ ଲେଉଟି ମୁଁ କ'ଣ କରିବି, ସେହିମାନଙ୍କ ସହିତ ଏକତ୍ର ପରାମର୍ଶ କରି ହିଁ ସେ କଥା ଅଳ୍ପ ବହୁତେ ସ୍ଥିର ହୋଇ ସାରିଥିଲା ।" ଏଇ କେଇ ପଦ ଏଠି ସ୍ୱଚ୍ଛ ସୂଚାଇ ଦିଏ ଯେ- ନୂଆ, ବାପିଙ୍କର ପରିକଳ୍ପିତ ନୂତନ ଶିକ୍ଷା ଶୈଳୀର ପ୍ରୟୋଗଟି ଯେଉଁ ବିଦ୍ୟାଳୟରେ ଆରମ୍ଭ କରାଯିବ, ତହିଁର ପୁରୋଧା ବା ମୁଖ୍ୟ ଭାବେ ଚିତ୍ତଭାଇ ହିଁ ରହିବେ ବୋଲି ସେମାନେ ବହୁ ଆଗରୁ ମନସ୍ଥ କରି ଚିତ୍ତଭାଇଙ୍କ ବିଦେଶୀ ଫେରନ୍ତି ବାଟକୁ ଅନାଇଁ ବସିଥିଲେ । ସେଇଥିପାଇଁ ଏକ ଉତ୍ସର୍ଗୀକୃତ ମନ ପ୍ରାଣ ନେଇ ଚିତ୍ତଭାଇ ମଧ୍ୟ କିଛି କମ୍ ସ୍ୱପ୍ନ ବିଭୋର ଓ ରୋମାଞ୍ଚିତ ହୋଇ ବିଦେଶରୁ ୩/୪ ବର୍ଷ ପ୍ରବାସୀ ଜୀବନ ପରେ, ଗାଁରେ ବାପା ବୋଉ, ଜ୍ଞାତି କୁଟୁମ୍ବଙ୍କ ପାଖକୁ ନ ଯାଇ ସିଧା ଅନଗୁଳ ଦୌଡ଼ି ଯାଇଥିଲେ । ଚିତ୍ତଭାଇ ଆସିବା ପରେ ଆମ ଜୀବନ ବିଦ୍ୟାଳୟର ପ୍ରସ୍ତୁତି ପର୍ବ ଜୋର୍‌ସୋର୍‌ରେ ଆରମ୍ଭ ହୋଇଗଲା ।

ନୂତନ ବିଦ୍ୟାଳୟର ଆସ୍ଥାନଟି ପାଇଁ ଅନଗୁଳଠାରୁ ଆଠ ମାଇଲ୍ ଦୂରରେ ପୁରାତନ କଟକ ସମ୍ବଲପୁର ରୋଡ୍ ପାର୍ଶ୍ୱ ଚମ୍ପତିମୁଣ୍ଡାରେ ସରକାରଙ୍କଠାରୁ ୮୦ ଏକର ନିଘୋଡ଼ ଜଙ୍ଗଲ ଜମି ଅଣାଗଲା । ସ୍ଥାନଟି ପ୍ରାକୃତିକ ଶୋଭା ସମ୍ପଦ ଦୃଷ୍ଟିରୁ ବୈଦିକ ଯୁଗର ଗୁରୁକୁଳ ଶିକ୍ଷାଳୟଟିର ଜ୍ଞାନଗମ୍ଭୀର ଆନନ୍ଦ ପରିବେଶଟିଏ ଯୋଗାଇ ଦେବାରେ ବେଶ୍ ଅନୁକୂଳ ଥିଲା । ପ୍ରାୟ ତିନି ଦିଗରେ ନୀଳ ସବୁଜ ପର୍ବତମାଳା । ସ୍ଥାନଟିର ତିନିଦିଗରେ ଗତି କରି କୁଳୁକୁଳୁ ନାଦରେ ବହିଯାଉଥିବା ମୁଗ୍ଧ ମଧୁର ବଣ୍ୟ ଝରଣା । ତା କୂଳେ କୂଳେ ଗଙ୍ଗଶିଉଳି ଗଛର କୁଞ୍ଜ ଓ ଅନ୍ୟ ବହୁ ବଣ୍ୟ ଫୁଲ ଗଛର ସମାହାର ପ୍ରତ୍ୟେକଙ୍କୁ ସେଠି ମୁଗ୍ଧ କରି ଦେଉଥିଲା । ଆସ୍ଥାନଟି ଜୀବନ-ବିଦ୍ୟାଳୟ

ପାଇଁ ଯେମିତି ମା'ଆ ସରସ୍ୱତୀଙ୍କର ଇଚ୍ଛାମତେ ସ୍ୱୟଂ ନାରାୟଣଙ୍କ ନିର୍ଦ୍ଦେଶରେ ପ୍ରକୃତି ପରିପ୍ରକାଶିତ କରି ରଖିଥିଲା । ଶିକ୍ଷା ନୀଡ଼ଟିର ସନ୍ଧାନ ପରେ ଛାତ୍ର ଛାତ୍ରୀଙ୍କ ଯୋଗାଡ଼ ଲାଗି କୋରାପୁଟ, ଗଞ୍ଜାମ, ସମ୍ବଲପୁର, ପୁରୀ, ବାଲେଶ୍ୱର ଇତ୍ୟାଦି ଜିଲ୍ଲା ଗସ୍ତ କରି ମୌଳିକ ସ୍କୁଲମାନଙ୍କରୁ ଅଷ୍ଟମଶ୍ରେଣୀ ପାସ୍ କରି ଥିବା ବାଳକ ବାଳିକାଙ୍କୁ ସାଉଁଟି ଆଣିବାକୁ ଚିତ୍ତଭାଇ ଏକ ଦୀର୍ଘଯାତ୍ରାରେ ବାହାରି, ସଫଳକାମୀ ହୋଇ ଫେରିଲେ ।

ପ୍ରଚଳିତ ଶିକ୍ଷାଳୟ ଓ ଶିକ୍ଷାଠାରୁ ସମ୍ପୂର୍ଣ୍ଣ ଏକ ଅଭିନବ ଶିକ୍ଷା ତଥା ଶିକ୍ଷାଳୟର ସ୍ୱପ୍ନ ଯେଉଁମାନେ ଦେଖୁଥିଲେ, ସେମାନଙ୍କୁ (ନୁମା, ବାପି ଓ ଚିତ୍ତଭାଇଙ୍କୁ) ଚମ୍ପତିମୁଣ୍ଡା ବନ ଉପବନ ପରିବେଶଟି ବେଶ୍ ମନମୁଗ୍ଧକର ବୋଧ ହୋଇଥିଲା । ସ୍ଥାନ ଚୟନରେ ନାନା ବାଛବିଚାର କରି ତାଙ୍କ ମନ ମୁତାବକ ଏଇ ଜାଗାଟିକୁ ପସନ୍ଦରେ ଆଣିଲେ । କାରଣ, ସେମାନେ ଚାହୁଁଥିଲେ, ଅନୁଷ୍ଠାନଟି ଏପରି ଏକ ସ୍ଥାନରେ ଗଢ଼ିଉଠିବ, ଯାହା "ଗାଁ ପାଖ ହୋଇଥିବ, ଅଥଚ ଗାଁ ଭିତରେ ହୋଇ ନଥିବ,- ରାସ୍ତାଘାଟ ଥିବ, ଅଥଚ ସଭ୍ୟତା ଓ ସଭ୍ୟ ସୌଖିନ ଆଦର୍ଶବାଦୀର ଅହରହ ଅତ୍ୟାଚାର ସହିବାକୁ ପଡ଼ିବ ନାହିଁ । ସଂସାରଠାରୁ ବିଚ୍ଛିନ୍ନ ହୋଇ ବୈରାଗ୍ୟର ସାଧନା ଦ୍ୱାରା ମୁକ୍ତି ପାଇବାର ପଣ୍ଡ ଶ୍ରମ ଆମେ କରିବା ନାହିଁ, ଅଥଚ ନିରପକ୍ଷ ନିର୍ଲିପ୍ତ ଭାବରେ ସଂସାରକୁ ଦେଖିବା ଲାଗି ଆମେ ସଂସାରଠାରୁ ଟିକିଏ ବ୍ୟବଧାନରେ ରହିବାର ସୁଯୋଗ ପାଇବା"। (ଜଙ୍ଗଲ ଚିଠି, ଦ୍ୱିତୀୟ ସଂସ୍କରଣ, ପୃଷ୍ଠା- ୧୪)

ଏହାଦ୍ୱାରା ବିଦ୍ୟାଳୟଟି ବୈଦିକ ଗୁରୁକୁଳ ଆଶ୍ରମର ପରିବେଶଟିଏ ଲାଭ କଲା, ଯାହା ପ୍ରାୟ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଓ ପଞ୍ଚସଖାଙ୍କର ଉଦ୍ୟମରେ ଗଢ଼ି ଉଠିଥିବା ତତ୍କାଳୀନ ସତ୍ୟବାଦୀ ବକୁଳ ବନସ୍ଥ ବନ ବିଦ୍ୟାଳୟର ଆନନ୍ଦ ଦେଇପାରିଲା । କଥିତ ଅଛି- କାଳେ ବକୁଳ ବନସ୍ଥ ବନ ବିଦ୍ୟାଳୟରେ ଏକ ନୂଆ ଶିକ୍ଷା ବ୍ୟବସ୍ଥା ଦ୍ୱାରା ମଣିଷ ଗଢ଼ା ଯାଉଥିଲା । ସେଇ ମଣିଷ ଗଢ଼ା କାର୍ଯ୍ୟ ମୁଖ୍ୟତଃ ଏଇ ବନ ବିଦ୍ୟାୟତନର ପ୍ରମୁଖ ଉଦ୍ଦେଶ୍ୟ ବୋଲି ଚିତ୍ତଭାଇଙ୍କ ସମେତ ସଭିଙ୍କର ସ୍ପଷ୍ଟ ଅଭିମୁଖ୍ୟ ଥିଲା । ପାଶ୍ଚାତ୍ୟ ଡେନ୍‌ମାର୍କ ଶିକ୍ଷା ଇତିହାସରେ ପ୍ରାୟ ଦୁଇଶହ ବର୍ଷର ସଫଳତା ବହନ କରି ଅଦ୍ୟାବଧି ଉନ୍ନତ Livetsskole (ଜୀବନ ବିଦ୍ୟାଳୟ) ଶିକ୍ଷା ପଦ୍ଧତିର ସାର ନିର୍ଯ୍ୟାସ, ସତ୍ୟବାଦୀ ବନ ବିଦ୍ୟାଳୟର ଜାତି ଓ ଦେଶାଭିମୁଖୀ ଶିକ୍ଷା ସଂସ୍କାର, କବିଗୁରୁ ରବୀନ୍ଦ୍ର ନାଥ ଠାକୁରଙ୍କ ଶାନ୍ତି ନିକେତନ ଶିକ୍ଷା ଦର୍ଶକୁ ନେଇ ଏକ ସୁସମନ୍ୱିତ ନୂତନ ଶିକ୍ଷାପଦ୍ଧତିଟିଏ ଏଇ ଉଦ୍ଦିଷ୍ଟ ଜୀବନ ବିଦ୍ୟାଳୟର ଶିକ୍ଷା ଧାରାଟି ହେବ ବୋଲି ନୁମା, ବାପି ଓ ଚିତ୍ତଭାଇଙ୍କ ବିଚାର ବିମର୍ଷ କ୍ରମେ ସ୍ଥିର କରାଯାଇ କାର୍ଯ୍ୟାରମ୍ଭ ହେଲା ।

୧୯୫୪ ମସିହା ଅଗଷ୍ଟ ମାସ ୨୬ ତାରିଖ ଦିନ ବାଜି ରାଉତ ଛାତ୍ରାବାସରେ ବିଦ୍ୟାଳୟର ଉଦ୍‌ଘାଟନ ଉତ୍ସବ, ପ୍ରଖ୍ୟାତ ସର୍ବୋଦୟ-ଭୂଦାନ ନେତା ଓ ଗାନ୍ଧିଜୀଙ୍କ ପରିକଳ୍ପିତ ମୌଳିକ ଶିକ୍ଷାର ପ୍ରବକ୍ତା ଶ୍ରୀଯୁକ୍ତ ଧୀରେନ୍ଦ୍ର ମଜୁମ୍‌ଦାରଙ୍କ ପୌରହିତ୍ୟରେ ହୋଇଥିଲା । ସେତେବେଳେ ବାପି (ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ) ଓଡ଼ିଶାର ମୁଖମନ୍ତ୍ରୀ ଥିଲେ । ତେଣୁ ଏଇ ଉତ୍ସବରେ ସେ ନିଜେ ଓ ତାଙ୍କ ମନ୍ତ୍ରୀମଣ୍ଡଳର ଆଉ ୪/୫ ଜଣ ମନ୍ତ୍ରୀଙ୍କ ସମେତ ଅନ୍ୟାନ୍ୟ ନେତୃବୃନ୍ଦ ଓ ସାହିତ୍ୟିକ କାଳିନ୍ଦୀ ଚରଣ ପାଣିଗ୍ରାହୀ ଏବଂ ଡ଼ଃ ମାୟାଧର ମାନସିଂହ ମଧ୍ୟ ଉତ୍ସବଟରେ ଯୋଗ ଦେଇ ବିଦ୍ୟାଳୟର ଶୁଭକାମନା କରି ବକ୍ତୃତାମାନ ଦେଇଥିଲେ । ବିଦ୍ୟାଳୟର ନାମ ଜୀବନ 'ବିଦ୍ୟାଳୟ' ରହିବ ବୋଲି ସେହିଦିନ ଚିତ୍ତଭାଇ ସଭା ଶେଷରେ ସମସ୍ତଙ୍କୁ ଧନ୍ୟବାଦ ଦେବାବେଳେ ସଭାରେ ଘୋଷଣା କରିଥିଲେ । ସେଇଦିନ ଅତି ଚୁମ୍ବକେ ଚୁମ୍ବକେ ବିଦ୍ୟାଳୟଟିର ସ୍ୱକୀୟ ଚିନ୍ତା ଓ ଚେତନାର ଆଭାସ ଚିତ୍ର ସବୁରିଙ୍କ ସମକ୍ଷରେ ଦେଇ ଦେଇ କହିଥିଲେ "ଆମର ଏହି ଉଦ୍ୟମଟି କୌଣସି ଆଦର୍ଶବାଦ କିମ୍ବା ଶାସ୍ତ୍ରର ଅନୁସରଣ କରିବ ନାହିଁ କିମ୍ବା କୌଣସି ନିର୍ଦ୍ଦିଷ୍ଟ ଗୁଳାରେ ଯିବ ନାହିଁ । ଆମେ-ଛାତ୍ର ଓ ଶିକ୍ଷକ ସମସ୍ତେ ଏକାଠି ରହିବୁ, ଏକାଠି ଶିକ୍ଷା କରିବୁ । ନିଜେ, ନିଜକୁ ଯଥା ସମ୍ଭବ ଅଧିକ ଉନ୍ମୋଚିତ କରି ରଖିବୁ । ଆମେ ଜୀବନରୁ ଶିଖିବୁ ଏବଂ ଏହିପରି ଭାବରେ ସହଚାରିତା ଏବଂ ସହ ଅଭିବୃଦ୍ଧିର ନିଜସ୍ୱ ଧାରାଟିଏ ବାହାର କରିବୁ । (ମିତ୍ରସ୍ୟ ଚକ୍ଷୁସା, ୨ୟଭାଗ, ପୃ ୧୯୭-୯୮) ।

ସେଇ ବର୍ଷ ପ୍ରଥମେ କୋଡ଼ିଏ ଜଣ ଛାତ୍ରଛାତ୍ରୀଙ୍କୁ ନେଇ ବାଜି ରାଉତ ଛାତ୍ରାବାସରେ ଜୀବନ ବିଦ୍ୟାଳୟର ବିଦ୍ୟାଦାନ କାର୍ଯ୍ୟକ୍ରମ ଚିତ୍ତଭାଇଙ୍କ ଅଧ୍ୟକ୍ଷତାରେ ଆରମ୍ଭ ହେଲା । ଶ୍ରୀମତୀ ଓ ଶ୍ରୀଯୁକ୍ତ ଚୌଧୁରୀ (ନୁମା ବାପି)ଙ୍କ ସାନଝିଅ ତିନୁ ଅପା (କ୍ରିଷ୍ଣା) ସେଇ ନବମ ଶ୍ରେଣୀରେ ଛାତ୍ରୀଭାବେ ନାମ ଲେଖାଇଥିଲେ । ତେଣେ ଚମ୍ପତିମୁଣ୍ଡାରେ ବିଦ୍ୟାଳୟ ପାଇଁ ଉଦ୍ଦିଷ୍ଟ ଜଙ୍ଗଲ ଜମିରେ ବିରାଟକାୟ ବୁଲଡ଼ୋଜର ଦ୍ୱାରା ଜଙ୍ଗଲ ଜମିକୁ ବାସ ଉପଯୋଗୀ ଓ ଚାଷୋପଯୋଗୀ କରାଯାଇ, ସେଠାରେ ଏଗାର ବଖରା ଅସ୍ଥାୟୀ ଚାଳଛପର ଘର ତୋଳା କାମ ଆରମ୍ଭ ଚାଲିଲା । ଜଣେ ବାସ୍ତବଧର୍ମୀ, ଦୂରଦୃଷ୍ଟି ସମ୍ପୂର୍ଣ୍ଣ ମାନବବାଦୀ ଶିକ୍ଷକ ହିସାବରେ ଚିତ୍ତଭାଇ ବିଦ୍ୟାଳୟର ପାଠ୍ୟ ପରିଚାଳନା ଓ ଛାତ୍ର ଛାତ୍ରୀମାନଙ୍କର ସାମୁହିକ ତଥା ବ୍ୟକ୍ତିଗତ ଜୀବନର ନାନା ବିଭାବନାକୁ ଯେଉଁଳି ସନ୍ତୁଳିତ ମାର୍ଗରେ ପରିଚାଳନା କରି ଛାତ୍ର ଓ ଶିକ୍ଷକମାନଙ୍କ ମଧ୍ୟରେ ପ୍ରଗାଢ଼ ଆତ୍ମୀୟତାର ପରିବେଶ ସୃଷ୍ଟି କରି ପାରୁଥିଲେ, ତାହା ବର୍ତ୍ତମାନ ଯୁଗରେ ବିରଳ ବା ଅନନ୍ୟ କହିଲେ ଅତ୍ୟୁକ୍ତି ହେବ

ନାହିଁ । ବାସ୍ତବରେ କହିବାକୁ ଗଲେ ଜଣେ ନିଛକ, ସମୁଜ୍ଜ୍ୱଳ ଶିକ୍ଷକ ହିସାବରେ ବହୁ ଦିଗଦର୍ଶୀ ପାଣ୍ଡିତ୍ୟ ସହ ଚିତ୍ତଭାଇ ଯେଭଳି ଭାବେ ସଚ୍ଚା ଛାତ୍ର ସମାଜରର ସ୍ରଷ୍ଟା, ଦ୍ରଷ୍ଟାଭାବେ ଛାତ୍ର ଛାତ୍ରୀମାନଙ୍କ ସହ ଏକ ସୃଜନଶୀଳ ଆତ୍ମୀୟତା ରଖି ଶିକ୍ଷାଦାନ କରୁଥିଲେ। ସେଭଳି ଶିକ୍ଷକ ଯେ ଏ ମାଟିରେ ଆଉ ଜନ୍ମଲାଭ କରିବେ, ତାହା ଆମ୍ଭମାନଙ୍କର କଳ୍ପନାର ବାହାରେ ବୋଲି କୁହାଯାଇପାରିବ। ସେ ଜଣେ ଦିବ୍ୟ ଗୁରୁଭାବେ ନିର୍ଭୟ ଏବଂ ନିର୍ଲିପ୍ତ ଭାବେ ଭଗବତ୍ ଗୀତା ନିର୍ଦ୍ଦେଶିତ କର୍ମଯୋଗୀ ପରି କାର୍ଯ୍ୟ କରି ଶିକ୍ଷା ମାଧ୍ୟମରେ ଦେଶ ଗଠନର ସ୍ୱକୀୟ ମନ୍ତ୍ର ଉଚ୍ଚାରଣ ପୂର୍ବକ ଚମ୍ପତିମୁଣ୍ଡାରେ ତାଙ୍କ ଜୀବନ ଅତିବାହିତ କରି ଚାଲିଥିଲେ। ମୂଳତଃ ସେ ଜଣେ ସୃଜନଶୀଳ ଶିକ୍ଷକ ଥିଲେ।

ଛାତ୍ର ଛାତ୍ରୀଙ୍କର ଜୀବନ ଗଠନର ମୂଳଭିତ୍ତି, ଶିକ୍ଷକଙ୍କର ଚରିତ୍ର, ଚାଲିଚଳନ, ଜ୍ଞାନ ଓ ବ୍ୟକ୍ତିତ୍ୱ ଉପରେ ଆଶାତୀତ ଭାବେ ନିର୍ଭରଶୀଳ। ତେଣୁ ଜଣେ ଶିକ୍ଷକ ନିଶ୍ଚିତ ଭାବେ ଏକ Psycho-educational-philosohic-minded teacher ହିସାବରେ ପ୍ରତ୍ୟେହ କାର୍ଯ୍ୟ କରିଯିବା ଉଚିତ୍। ପ୍ରତ୍ୟେକ ପିଲାଙ୍କର ପୂର୍ଣ୍ଣାଙ୍ଗ ଜୀବନ ଦର୍ଶନର କ୍ରାନ୍ତଦ୍ରଷ୍ଟାଭାବେ ଚେତନାଦୀପ୍ତ ଶିକ୍ଷକଟିଏ ହେବା ଦରକାର। ଏଇ ସବୁ ଦୃଷ୍ଟିରୁ ପୃଥିବୀର ଜଣେ ସର୍ବକାଳୀନ ସଫଳ ଶିକ୍ଷକଭାବେ ଚିତ୍ତଭାଇ ଆମ ଆଗରେ ପ୍ରତିଭାତ ହୁଅନ୍ତି। ଶିକ୍ଷକ ଜୀବନ ହିଁ ତାଙ୍କର ଏକମାତ୍ର ଜୀବନ ବୋଲି ଜଣାଯାଏ। ତାଙ୍କରି ଭାଷାରେ କହିଲେ- "ପ୍ରଥମରୁ କହି ରଖୁଛି, ଶିକ୍ଷକ ହେବାକୁ ଭଲପାଏ ବୋଲି ହିଁ ମୂଳତଃ ମୁଁ ଶିକ୍ଷକ ହୋଇଛି। ଶିକ୍ଷକ ନ ହୋଇ ମୁଁ ଯେ ଆଉ କ'ଣ ହୋଇ ପାରିଥାନ୍ତି। ଜୀବନର ଅଧେ ରାସ୍ତା ଚାଲିଆସିବା ପରେ ମଧ୍ୟ ମୁଁ ସେ କଥା କହିପାରିବି ନାହିଁ। ଚମ୍ପତିମୁଣ୍ଡାରେ ଚାରିବର୍ଷ ଶିକ୍ଷକତା କରିଛି। ଆଗ୍ରାର ଉପକଣ୍ଠରେ ଥିବା ଏହି ବୃହତ୍ ଅନୁଷ୍ଠାନରେ ମଧ୍ୟ ଶିକ୍ଷକତା କରିବା ମୋର ଚାରିବର୍ଷରୁ ଉର୍ଦ୍ଧ୍ୱ ହୋଇଗଲା। ଏହା ବ୍ୟତୀତ ଅବସର ଅନୁସାରେ ଦେଶରେ ବିଦେଶରେ ମୁଁ କେତେଥର ଶିକ୍ଷକତା କରିଛି। ପିଲାଙ୍କ ସ୍କୁଲରେ ମାଷ୍ଟର ହୋଇଛି। ବଡ଼ଙ୍କ ମେଳରେ ଅଧ୍ୟାପକ ବି ହୋଇଛି, କିନ୍ତୁ ଅଙ୍ଗେ ନିଭାଇବା ଗୋଟାଏ କଥା ଆଜି ସମସ୍ତଙ୍କ ଆଗରେ କହିବା ଲାଗି ମୋର ଭାରି ଲୋଭ ହେଉଛି।" "ମଣିଷ କେବଳ ତା' କାମରୁ କେବଳ ପଇସା ଚାହେଁ ନାହିଁ, ତୃପ୍ତି ଚାହେଁ। ଆପଣାର କର୍ମ ଦେଇ ସେ ଆପଣାର ଜୀବନକୁ ମଧ୍ୟ ପରିପୂର୍ଣ୍ଣ କରି ପାରିବାର ଲାଳସି ହୋଇ ରହିଥାଏ। ମୋର ଶିକ୍ଷକ ଜୀବନରେ ଚମ୍ପତିମୁଣ୍ଡା ପରି ଅନ୍ୟ କେଉଁଠି ମୁଁ ଏତେ ତୃପ୍ତି ପାଇନାହିଁ।"

*(ଜଙ୍ଗଲ ଚିଠି, ଦ୍ୱିତୀୟ ସଂସ୍କରଣ, ପୃ- ୧୦୪)*

ଜୀବନ ବିଦ୍ୟାଳୟର ଶିକ୍ଷାଦାନ କାର୍ଯ୍ୟ ପରିଚାଳନା କରିବାରେ ଚିତ୍ତଭାଇ ସମ୍ପୂର୍ଣ୍ଣ ନିମଜ୍ଜିତ ହୋଇ କାର୍ଯ୍ୟକରି ଚାଲିଥିଲା ବେଳେ ବିଦ୍ୟାଳୟର ଅନ୍ୟ ଯାବତୀୟ ଆର୍ଥିକ ପରିଚାଳନା ଦାୟିତ୍ୱ, ନୁମା ନିଜ ମୁଣ୍ଡ ଉପରକୁ ନେଇ ଯାଇଥିଲେ । ଯଦିଓ ବିଦ୍ୟାଳୟର ପ୍ରାରମ୍ଭିକ ପର୍ଯ୍ୟାୟ ବେଳେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିବାରୁ ନିୟମାନୁଯାୟୀ ସରକାରୀ ଅନୁଦାନ ସବୁ ସହଜରେ ମିଳି ଯାଉଥିଲା । ତେବେ ବିଦ୍ୟାଳୟର ଘରଦ୍ୱାର, ବାଡ଼ି ବଗିଚା ତଥା କୂଅ ଇତ୍ୟାଦି ଲାଗି ଲୋଡ଼ା ପଡୁଥିବା ପାଣ୍ଠି ଲାଗି ନୂମା (ଶ୍ରୀମତୀ ମାଳତୀ ଚୌଧୁରୀ) ବହୁ କଷ୍ଟ ସ୍ୱୀକାର କରୁଥିଲେ । ଜୀବନ ବିଦ୍ୟାଳୟର କୌଣସି ସ୍ଥାୟୀ ପାଣ୍ଠି ନ ଥିବାରୁ ବିଦ୍ୟାଳୟର ଅନ୍ୟାନ୍ୟ ବହୁ ଖର୍ଚ୍ଚ ଲାଗି "ଶ୍ରୀମତୀ ଚୌଧୁରୀ ବାର ଆଡୁ ମାଗି ଯାଚି ଘର ତିଆରି ପାଇଁ ପଇସା ଆଣୁଥାନ୍ତି ।" (ମିତ୍ରସ୍ୟ ଚକ୍ଷୁମା, ପୃ- ୧୯୯) । ଅଭାବଗ୍ରସ୍ତ ପରିବାରର ପିଲାମାନଙ୍କ ଲାଳନ ପାଳନ ପାଇଁ ଯେମିତି ମାଆଟିଏ ଖୁସି ମନରେ ନାନା ଶ୍ରମ ଓ ଫନ୍ଦି ଫିକର କରିବାରେ ନିରଳସ ଭାବେ ଲାଗିଥାଏ, ଠିକ୍ ସେମିତି ନୁମା ନାନା ଲୋକଙ୍କଠାରୁ ମାଗି ଯାଚି ଏଇ ଅଭାବୀ ଜୀବନ ବିଦ୍ୟାଳୟର ଆର୍ଥିକ ସଙ୍କଟର ପରିପୂର୍ତ୍ତି ପାଇଁ ପଇସା ପତ୍ର ଯୋଗାଡ଼ରେ ସମସ୍ତ କଷ୍ଟ ସ୍ୱୀକାର କରି କାର୍ଯ୍ୟ କରି ଚାଲିଥିଲେ ।

ସରକାରଙ୍କ ସହ କଥା ହୋଇଥିଲା ଯେ- ଜୀବନ ବିଦ୍ୟାଳୟର ଛାତ୍ରମାନେ ଯଦିଓ ମାଧ୍ୟମିକ ସ୍ତରର ଶିକ୍ଷା ଲାଭ କରିବେ, ତେବେ ତାଙ୍କ ଲାଗି ଏକ ସ୍ୱତନ୍ତ୍ର ପାଠ୍ୟ ଖସଡ଼ା ବା ସିଲାବସ୍ ରହିବ । ସେମାନଙ୍କର ପରୀକ୍ଷା, ପ୍ରଚଳିତ ଶିକ୍ଷା ପ୍ରଣାଳୀରେ ହେଉଥିବା ପରୀକ୍ଷାଠାରୁ ଭିନ୍ନ ଏକ ରୀତିରେ ହେବ । ସେଥିପାଇଁ ଏକ ପରୀକ୍ଷା କମିଟି ସରକାର ସ୍ଥିର କରିବେ, ଯେଉଁଥିରେ ବିଦ୍ୟାଳୟର ଶିକ୍ଷକ ପ୍ରତିନିଧି ରହିବେ । ବର୍ଷକୁ ବର୍ଷ ଏହି କମିଟି ବିଦ୍ୟାଳୟକୁ ଆସି ପିଲାମାନଙ୍କର ଜ୍ଞାନ (ଗଣିତ, ସାହିତ୍ୟ, ଭୂଗୋଳ, ଇଂରାଜୀ ଇତିହାସ, ସଂସ୍କୃତ ହିନ୍ଦୀ, ବିଜ୍ଞାନ ଇତ୍ୟାଦି ବିଷୟରେ) ମାଧ୍ୟମିକ ସ୍ତରର କେତେ ଦୂର ଅଛି, ତାହା ପରୀକ୍ଷା କରି ସାର୍ଟିଫିକେଟ୍ ଦେବେ । ପ୍ରଚଳିତ ଶିକ୍ଷାରେ ପଢ଼ାଯାଉଥିବା ବହି ଏଠି ବାଧ୍ୟତାମୂଳକ ଭାବେ ଯଦିଓ ପଢ଼ା ହେବ ନାହିଁ, ତଥାପି ଉଦ୍ଦିଷ୍ଟ ବିଷୟ ଗୁଡ଼ିକରେ ଜୀବନ ବିଦ୍ୟାଳୟ-ଛାତ୍ର ଛାତ୍ରୀମାନଙ୍କର ଜ୍ଞାନର ମାନ ମାଧ୍ୟମିକ ସ୍ତରର ନିଶ୍ଚିତ ଭାବେ ଥିବାର ତଥ୍ୟ ସେଇ ପରୀକ୍ଷା କମିଟିର ସଦସ୍ୟମାନେ ଭଲ ଭାବେ ନିରୀକ୍ଷଣ କରି ମତାମତ ଦେବେ ।

ଏପରି ଭିନ୍ନ ଏକ ପରୀକ୍ଷା ପଦ୍ଧତିର ଆବଶ୍ୟକତା ପଡ଼ିବାର କାରଣ ହେଉଛି ଯେ- ଏଠି ପାଠ ପଢ଼ାର ଏକ ଭିନ୍ନ ଶୈଳୀ ଅନୁସରଣ କରାଯାଏ । ଜୀବନ ବିଦ୍ୟାଳୟରେ ପିଲାମାନେ କେବଳ ସୀମିତ ପାଠ୍ୟ ଖସଡ଼ାରେ ଆବଦ୍ଧ ରହି ପାଠ

ପଢ଼ନ୍ତି ନାହିଁ। ଉଦାହରଣ ସ୍ୱରୂପ ଧରାଯାଉ, ପ୍ରଚଳିତ ଶିକ୍ଷାରେ କବି ରାଧାମୋହନ ଗଡ଼ନାୟକଙ୍କର "ମାଟିର ମଣିଷ" କବିତାର ପରୀକ୍ଷାରେ ତହିଁର ସାର ମର୍ମ ବା କେବଳ ଉଦ୍ଧୃତିର ବ୍ୟାଖ୍ୟାକୁ ନିଆଯାଇଥାଏ। ମାତ୍ର ଜୀବନ ବିଦ୍ୟାଳୟର ପାଠ୍ୟକ୍ରମରେ ସେହି କବିଙ୍କର "ମାଟିର ମଣିଷ" କବିତା ସହିତ ତାଙ୍କ ଅନ୍ୟାନ୍ୟ କବିତାରେ ଆମ ଦେଶର ସାମାଜିକ, ସାଂସ୍କୃତିକ ତଥା ଆଧ୍ୟାତ୍ମିକ ଅଭିବୃଦ୍ଧିରେ ତଥାକଥିତ ଆଧୁନିକ ସଭ୍ୟତା ଏବଂ ଶିଳ୍ପ ବିପ୍ଳବର କୁପରିଣତି ଗୁଡ଼ିକ କିପରି ବାଧକ ସାଜୁଛି, ତହିଁର ବିସ୍ତୃତ ଆଲୋଚନା ସହ ମାନବ ଜୀବନରେ ତାହା କେତେ ଦୂର ସମୀଚିନ, ସେ କଥା ବିଚାର କରାଯାଇଥାଏ। ତେଣୁ ଜଣେ ଛାତ୍ରର ସାହିତ୍ୟ ଜ୍ଞାନ କିପରି ଜୀବନାଭିମୁଖୀ ହୋଇ ପାରିଛି, ତାହାହିଁ ପରୀକ୍ଷା ସମୟରେ ଏଠି ବିଚାର୍ଯ୍ୟ ବସ୍ତୁ।

ଜୀବନ ବିଦ୍ୟାଳୟରେ ପରୀକ୍ଷା ପଦ୍ଧତି ତେଣୁ ଅଲଗା ପ୍ରକାର ଅଟେ। ଏଠି ପରୀକ୍ଷାରେ କେଉଁ ପିଲା କେତେ ବ୍ୟାପକ ଭାବେ ସାହିତ୍ୟ ଅଧ୍ୟୟନ କରି ସେ ସବୁକୁ ବୈଚାରିକ ଦୃଷ୍ଟିକୋଣରୁ କେତେ ଦୂର ହଜମ କରି, ନିଜସ୍ୱ କରି ପାରିଛି, ତାହାହିଁ ମୂଲ୍ୟାୟନ କରାଯାଇଥାଏ। ପରୀକ୍ଷା ଦିନ ଏଠି ଗୋଟିଏ ସୋପାନ (ଧରାଯାଉ ନବମ ସୋପାନ)ର ପିଲାମାନଙ୍କୁ ଏକାଠି ବସାଇ ପ୍ରଶ୍ନତକ ଡ଼ାକି ଦିଆଯାଏ। ପିଲାମାନେ ପ୍ରଶ୍ନ ଲେଖିଦେଇ ନିଜ ନିଜ ସ୍ଥାନରେ ବସି ନିବିଷ୍ଟ ଚିତ୍ତରେ ଉତ୍ତର ଲେଖି ଦିଅନ୍ତି। ପ୍ରଶ୍ନ ଏମିତି ଦିଆଯାଇଥାଏ ଯେ- ସେଥିରେ କାହାଠାରୁ କପି କରିବାର ଅବକାଶ ହିଁ ନଥାଏ। ନିମ୍ନପ୍ରଦତ୍ତ ୧୯୫୭ ମସିହାର ନବମ ସୋପାନର ଦୁଇଟି ସାହିତ୍ୟ ପ୍ରଶ୍ନରୁ ଏଠା ପରୀକ୍ଷା ପଦ୍ଧତିର ଆଭିମୁଖ୍ୟ ସ୍ପଷ୍ଟ ହୋଇଯିବ। ପ୍ରଶ୍ନ ନଂ- ୧- ଭଲ କବିତା କହିଲେ ତୁମେ କ'ଣ ବୁଝ ? କୌଣସି କବିତା ଭଲ କି ଖରାପ, ତାହା ପାଠକର ବ୍ୟକ୍ତିଗତ ମତ ଉପରେ ନିର୍ଭର କରେ କି ? ନା' କବିତାର ବିଚାର କରିବାକୁ କୌଣସି ସାହିତ୍ୟିକ ମାନଦଣ୍ଡ ରହିଛି ?

ପ୍ରଶ୍ନ ନଂ- ୨- ଆମଦେଶର ସ୍କୁଲ ବା କଲେଜମାନଙ୍କରେ ଯେପରି ପ୍ରଣାଳୀରେ ସାହିତ୍ୟ ପଢ଼ାଯାଉଛି, ତଦ୍ୱାରା ଛାତ୍ରର ସାହିତ୍ୟ ରୁଚି କ୍ରମେ ମରି ଯାଉଛି- ଏଥିରେ ତୁମେ କେତେ ଦୂର ଏକମତ ହେବ ? ସାହିତ୍ୟ ପଢ଼ାଇବାକୁ ହେଲେ ଶିକ୍ଷକଙ୍କର କି' କି' ବିଶେଷ ଯୋଗ୍ୟତା ରହିବା ଆବଶ୍ୟକ ? ସାହିତ୍ୟ ବିଷୟରେ କିପରି ଢ଼ଙ୍ଗରେ ପରୀକ୍ଷା ହେବା ଉଚିତ ? (ଜଙ୍ଗଲ ଚିଠି, ଦ୍ୱିତୀୟ ସଂ. ପୃ- ୧୧୩- ୧୪) ୧୯୫୬ ମସିହାରେ ଯେଉଁମାନେ ନବମ ସୋପାନରେ ଥିଲେ, ସେମାନଙ୍କ ଲାଗି ଉଦ୍ଦିଷ୍ଟ ସାହିତ୍ୟ ପରୀକ୍ଷାର ଏକ ନମୁନା।

ପ୍ରଶ୍ନ ନଂ- ୧-ଜାତୀୟ ସାହିତ୍ୟ କହିଲେ ଆମେ କ'ଣ ବୁଝିବା ? ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ ଓ ସଚ୍ଚି ରାଉତରାୟ ପ୍ରତ୍ୟେକଙ୍କୁ କେତେ ଦୂର ଓ କାହିଁକି ଓଡ଼ିଆ ଜାତୀୟ କବି ବୋଲି କୁହାଯାଇପାରିବ । ଏଇ ପ୍ରଶ୍ନ କେତୋଟିରୁ ବିଚାରଶୀଳ ପାଠକେ ଅନୁମାନ କରି ପାରିବେ ଯେ- ପ୍ରଚଳିତ ଶିକ୍ଷାରେ ସାହିତ୍ୟ ପଠନ, ପାଠନ ଓ ତହିଁର ପରୀକ୍ଷାଠାରୁ ଜୀବନ ବିଦ୍ୟାଳୟରେ ସାହିତ୍ୟ ପଠନ ଓ ପାଠନର ଛାତ୍ର ପାଇଁ କେତେ ଦୂର ମଙ୍ଗଳକର ଏବଂ ସେଥିପାଇଁ ତା'ର ପରୀକ୍ଷା ସକାଶେ ନିଜକୁ କେତେ ଗଭୀର ଭାବରେ ପ୍ରସ୍ତୁତ କରିବା ଆବଶ୍ୟକ, ତା' ଅଧ୍ୟୟନ କେତେ ବ୍ୟାପକ ହେବା ଉଚିତ, ତାହା ଅନୁମାନ ସାପେକ୍ଷ ।

କେବଳ ସାହିତ୍ୟ କାହିଁକି ? ଏଠି ସବୁ ବିଷୟରେ, ଯଥା- ଆଧୁନିକ ଜଗତ, ସାମାଜିକ ବିଜ୍ଞାନ, ଶିକ୍ଷା, ସାହିତ୍ୟର ଇତିହାସ, ବିଜ୍ଞାନ ଦର୍ଶନ ଇତ୍ୟାଦିରେ ଏଠି ଶିକ୍ଷାଦାନର ପଦ୍ଧତି ଅତି ଗଭୀରଭାବେ ପ୍ରଗତିଶୀଳ । ପିଲାମାନଙ୍କର ଅଧ୍ୟୟନ ଆଶାତୀତ ଭାବେ ବ୍ୟାପକ । ଏଠାରେ ଶିକ୍ଷକ ଯେତିକି କ୍ଲାସରେ ପଢ଼େଇ ଦେଇ ଯାଆନ୍ତି, କେବଳ ସେତକ ଯଥେଷ୍ଟ ନୁହେଁ । ଶିକ୍ଷକ ଶ୍ରେଣୀରେ ସୂଚାଇ ଦେଇଥିବା referenceରେ ଖିଅ ଧରି ଛାତ୍ର ଗ୍ରନ୍ଥାଗାରରେ ଗଚ୍ଛିତ ପୁସ୍ତକଗୁଡ଼ିକର ସହାୟତାରେ ତା'ର ପ୍ରଜ୍ଞା ପରିସରକୁ ବ୍ୟାପକ କରିବା ପାଇଁ ଅନେକ ପରିଶ୍ରମ କରିବାକୁ କୁଣ୍ଠାବୋଧ କରେ ନାହିଁ ।

ଜୀବନ ବିଦ୍ୟାଳୟର ଗ୍ରନ୍ଥାଗାର ତେଣୁ ପ୍ରଚଳିତ ଶିକ୍ଷାର ଗ୍ରନ୍ଥାଗାର ମାନଙ୍କଠାରୁ ବହୁଗୁଣରେ ଉନ୍ନତ । ସତ କହିବାକୁ ଗଲେ, ଜୀବନ ବିଦ୍ୟାଳୟର ଛାତ୍ର ଛାତ୍ରୀମାନଙ୍କର ପ୍ରକୃତ ଗୁରୁହିଁ ଗ୍ରନ୍ଥାଗାର ବୋଲି ମନେ କରାଯାଏ । ଆମ ଗ୍ରନ୍ଥାଗାର ଅର୍ଥାତ୍ ଜୀବନ ବିଦ୍ୟାଳୟର ଗ୍ରନ୍ଥାଗାରରେ ଓଡ଼ିଆ ସାହିତ୍ୟ, ହିନ୍ଦି ସାହିତ୍ୟ, ବଙ୍ଗଳା ସାହିତ୍ୟ, ଇଂରାଜୀ ସାହିତ୍ୟ, ସଂସ୍କୃତ ସାହିତ୍ୟ ବହି ସହିତ ବିଜ୍ଞାନ, ମନୋବିଜ୍ଞାନ, ଦର୍ଶନ, ସମାଜ ବିଜ୍ଞାନ ଏବଂ ବ୍ରିଟାନିକା କମ୍ପାନୀର ଇଂରାଜୀ ବିଶ୍ୱକୋଷ ମଧ୍ୟ ଛାତ୍ର ଛାତ୍ରୀଙ୍କ ଲାଗି ଗଚ୍ଛିତ ଥିଲା । ସେଇ ଗ୍ରନ୍ଥାଗାରକୁ ଛାତ୍ର ପ୍ରତିନିଧିମାନେ ପରିଚାଳନା କରୁଥିଲେ । ଗ୍ରନ୍ଥାଗାରରେ ପିଲାମାନଙ୍କର ଅବାଧ ପ୍ରବେଶ ଥିଲା । ପିଲାମାନେ ବହିଗୁଡ଼ିକ ଅତି ଯତ୍ନରେ ଧରି ପଢୁଥିଲେ ଓ ଫେରାଉଥିଲେ । ବହି ହଜିବା ବା ଚିରିବାର କୁପ୍ରଥା ସେଠି ନଥିଲା । ସତେ ଯେମିତି ଗ୍ରନ୍ଥାଗାର ଆମ ଲାଗି ମା' ସରସ୍ୱତୀଙ୍କ ପରି ଉଭାହୋଇ ରହିଥିଲା ।

ପ୍ରାରମ୍ଭରୁ ବହୁ ଅଭାବ ମଧ୍ୟ ଦେଇ ଜୀବନ ବିଦ୍ୟାଳୟ ଆରମ୍ଭ ହୋଇଥିଲେ ମଧ୍ୟ, ସେଠି ପିଲାମାନଙ୍କ ମନରେ କୌଣସି ଅଭାବବୋଧର ଗ୍ଲାନି ରହୁନଥିଲା । ବହୁ

ଦୂରରେ ବାପା, ମାଆ, ଗାଁ ଗଣ୍ଡା ଛାଡ଼ି ଆସିଥିଲେ ମଧ୍ୟ ଏଠି ଶିକ୍ଷକମାନଙ୍କର ଅନାବିଳ ଆତ୍ମୀୟତା ପିଲାମାନଙ୍କର ସବୁ ଅଭାବବୋଧକୁ କାହିଁ କେଉଁଆଡ଼େ ଘଉଡ଼ାଇ ଆକାଶକୁ ଉଡ଼ାଇ ଦେଉଥିଲା । ଏଠି ଶିକ୍ଷକଙ୍କର ଅଭାବରେ ଗ୍ରନ୍ଥାଗାର ଆମକୁ ବହୁ ସାହାଯ୍ୟ ଯୋଗାଇ ଦେଉଥିଲା । "ନାନା ଅସୁବିଧା ସତ୍ତ୍ୱେ ଚ଼ମ୍ପତିମୁଣ୍ଡାରେ ପାଠ ପଢ଼ା ହିଁ ସବୁଠାରୁ ପ୍ରଧାନ ଧନ୍ଦା ହୋଇ ରହିଥିଲା । ଘର ଅଭାବରେ ଗଛ ମୂଳରେ ବସି ପାଠ ପଢ଼ିବାକୁ ସେଠି ଆମେ କୌଣସି ଦିନ ସଙ୍କୋଚ଼ ଅନୁଭବ କରିନଥିଲୁ । ଶିକ୍ଷକଙ୍କର ଅଭାବରେ ସେଠି ଆମ ଗ୍ରନ୍ଥାଗାର ହିଁ ଶିକ୍ଷକର ଅଭାବ ମେଣ୍ଟାଇବାକୁ ଚ଼େଷ୍ଟା କରୁଥିଲା । ଦ୍ରୋଣାଚ଼ାର୍ଯ୍ୟ ପ୍ରତ୍ୟାଖ୍ୟାତ ଏକଲବ୍ୟ ପରି ଆମ ପିଲାଏ ସେହି ଜଙ୍ଗଲ ଭିତରେ ଗ୍ରନ୍ଥାଗାରକୁ ଗୁରୁ କରି ଗ୍ରହଣ କରିଥିଲେ ।" (ଚ଼ିତ୍ତଭାଇ, ଜଙ୍ଗଲ ଚ଼ିଠି, ଦ୍ୱିତୀୟ ସଂସ୍କରଣ, ପୃଷ୍ଠା- ୧୦୬) ।

ଜଙ୍ଗଲର ନୈସର୍ଗିକ ଶାନ୍ତଶୀତଳ ବାତାବରଣ ଭିତରେ ଜୀବନ ବିଦ୍ୟାଳୟର ଦୈନନ୍ଦିନ କାର୍ଯ୍ୟାବଳୀ ଠିକ୍ ସକାଳ ଘ୪- ୧୫ ମିନିଟ୍‌ରେ ଆରମ୍ଭ ହେଉଥିଲା । ଆମେ ସେତେବେଳେ ଶଯ୍ୟା ତ୍ୟାଗ କରୁ । ୪ଟା ୩୦ ମିନିଟ୍ ସକାଳ ପ୍ରାର୍ଥନା, ୪ଟା ୪୫ ମିନିଟ୍‌ରୁ ୬ଟା ପ୍ରାତଃକର୍ମ ଓ ସାମୁହିକ ସଫାଇ, ୬ରୁ ୭ଟା ସକାଳର ଜଳଖିଆ, ୭ଟାରୁ ଦିନ ୯ଟା ଶାରୀରିକ ଶ୍ରମ । ଏଥିରେ ଆମେ, ଆମ ହାତରେ ବାଡ଼ି ବଗିଚ଼ାରେ ନାନା ଫଳ ପନିପରିବା ଚ଼ାଷକାର୍ଯ୍ୟ କରୁ ଓ କେହି କେହି ଧନ୍ଦା, ଯଥା- ଲୁଗାବୁଣା ଇତ୍ୟାଦି କରନ୍ତି । ୯ଟା ୩୦ରୁ ୧୧ଟା ୩୦ ମିନିଟ୍ ସୋପାନର ପାଠ ପଢ଼ା ହୁଏ । ୧୧ଟା ୪୫ ମିନିଟ୍‌ରେ ଆମେ ଦ୍ୱିପ୍ରହରର ଭୋଜନ କରିଥାଉ । ପୁଣି ଅପରାହ୍ନ ୩ଟାରୁ ୫ଟା ପର୍ଯ୍ୟନ୍ତ ସୋପାନର ପାଠ ପଢ଼ା ହୁଏ । ଅପରାହ୍ନ ୫ଟାରୁ ୬ଟା ଯାଏଁ ଖେଳ (ଭଲିବଲ୍, ବ୍ୟାଡ୍‌ମିଣ୍ଟନ୍, ହା ଡୁ, ଡୁ ଇତ୍ୟାଦି) ସନ୍ଧ୍ୟା ୬ଟା ୧୫.ମିନିଟ୍‌ରେ ଭୋଜନ କାର୍ଯ୍ୟ ହୁଏ । ୮ଟାରୁ ୧୦ଟା ପର୍ଯ୍ୟନ୍ତ ନିଜ ନିଜର ପାଠ୍ୟ ଅଧ୍ୟୟନ କାର୍ଯ୍ୟ ହୁଏ । ରାତି ୧୦ ଘଣ୍ଟାରେ ଶୋଇବା ଘଣ୍ଟା ବାଜିଲେ ଆମେ ସବୁ, ଲଣ୍ଠନ ଲିଭାଇ ଶୋଇଯାଉ । ଜୀବନ ବିଦ୍ୟାଳୟରେ ସେତେବେଳେ ବିଜୁଳିବତୀର ବ୍ୟବସ୍ଥା ନଥିଲା । ତେଣୁ ଆମେ ପ୍ରତ୍ୟେକ ଛାତ୍ର ଛାତ୍ରୀ ଲଣ୍ଠନ ଆଲୁଅରେ ପାଠ ପଢୁଥିଲୁ । ଲଣ୍ଠନ ପାଇଁ କିରୋସିନ୍ ଆମକୁ, ଆମ ବିଦ୍ୟାଳୟର ଛାତ୍ରାବାସରୁ ମିଳୁଥିଲା ।

ଜୀବନ ବିଦ୍ୟାଳୟରେ ସ୍ୱାବଲମ୍ବୀ ଜୀବନର ମହତ୍ତ୍ୱକୁ କାର୍ଯ୍ୟକ୍ରମରେ ରୂପାୟିତ କରାଯାଉଥିଲା । ଏଠି ପ୍ରତ୍ୟେକ ଛାତ୍ର ବା ଛାତ୍ରୀ ଶରୀର ଶ୍ରମର ମର୍ଯ୍ୟାଦା ଅକ୍ଷୁର୍ଣ୍ଣ ରଖିପାରୁଥିଲେ । ତେଣୁ ଏଠି ଦୈନନ୍ଦିନ ଜୀବନର ସବୁ କାର୍ଯ୍ୟ ଆମେ ନିଜେ ନିଜ ହାତରେ ତୁଲାଉଥିଲୁ । ସୂତା କାଟି, ଲୁଗା ବୁଣାଠାରୁ ଆରମ୍ଭ କରି ରୋଷେଇ ବାସ,

ହଣ୍ଡା, ଡ଼େକ୍‌ଚି, ବାସନ ମଜା ମଜିଠାରୁ ଆରମ୍ଭ କରି ବଗିଚ଼ା କାମ, ବିଦ୍ୟାଳୟର ସଫାସୁତୁରା କାର୍ଯ୍ୟ ସବୁ ଭାଗ ବାଣ୍ଟି ପାଳି କରି ତୁଲାଇ ଦେଉଥିଲୁ । ଆମ ମେସ୍‌ରେ ପୂଜାରୀ ଚ଼ାକର ନଥିଲେ । କେବଳ ଧାନଚ଼ାଷ ଇତ୍ୟାଦି ଲାଗି ଦୁଇଜଣ ସହାୟକ ଥିଲେ । ସେମାନେ ହଳ, ବଳଦ ଓ ଶଗଡ଼ ଚ଼ଳାଇବା ଦାୟିତ୍ୱ ତୁଲାଉଥିଲେ । ସେମାନଙ୍କ ସହିତ ଆମ୍ଭେମାନେ ମଧ୍ୟ ସେ ସବୁ କାର୍ଯ୍ୟରେ ସହଯୋଗ କରୁଥିଲୁ । ଏ ସବୁ କାର୍ଯ୍ୟ ଶିକ୍ଷକ ଛାତ୍ର ସମସ୍ତେ ଏକତ୍ର ମିଶି ଖୁବ୍ ଖୁସି ମନରେ ଏକ ନିରଳସ ଆନନ୍ଦମୟ ପରିବେଶରେ କରୁଥିଲୁ ।

ସାଧାରଣତଃ ମୌଳିକ ଶିକ୍ଷାରେ କେବଳ କାମଧନ୍ଦା ଶିକ୍ଷା ମାଧ୍ୟମରେ ଶରୀର ଶ୍ରମକୁ ମୁଖ୍ୟ କରି ପାଠ ପଢ଼ାକୁ ଗୌଣଭାବେ ଦେଖାଯାଏ ବୋଲି ଏକ ଗୁଜବରେ ବହୁ ଲୋକ ବିଶ୍ୱାସ କରିଥାଆନ୍ତି । ମାତ୍ର ଚ଼ମ୍ପତିମୁଣ୍ଡା ଜୀବନ ବିଦ୍ୟାଳୟ ଯଦିଓ ମୌଳିକ ଶିକ୍ଷାର ଆଦର୍ଶରେ ଅନୁପ୍ରାଣିତ, ତଥାପି ଏଠି ସବୁ କିଛି ଉଦ୍ୟୋଗମୂଳକ ଶିକ୍ଷା ଦିଆଯାଉଥିଲେ ମଧ୍ୟ ପାଠ ପଢ଼ାକୁ ମୁଖ୍ୟତଃ ପ୍ରାଧାନ୍ୟ ଦିଆଯାଉଥିଲା । ଏଠି ଛାତ୍ର, ଛାତ୍ରୀମାନେ ସ୍ୱାବଲମ୍ବୀ ଶିକ୍ଷାକୁ ସ୍ୱକୀୟ ଜୀବନ ଚ଼ଳଣିରେ ଅନୁସରଣ କରୁଥିଲେ ମଧ୍ୟ ସମୁନ୍ନତ ପାଠ ପଢ଼ାର ଧାରାଟିକୁ ବଜାଇ ରଖୁଥିଲେ ଓ ସେଥିପାଇଁ ପିଲାଙ୍କ ଲାଗି ଅନୁଷ୍ଠାନର ମୁଖ୍ୟ ଶିକ୍ଷକଙ୍କଠାରୁ ଆରମ୍ଭ କରି ସମସ୍ତ ଶିକ୍ଷକ ଶିକ୍ଷୟିତ୍ରୀମାନେ ମଧ୍ୟ ସର୍ବାନ୍ତଃକରଣରେ ଯତ୍ନଶୀଳ ରହୁଥିଲେ । ଶିକ୍ଷକମାନେ ପ୍ରତି ତିନି ମାସରେ ଥରେ ଲେଖାଏଁ ତାଙ୍କ ଦାୟିତ୍ୱରେ ଥିବା ପ୍ରତ୍ୟେକ ପିଲାମାନଙ୍କର ପାଠ୍ୟ ଖସଡ଼ା ଅନୁଯାୟୀ ପଢ଼ାଯାଉଥିବା ପାଠ ସହ ପିଲାଟିର ପ୍ରାଜ୍ଞିକ ଅଗ୍ରଗତି, ଶାରୀରିକ, ମାନସିକ ସ୍ୱାସ୍ଥ୍ୟର ପ୍ରଗତି, ଚ଼ାରିତ୍ରିକ ସୌଷ୍ଠବର ଉତ୍‌ଥାନ ପତନର ସମୀକ୍ଷା ସହ ତାହାର ସାମଗ୍ରିକ ଛାତ୍ର ଜୀବନର ଉନ୍ନତି ଅବନତିର ସଂକ୍ଷିପ୍ତ ଟିପ୍ପଣୀ ପ୍ରଧାନ ଶିକ୍ଷକଙ୍କୁ ଦେଇଥାଆନ୍ତି । ପ୍ରଧାନ ଶିକ୍ଷକ ସେ ସବୁକୁ ତନ୍ନ ତନ୍ନ କରି ପରୀକ୍ଷା କରି ପ୍ରତ୍ୟେକ ପିଲାଙ୍କୁ ବ୍ୟକ୍ତିଗତ ଭାବେ ଖଣ୍ଡେ ଖଣ୍ଡେ ଚ଼ିର୍‌କୁଟିରେ ଲେଖି ଅନ୍ୟ କେହି, ନ ଜାଣିଲା ପରି ପିଲାଟିର ହାତରେ ଚୁପ୍‌କିନା ଧରାଇ ଦିଅନ୍ତି । ଆମେ ପିଲାମାନେ ସେ ସବୁ ପଢ଼ି ନିଜେ ନିଜକୁ ସୁଧାରି ନେବାର ମନେ ମନେ ଶପଥ ନେଇ କାର୍ଯ୍ୟ କରିଯାଉ । ଉଦ୍ଦିଷ୍ଟ କ୍ଲାସ୍ ବା ସୋପାନର ପାଠ ପଢ଼ା ବ୍ୟତୀତ ଅଧିକ ସୃଷ୍ଟିଶୀଳ ଜ୍ଞାନାର୍ଜନ ପାଇଁ ଲାଇବ୍ରେରୀ ପଢ଼ାକୁ ଆମ୍ଭେମାନେ ତେଣୁ ଅଗ୍ରାଧିକାର ଦେଇଥାଉ । ଏହି ତିନି ମାସିଆ ଚ଼ିର୍‌କୁଟି ଆମ୍ଭମାନଙ୍କୁ ଛାତ୍ରଜୀବନର ଉନ୍ନତ ପରିକଳ୍ପେ ସାମଗ୍ରିକ ଜ୍ଞାନାର୍ଜନର ନାନା ଶୁଭଙ୍କର ଆଲୋକିତ ଦିଗ ବିଦିଗର ସମୁଜ୍ଜ୍ୱଳ ଆଭାସ ପ୍ରଦାନ କରିଥାଏ । ନିମ୍ନରେ

ପ୍ରଦତ୍ତ କେତୋଟି ଚିର୍‌କୁଟିର ନମୁନାରୁ ଏହା ଅନୁଭୂତ ହୋଇ ପାରିବ ବୋଲି ଆଶା କରାଯାଏ ।

**୧- ସୀତାନାଥ (୧୯୫୬ ବ୍ୟାଚ୍)**

"ଅଧ୍ୟୟନ ଆହୁରି ବଢ଼ିବ ଓ ବ୍ୟାପକ ହେବ । ଅଧିକ ଶୃଙ୍ଖଳିତ ଓ ନିୟମିତ ଜୀବନ ଆବଶ୍ୟକ । ତଥାପି ଆପଣା ଉପରେ ଜୋର୍ କରି କିଛି ଲଦିବା ଉଚିତ୍ ନୁହେଁ, ଏହା ଆତ୍ମଗ୍ଲାନିର ହିଁ ପରିଚୟ ଦେବ । ଜୀବନକୁ ଛନ୍ଦୋମୟ ଓ ସୁନ୍ଦର କରିବା, ବିକାଶକୁ ଏକ ସ୍ୱାଭାବିକ ରୀତିରେ ପକାଇବା ହେଉଛି ବିଦ୍ୟା ଦ୍ୱାରା ଦୀପ୍ତ ହେବାର ଅତି ବଡ଼ ଲକ୍ଷଣ ।"

**୨-ମଦନ (୧୯୫୬)**

"ଅଧ୍ୟୟନ ଯଥେଷ୍ଟ ହେଉଛି । ତଥାପି ଶୃଙ୍ଖଳାବଦ୍ଧ ହୋଇନାହିଁ । ତେଣୁ ଜୀବନରୁ ଅନେକ ସ୍ଫୁର୍ତ୍ତି ଚାଲିଯାଉଛି । ଗୁଡ଼ାଏ ଖଟୁଛ କିନ୍ତୁ ଜୀବନ ଗଢ଼ିବାର ଓ ଆଗକୁ ଯିବାର ଆନନ୍ଦ ଅନୁଭବ କରି ପାରୁନାହିଁ । ତୁମର ମନ ଉପରେ ଅନେକ ଭୟ ଆବରଣ ପରି ହୋଇ ରହିଛି ।" (ଜଙ୍ଗଲ ଚିଠି, ଦ୍ୱିତୀୟ ସଂ, ପୃଷ୍ଠା ୧୬୧) ।

ଜୀବନ ବିଦ୍ୟାଳୟରେ ଅନ୍ୟାନ୍ୟ ପାଠ ପଢ଼ା ଓ ଧନ୍ଦା ଶିକ୍ଷା ବ୍ୟତୀତ ପ୍ରତି ସପ୍ତାହରେ ଥରେ ତର୍କ ପ୍ରତିଯୋଗିତା ହେଉଥିଲା । ଏଥିରେ ଉଭୟ ଶିକ୍ଷକ ଓ ଛାତ୍ର ଛାତ୍ରୀ ଭାଗ ନେଉଥିଲେ । ସାଧାରଣତଃ ପ୍ରଚଳିତ ଶିକ୍ଷାରେ ଯେଉଳି ତର୍କାଲୋଚନା ଚାଲେ, ଏଠାରେ କିନ୍ତୁ ସେଉଳି ଧାରାରେ ନ ହୋଇ ଏକ ଭିନ୍ନ ଧରଣର ହୋଇଥାଏ । ତର୍କାଲୋଚନାରେ ଥିବା ଉଦ୍ଦିଷ୍ଟ ବିଷୟ ଗୁଡ଼ିକ ଛୋଟ ଛୋଟ କାଗଜ ଟୁକୁଡ଼ାରେ ଲେଖାଯାଇ ସେଥି ମଧ୍ୟରୁ ୮/୧୦ଟି ଚିର୍‌କୁଟିକୁ ଗୋଟି ଗୋଟି କରି ମୋଡ଼ି ମକଚି ଗୁଳା କରି ଦେଇ ଏକ ପାତ୍ର ମଧ୍ୟରେ ରଖା ଯାଇ ଥାଏ । ପ୍ରଥମେ ଜଣେ ସେଥିରୁ ଉଠାଇ ନେଇ ୫ ମିନିଟ୍ ପାଇଁ ବାହାରକୁ ଯାଇ ଚିର୍‌କୁଟି ଖୋଲି, ସେଥିରେ ଯେଉଁ ବିଷୟରେ କହିବାକୁ ହେବ ବୋଲି ଲେଖା ଥାଏ । ସେଇ ବିଷୟର ସପକ୍ଷ ବା ବିପକ୍ଷରେ ମତ ଲାଗି ନିଜକୁ ପ୍ରସ୍ତୁତ କରି ଆସି ୫ ମିନିଟ୍ ତାଙ୍କର ଭାଷଣ ପ୍ରଦାନ କରନ୍ତି । ସିଏ କହିବା ଆରମ୍ଭ କଲା ମାତ୍ରେ ଆଉ ଜଣେ ଗୁଳା ଉଠାଇ ବାହାରକୁ ଯାଆନ୍ତି । ପ୍ରଥମ ଜଣଙ୍କ ବକ୍ତବ୍ୟ ପରେ ବିଷୟଟିରେ ଅନ୍ୟମାନେ ଅନୁକୂଳ ବା ପ୍ରତିକୂଳ ଆଲୋଚନା କରନ୍ତି । ଚର୍ଚ୍ଚିତ ବିଷୟଟିକୁ କିଏ କେଉଁ ଦୃଷ୍ଟିରୁ କେତେ ବୁଝିଛି, ତାହା ତାଙ୍କ ବକ୍ତବ୍ୟରୁ ବୁଝା ପଡ଼ିଯାଏ । ଶେଷରେ ଚିତ୍ତଭାଇ ସବୁଗୁଡ଼ିକର ଆଲୋଚନା କରି କାହାର କେଉଁଠି ଭୁଲ ରହିଲା, ତାହା ସୂଚାଇ ଦିଅନ୍ତି । ଏଥିରେ ଅଦ୍ଭୁତ ଅଦ୍ଭୁତ ନାନା ବିଷୟସବୁ

ଚିରକୁଟିରେ ଲେଖାଯାଇଥାଏ, ଯଥାଃ- କହି ଜାଣିଲେ କଥା ସୁନ୍ଦର, ପର ଗାଁ ନଇଁ ନିଜ ଗାଁ ମଶାଣି, ଜୋର୍ ଯା'ର ମୂଲକ ତା'ର, ଗାଁ ପରିମଳ ଧୋବା ତୁଠରୁ, ସରଗକୁ ନିଶୁଣି ନାହିଁ, ଚେଇଁ ଶୋଇବ ଯିଏ, ତାକୁ ଉଠାଇବ କିଏ ? ଚାଲି ନ ଜାଣି ବାଟର ଦୋଷ, ଓ ବସି ଖାଇଲେ ନଈ ବାଲି ସରେ ଇତ୍ୟାଦି। ଏପରି ତର୍କାଲୋଚନାର ଉଦ୍ଦେଶ୍ୟ ଅତି ମହତ୍। ଏହାଦ୍ୱାରା ଛାତ୍ର ଛାତ୍ରୀମାନେ ସାଧାରଣ ଜୀବନ ସହିତ ସଂଶ୍ଳିଷ୍ଟ ନାନା ବିଷୟର ସାର ଅସାର ଚିନ୍ତା କରି ତାହା ଉପଯୁକ୍ତ ଭାବେ ଅନ୍ୟ ସମକ୍ଷରେ ସ୍ୱକୀୟ ଢ଼ଙ୍ଗରେ ଉପସ୍ଥାପିତ କରି ପାରିବାର ବୈଚାରିକ ଶକ୍ତି ଆହରଣ କରି ପାରିବେ। ଏହିଭଳି ତର୍କାଭ୍ୟାସ କରି ଜୀବନ ବିଦ୍ୟାଳୟର ଛାତ୍ରମାନେ ଅନ୍ୟତ୍ର ତର୍କ ପ୍ରତିଯୋଗିତାରେ ଭାଗ ନେଇ ସୁନାମ ଅର୍ଜନ କରି ଫେରିଥାଆନ୍ତି। ଥରେ ୧୯୫୮ ମସିହା ଏପ୍ରିଲ୍ ମାସରେ ଅନୁଗୋଳସ୍ଥ ବେସିକ୍ ଟ୍ରେନିଂ କଲେଜରେ ଏକ ବକ୍ତୃତା ପ୍ରତିଯୋଗିତା ଆୟୋଜିତ ହୋଇଥିଲା। ସେଥିରେ ଅବିଭକ୍ତ ଢେଙ୍କାନାଳ ଜିଲ୍ଲାର ସବୁ ହାଇସ୍କୁଲରୁ ନିର୍ବାଚିତ ଛାତ୍ରମାନେ ଯୋଗ ଦେଇଥିଲେ। ସେମାନଙ୍କ ସହ ଆମ ଚମ୍ପତ୍ତିମୁଣ୍ଡା ଜୀବନ ବିଦ୍ୟାଳୟରୁ ଦୁଇଜଣ (ଶ୍ରୀ ନନିଗୋପାଲ ପାଲିତ୍ ଓ ଶ୍ରୀ ନବଘନ ମଲ୍ଲିକ) ଛାତ୍ର ଯୋଗ ଦେଇଥିଲେ। ବକ୍ତୃତା ପ୍ରତିଯୋଗିତାର ଫଳାଫଳରୁ ଜଣାଗଲା ଯେ- ଜୀବନ ବିଦ୍ୟାଳୟର ଶ୍ରୀ ନନି ଗୋପାଲ୍ ପାଲିତ୍ ପ୍ରଥମ, ଅନୁଗୋଳ ହାଇସ୍କୁଲର ଛାତ୍ର ଶ୍ରୀ ବୀଣାକର ପାଣି ଦ୍ୱିତୀୟ ଓ ଜୀବନ ବିଦ୍ୟାଳୟର ଛାତ୍ର ଶ୍ରୀ ନବଘନ ମଲ୍ଲିକ ତୃତୀୟ ସ୍ଥାନ ଅଧିକାର କରିଛନ୍ତି। ସେଦିନର ବିଷୟବସ୍ତୁ ଥିଲା "ଇଂରାଜୀ ପରିବର୍ତ୍ତେ ଆଞ୍ଚଳିକ ଭାଷା ସବୁଶିକ୍ଷାର ମାଧ୍ୟମ ହେବା ଉଚିତ୍।"

ଜୀବନ ବିଦ୍ୟାଳୟରେ ଏକ ହାତଲେଖା ମାସିକ ପତ୍ରିକା ପ୍ରକାଶିତ ହେଉଥିଲା। ତା'ର ସମ୍ପାଦନାର ଦାୟିତ୍ୱ ନିର୍ବାଚିତ ଛାତ୍ରଛାତ୍ରୀହିଁ ସମ୍ଭାଳୁଥିଲେ। ପତ୍ରିକାର ନାମ ରଖାଯାଇଥିଲା "ବିକାଶ"। ସେଥିରେ ଛାତ୍ର ଛାତ୍ରୀମାନଙ୍କ ରଚିତ ଗଳ୍ପ, କବିତା, ପ୍ରବନ୍ଧ, ରମ୍ୟ ରଚନା ଇତ୍ୟାଦି ସହ ଶିକ୍ଷକମାନଙ୍କର ଲେଖା ମଧ୍ୟ ପ୍ରକାଶିତ ହେଉଥିଲା। "ବିକାଶ" ପତ୍ରିକାରେ ସେତେବେଳେ କବି ଶ୍ରୀ ରାଧାମୋହନ ଗଡ଼ନାୟକ, ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ ଓ ଡ଼ଃ ଶ୍ରୀ ମାୟାଧର ମାନସିଂହ ମଧ୍ୟ ଲେଖାଲେଖି କରୁଥିଲେ। "ବିକାଶ" ପତ୍ରିକାରୁ ପାଠକେ ଅନ୍ତତଃ ଚମ୍ପତ୍ତିମୁଣ୍ଡା ଜୀବନ ବିଦ୍ୟାଳୟର ଛାତ୍ର ଛାତ୍ରୀଙ୍କର ତତ୍କାଳୀନ ଅନ୍ୟାନ୍ୟ ବିଦ୍ୟାଳୟରେ ସେତେବେଳେ ସେଇ ବୟସ ଓ ଶ୍ରେଣୀରେ ପାଠ ପଢୁଥିବା ବାଳକ ବାଳିକାମାନଙ୍କର ସାହିତ୍ୟ ଜ୍ଞାନ, ବିଜ୍ଞାନ ସମ୍ବନ୍ଧୀୟ ଜ୍ଞାନ, ସାମାଜିକଜ୍ଞାନ ତଥା ବିଶ୍ୱର ତାତ୍କାଳିକ ରାଜନୀତି ସମ୍ବନ୍ଧୀୟ ଜ୍ଞାନ ସହ ଭାରତୀୟ ତଥା ଅ-ଭାରତୀୟ ଧର୍ମ ଏବଂ ସଂସ୍କୃତି ସମ୍ବନ୍ଧୀୟ ଜ୍ଞାନଠାରୁ କେତେ

ଯେ ସୁପ୍ରସସ୍ତ ଓ ଗଭୀର, ତାହା ତୁଳନା କରି ବେଶ୍ ଆକଳନ କରି ପାରିବେ । ଏଠି "ବିକାଶ"ର ସବୁ ସଂଖ୍ୟାର ତ ଉଦାହରଣ ଦେବା ସମ୍ଭବ ନୁହେଁ, ମାତ୍ର ୧୯୫୭-୫୮ ମସିହାର ପାଶ୍ଚାତ୍ୟ ସଂସ୍କୃତି ବିଶେଷାଙ୍କର କେବଳ ସଂପାଦକୀୟଟିର ଅବିକଳ ନକଲ ଏ ପୁସ୍ତକଟିର ଶେଷଭାଗରେ ପ୍ରଦାନ କରୁଛି । ସେଠିକାର ଛାତ୍ର ଛାତ୍ରୀମାନେ ସେତେବେଳେ ଦୁଇ ଦୁଇଟା ବିଶ୍ୱଯୁଦ୍ଧ ପରେ, ବିଶ୍ୱ ସମୁଦାୟ ବିଷୟରେ କେଉଁପରି ଚିନ୍ତା କରୁଥିଲେ ଓ ତତ୍କାଳୀନ ବିଶ୍ୱ ସମସ୍ୟାର କିପରି ସମାଧାନର ପନ୍ଥା ବାହାରି ପାରିବ, ତାହାର ନିର୍ଭିକ ପ୍ରସ୍ତାବନାମାନ "ବିକାଶ"ର ସଂସିତ ସମ୍ପାଦକୀୟରୁ ପ୍ରମାଣ ପାଠକମାନଙ୍କୁ ମିଳିପାରିବ ବୋଲି ମୋର ଦୃଢ଼ ବିଶ୍ୱାସ ।

ଏତଦ୍‌ବ୍ୟତୀତ ୧୯୫୫ ମସିହାରେ ଅବିଭକ୍ତ କଟକ ଜିଲ୍ଲାର ଦଳେଇ ଘାଇ ଭାଙ୍ଗି ଅଭୂତପର୍ବ ବନ୍ୟାଦ୍ୱାରା ପ୍ରପୀଡ଼ିତ ଲୋକମାନଙ୍କର ଦୁଃଖ ଦୁର୍ଦ୍ଦଶାରେ କିଭଳି ସେମାନଙ୍କର ସେବା କରି ପ୍ରଶଂସାର ପାତ୍ର ହୋଇଥିଲେ ତାହାର ସ୍ମୃତି ଏବେ ପୁନରାବୃତ୍ତି କରିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଚମ୍ପତିମୁଣ୍ଡା ଜୀବନ ବିଦ୍ୟାଳୟରେ ଛାତ୍ର ଛାତ୍ରୀମାନେ କେବଳ ଧ୍ୟାନ ମଗ୍ନ ହୋଇ ପାଠ ପଢୁନଥିଲେ ମାନବ ସେବା ଯେ ମାଧବ ସେବା, ତାହା ହୃଦୟଙ୍ଗମ କରି ନାନା ବିପତ୍ତି ପ୍ରପୀଡ଼ିତ ଜନମାନଙ୍କର ସେବା କରି ଆତ୍ମତୃପ୍ତି ଲାଭ କରୁଥିଲେ । ଆମ ଓଡ଼ିଶାର ଆଦିବାସୀ ଭାଇ ଭଉଣୀଙ୍କର ଆତ୍ମ ସଚେତନା କିପରି ବଢ଼ି ପାରିବ ଓ ସେମାନଙ୍କର ସାମାଜିକ, ଆର୍ଥିକ ଓ ଶିକ୍ଷା ତଥା ସଂସ୍କୃତିର ଉନ୍ନତି ହୋଇ ପାରିବ ସେ ସବୁ କଥା ଚିନ୍ତା କରି ଜୀବନ ବିଦ୍ୟାଳୟର କେତେକ ଛାତ୍ର କେନ୍ଦୁଝର ଜିଲ୍ଲା ଜୁଆଙ୍ଗ ପୀଢ଼ରେ ବସବାସ କରୁଥିବା ଜୁଆଙ୍ଗ ଜନଜାତି ଲୋକମାନଙ୍କ ପାଖକୁ ଯାଇ ମାସେ ଦୁଇମାସ କାଳ ସେମାନଙ୍କ ଜୀବନ ଜୀବିକାର ସବୁ ବିଷୟରେ ସର୍ଭେ କରି ସର୍ବ ସମକ୍ଷରେ ପ୍ରକାଶ କରି ଆଦର ଲାଭ କରିଥିଲେ । ସେଇ ଛାତ୍ର ଦଳ ସହିତ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଚିତ୍ତଭାଇ ମଧ୍ୟ ସେମାନଙ୍କର ଗାଇଡ୍ (guide) ହିସାବରେ ଯାଇଥିଲେ । ମଧ୍ୟ ପ୍ରଦେଶ ଇନ୍ଦୋର ବିଶ୍ୱବିଦ୍ୟାଳୟର ପ୍ରଫେସର ଦିଓ୍ୱାନ୍ ବଧ୍ୱା ମଧ୍ୟ ସେମାନଙ୍କ ସାଥିରେ ଯାଇ କାମ କରିଥିଲେ ।

ପ୍ରଫେସର ବଧ୍ୱା ଆମ ବିଦ୍ୟାଳୟରେ ୪/୫ ମାସ ଆମ ସହିତ ବିତାଇଥିଲେ । ଆମ ମାନଙ୍କର କ୍ଲାସ ମଧ୍ୟ ନେଉଥିଲେ । ସେହି ସମୟରେ ତାଙ୍କ ମନକୁ କ'ଣ ଯୁଟିଲା କେଜାଣି, ଆମ ଜୀବନ ବିଦ୍ୟାଳୟ ଉପରେ ଏକ field study କରି ଇଂରାଜୀରେ ସୁନ୍ଦର ସନ୍ଦର୍ଭଟିଏ ଲେଖି ବାହାର ପତ୍ରିକାରେ ପ୍ରକାଶ କରିଥିଲେ । ତହିଁର ଓଡ଼ିଆ ଅନୁବାଦ ଚିତ୍ତଭାଇ କରି ତାଙ୍କ ବିରଚିତ ଜଙ୍ଗଲ ଚିଠିରେ ପ୍ରକାଶ

କରିଛନ୍ତି । (ଜଙ୍ଗଲ ଚିଠି, ଦ୍ୱିତୀୟ ସଂସ୍କରଣ, ପୃ ୧୬୯- ୧୯୦ ଦ୍ରଷ୍ଟବ୍ୟ) । ସେ ମହାଶୟ ଜୀବନ ବିଦ୍ୟାଳୟର ପ୍ରତିଟି ବିଭାବକୁ ତନ୍ନ ତନ୍ନ କରି ଅନୁଧ୍ୟାନ କରିଛନ୍ତି ଓ ତାଙ୍କ ସନ୍ଦର୍ଭରେ ତାଙ୍କର ସ୍ୱକୀୟ ମତାମତ ପ୍ରଦାନ କରିଛନ୍ତି । ବିଦ୍ୟାଳୟର ପରିକଳ୍ପନାଠାରୁ ଆରମ୍ଭ କରି, ତାହାର ଅବସ୍ଥିତି, ଇତିହାସ, ଉଦ୍ଦେଶ୍ୟ, ପାଠ ଓ ପାଠ୍ୟକ୍ରମ, ଛାତ୍ରଗ୍ରହଣ ପଦ୍ଧତି, ବିଦ୍ୟାଳୟର ଛୁଟି କୃଷି, ଶିକ୍ଷା, ଅନ୍ୟ ଧନ୍ଦାମୂଳକ ଶିକ୍ଷା, ଗୋଶାଳା, ସ୍ୱାସ୍ଥ୍ୟ ଓ ସ୍ୱାସ୍ଥ୍ୟରକ୍ଷା, ଶିକ୍ଷକମଣ୍ଡଳୀ, ବିଦ୍ୟାଳୟର ପ୍ରତ୍ୟାହିକ କାର୍ଯ୍ୟକ୍ରମ ଓ ସର୍ବଶେଷରେ ସର୍ବେକ୍ଷଣର ବିସ୍ତୃତ ବିବରଣୀ ପ୍ରଦାନ କରିଛନ୍ତି । ସେଥିରେ ଆମ୍ଭମାନଙ୍କ ଜାତି, ବୟସ ଓ ସେଠାକୁ ଆସିବାର ପୂର୍ବଶିକ୍ଷା, ଆମର ଭାଷାଜ୍ଞାନ, ରଚନା ପ୍ରବୃତ୍ତି କାର୍ଯ୍ୟ ଦକ୍ଷତା, ସାମୁହିକ ପରିଭ୍ରମଣ, ଆମର ଅବସର ବିନୋଦନ, ଆମର ସେଠି କ'ଣ କ'ଣ ବିଶେଷ ଅଧ୍ୟୟନ । ରୋଗ ବୈରାଗ ଅମଳ ସେବନ, ଆମ୍ଭ ମାନଙ୍କର ଆର୍ଥିକ ଅବସ୍ଥା ଇତ୍ୟାଦି ସେ ତନ୍ନ ତନ୍ନ ଅନୁଧ୍ୟାନ କରି ତହିଁର ବିବରଣୀମାନ ତାଙ୍କ ସନ୍ଦର୍ଭରେ ପ୍ରଦାନ କରିଛନ୍ତି । ଶେଷରେ ତାଙ୍କ ଅନୁଭୂତି ପ୍ରସୁତ ହୃଦୟସ୍ପର୍ଶୀ ଭାଷାରେ କହିଛନ୍ତି । "xxx ପରିସ୍ଥିତିରୁ ଯାହା ଦୃଷ୍ଟି ଗୋଚର ହେଉଛି । ପ୍ରଧାନତଃ ଗରୀବ ପିଲାମାନଙ୍କ ପାଇଁ ହିଁ ଆଜି ଦେଶରେ ମୌଳିକ ଶିକ୍ଷା ଚାଲିଛି, ଧନୀଘର ପିଲାପାଇଁ ନୁହେଁ ।" ପୁନଶ୍ଚ ସେ ପ୍ରକାଶ କରିଛନ୍ତି "ବିଦ୍ୟାର୍ଥୀର ସମଗ୍ର ବିକାଶକୁ ମୌଳିକ ଶିକ୍ଷା ମଧ୍ୟ ଆପଣାର ଧ୍ୟେୟ ରୂପେ ଗ୍ରହଣ କରିବ ବୋଲି ଆମର ବିଶ୍ୱାସ । ଏହି ସମଗ୍ର ବା ପୂର୍ଣ୍ଣାଙ୍ଗ ବିକାଶ ଲାଗି ଛାତ୍ରମାନଙ୍କୁ ସମ୍ପୂର୍ଣ୍ଣ ସ୍ୱତନ୍ତତା ମିଳିବା ଉଚିତ । ସେମାନଙ୍କର ବିକାଶ ପଥରୁ ସକଳ ପ୍ରକାର ବାଧାକୁ ଅପସରାଇ ନେବା ଉଚିତ୍, ଯେପରି କି ସେମାନେ ସ୍ୱନିର୍ବାଚିତ ପଥରେ ଓ ସ୍ୱନିର୍ବାଚିତ ଦିଗରେ ଆଗକୁ ଯିବାର ପରିସର ପାଇବେ । ଏହି ବିଦ୍ୟାଳୟରେ ବୌଦ୍ଧିକ ଶ୍ରମ ଓ ଶାରୀରିକ ଶ୍ରମ ମଧ୍ୟରେ ସର୍ବଦା ଏକ ସୁସ୍ଥ ଭାରସାମ୍ୟ ରଖିବା ଲାଗି ସବୁପ୍ରକାର ସମ୍ଭାବ୍ୟ ଉଦ୍ୟମ କରାଯାଉଛି ଏବଂ ଛାତ୍ରମାନଙ୍କର ଇଚ୍ଛା ବିରୁଦ୍ଧରେ ସେମାନଙ୍କ ଉପରେ କୌଣସି କଥାକୁ ଲଲଦି ଦିଆଯାଉ ନାହିଁ । ଏହି ବିଦ୍ୟାଳୟରେ ବୌଦ୍ଧିକ ଶ୍ରମ ଓ ଶାରୀରିକ ଶ୍ରମ ମଧ୍ୟରେ ସର୍ବଦା ଏକ ସୁସ୍ଥ ଭାରସାମ୍ୟ ରଖିବା ଲାଗି ସବୁପ୍ରକାର ସମ୍ଭାବ୍ୟ ଉଦ୍ୟମ କରାଯାଉଛି ଏବଂ ଛାତ୍ରମାନଙ୍କର ଇଚ୍ଛା ବିରୁଦ୍ଧରେ ସେମାନଙ୍କ ଉପରେ କୌଣସି କଥାକୁ ଲଦି ଦିଆଯାଉ ନାହିଁ । ଏ କଥା ଦେଖି ଏଠାରେ ମୁଁ ପ୍ରକୃତରେ ଅନେକ ସାନ୍ତ୍ୱନା ପାଇଲି । ସେମାନଙ୍କୁ (ଛାତ୍ରମାନଙ୍କୁ) ଏଠାରେ ଅତିରିକ୍ତ ସ୍ୱାଧୀନତା ଦିଆଯାଉଛି ବୋଲି ମଧ୍ୟ ଦୁଇ ତିନିଜଣ ଛାତ୍ର (ମୁଁ ସେମାନଙ୍କୁ ପଚାରିଥିବା ଏ ସମ୍ବନ୍ଧୀୟ ପ୍ରଶ୍ନର) ଆପଣାର ଉତ୍ତରରେ ଲେଖିଛନ୍ତି । ସେମାନେ

ଆପତ୍ତି କରି କହିଛନ୍ତି ଯେ କୌଣସି ବିଦ୍ୟାଳୟରେ ଏତେ ଦୂର ସ୍ୱାଧୀନତା ଦିଆଯିବା ଅନୁଚିତ, କାରଣ ଏଥିରେ ସ୍ୱାଧୀନତାର ଅପବ୍ୟବହାର ହେବାର ମଧ୍ୟ ଭୟ ସର୍ବଦା ରହିଛି । ମୁଁ ସେମାନଙ୍କୁ ବୁଝାଇ କହିଲି ଯେ- ଅନ୍ୟମାନେ ଛାଇତଳେ ବସି ଟିକିଏ ଆରାମ ପାଇବେ ଏଇଥିପାଇଁ କେହି କେହି ରାସ୍ତାକଡ଼ରେ ଗଛ ଲଗାଇଥାଆନ୍ତି । କିନ୍ତୁ ଯଦି ଦୁର୍ଭାଗ୍ୟବଶତଃ କେହି ଆସି ଏହି ଗଛର ଡ଼ାଳପତ୍ର ଭାଙ୍ଗିବାକୁ ଆରମ୍ଭ କରେ, ତେବେ ଏଥିଲାଗି ରାସ୍ତା କଡ଼ରେ ଗଛ ଲଗାଇବା ଅନୁଚିତ ବୋଲି ଭାବିବା ଆଦୌ ଯୁକ୍ତିଯୁକ୍ତ ହେବ ନାହିଁ । ଏତୁଗୁଡ଼ାଏ ସ୍ୱାଧିନତା ଦେବାରେ ଅବଶ୍ୟ ଯେ କେତେକ ପ୍ରମାଦ ରହିଛି, ମୁଁ ଏକଥା ଅବଶ୍ୟ ମାନୁଛି । କିନ୍ତୁ ସେମାନଙ୍କୁ ଏତେବେଶୀ ସ୍ୱାଧିନତା ଦିଆ ଯାଉଥିବାରୁ ଏହି ବିଦ୍ୟାଳୟର ଛାତ୍ରମାନେ ଯେ ବିଦ୍ୟାଳୟ ବିଷୟରେ ପ୍ରକୃତରେ ଗର୍ବ ଅନୁଭବ କରୁଛନ୍ତି, ଏଥିରେ ମୋର କୌଣସି ସନ୍ଦେହ ନାହିଁ ।" ପୁନଶ୍ଚ "ଏହି ବିଦ୍ୟାଳୟ ଏକ ଯନ୍ତ୍ର ପରି କାର୍ଯ୍ୟ କରୁନାହିଁ । xxx ଏହାକୁ ମୁଁ ମଣିଷର ମନକୁ ନେଇ ପ୍ରୟୋଗ ଚ଼ଳାଉଥିବା ଏକ ପ୍ରୟୋଗଶାଳା ବୋଲି କହିବି । ଏ ବିଦ୍ୟାଳୟ ଏକ ବୃହତ୍ ପରିବାର, ଅନ୍ୟ କୌଣସି ବିଦ୍ୟାଳୟ ସହିତ ଏହାର ତୁଳନା କରାଯାଇ ପାରିବ ନାହିଁ"।

ଏହି ସବୁ କଥା ପ୍ରଫେସର ବଧ୍‌ୱା, ତାଙ୍କ କଳ୍ପନା ପ୍ରସୂତ ମନୋରାଜ୍ୟରୁ ଲେଖିନାହାଁନ୍ତି । ତାଙ୍କ ସର୍ବେକ୍ଷଣରେ ସେ ପ୍ରତିଟି ପିଲାଙ୍କୁ ପଚ଼ାରି ସେମାନଙ୍କଠାରୁ ସ୍ପଷ୍ଟ ଉତ୍ତର ଲାଭ କରିଥିବା ଉତ୍ତର ଗୁଡ଼ିକରୁ ସଂଗ୍ରହ କରି ଲେଖିଛନ୍ତି । ସର୍ବଶେଷରେ ସେ ଜୀବନ ବିଦ୍ୟାଳୟର ସକଳ ପ୍ରକାର ଅଭାବର ସନ୍ଦର୍ଶନ କରି ଏଠି ଶିକ୍ଷକର ଅଭାବ, ଜଳକଷ୍ଟ, ଘର ଅଭାବ, ଛାତ୍ରାବାସ ପାଇଁ ଘର ଓ ଅର୍ଥାଭାବ ଇତ୍ୟାଦିରେ ଯେତିକି ଦୁଃଖ ପ୍ରକାଶ କରିଛନ୍ତି । ତା'ଠାରୁ ଅଧିକ ଖୁସି ହୋଇଛନ୍ତି । କାରଣ ଏଠି ପ୍ରଧାନ ଶିକ୍ଷକଙ୍କର ଅନବଦ୍ୟ ଆତ୍ମୀୟ ପ୍ରେରଣା ଓ ଦିଗ୍‌ଦର୍ଶନ ଲାଭ କରି ଛାତ୍ର ଛାତ୍ରୀମାନେ ନିଜକୁ ସବୁ ହୀନମନ୍ୟତାଠାରୁ ଉଚ୍ଚରେ ରଖି ସ୍ୱକୀୟ ସାଧନାରେ ବ୍ରତୀ ହୋଇ ବିଦ୍ୟାଧ୍ୟୟନ ଏବଂ ଭବିଷ୍ୟତ ଜୀବନ ଗଠନର ସ୍ୱପ୍ନ ଦେଖି ଅତି ସ୍ୱାଭାବିକ ଭାବେ ହସ ଖେଳର ଛାତ୍ର ଜୀବନ କଟାଇବାର ନିତ୍ୟନୈମିତିକ ହର୍ଷୋତ୍‌ଫୁଲ୍ଲ ପରିବେଶ ଓ ପରିସର ସେମାନଙ୍କ ଲାଗି ଅନୁକୂଳ ଅଟେ । ତଥାପି ସେ କହିଛନ୍ତି- "ବସ୍ତୁତଃ ଏଇ ବିଦ୍ୟାଳୟର କାର୍ଯ୍ୟ ଏକ ଅତି ଶକ୍ତ କାର୍ଯ୍ୟ ଏବଂ କୌଣସି ଜଣେ ମଣିଷ କଦାପି ଏହାକୁ ସମ୍ପନ୍ନ କରି ପାରିବ ନାହିଁ । ଏଥିଲାଗି ଅନେକ ମଣିଷର ଧୈର୍ଯ୍ୟ ଦରକାର । ଅନବରତ ଓ ହାର୍ଦ୍ଦିକ ଚ଼େଷ୍ଟା ଦରକାର । ସୁଦକ୍ଷ ଓ ଆଗ୍ରହବାନ ଶିକ୍ଷକଙ୍କର ଏକ ଗୋଷ୍ଠୀ ମଧ୍ୟ ଦରକାର"। ତାଙ୍କ ଶେଷ conclusionରେ ସେ କହିଛନ୍ତି- "ଉଚ୍ଚଉର

ନୀତି ଦୃଷ୍ଟିରୁ ବିଚାର ନକରି କେବଳ ପ୍ରୟୋଜନ ଦୃଷ୍ଟିରୁ ମଧ୍ୟ ଆମ ଭାରତବର୍ଷରେ ଶିକ୍ଷାକ୍ଷେତ୍ରରେ ଏହିପରି ପ୍ରୟୋଗ ଗୁଡ଼ିକ ଲାଗି ସମ୍ପୂର୍ଣ୍ଣ କ୍ଷେତ୍ର ଓ ସହଯୋଗ ମିଳିବା ଦରକାର । ତେଣେ ଭୋକ ଉପାସ ଆମ ଦୁଆର ଉପରେ ଆସି ହାତ ବାଢ଼େଇଲାଣି । ଦେଶରେ ମାଳ ମାଳ ବେକାର ବୁଲୁଛନ୍ତି । ତଥାପି ଆମର ବିଦ୍ୟାଳୟ ମାନଙ୍କରେ ଆମ କିଶୋର ଓ ତରୁଣମାନଙ୍କୁ ତୁଛା ବସି ରହି କାମ କରିବାର କିରାଣୀରେ ପରିଣତ କରିବାର ମନ୍ଦ ପ୍ରୟାସ ଚାଲିଛି । ଏହି ଜୀବନ ବିଦ୍ୟାଳୟ ଦ୍ୱାରା ଆକାଂକ୍ଷିତ ଶିକ୍ଷା ଦ୍ୱାରାହିଁ ଆମ ଲାଗି ଏହି ବିଷଚକ୍ରରୁ ନିସ୍ତାର ପାଇବାର ସମ୍ଭାବନା ରହିଛି । ଏହି ଶିକ୍ଷାଦ୍ୱାରା ହିଁ ଆମ ତରୁଣ ସମାଜର ଅନ୍ତର୍ନିହିତ ଶକ୍ତି ଓ ବ୍ୟକ୍ତିତ୍ୱର ପରିପୂର୍ଣ୍ଣ ବିକାଶ ସମ୍ଭବ ହୋଇପାରିବ ।"

ଆମେ ଦେଖୁଛୁ, ଏହି ବିଦ୍ୟାଳୟକୁ ବହୁ ଉଚ୍ଚମନା ବ୍ୟକ୍ତି, ଯଥା- ତତ୍କାଳୀନ ରେଭେନ୍ସା ମହାବିଦ୍ୟାଳୟରୁ ଓଡ଼ିଆ ଭାଷା ସାହିତ୍ୟ ବିଭାଗର ପ୍ରଫେସର ଡ଼ଃ ଆର୍ତ୍ତବଲ୍ଲଭ ମହାନ୍ତି, ଯିଏ କି ଓଡ଼ିଶାର ସମାଲୋଚନା ସାହିତ୍ୟ ତଥା ସଂସ୍କୃତିର ଜଣେ ଅଗ୍ରଗାମୀ ପ୍ରଜ୍ଞାବାନ ବ୍ୟକ୍ତି, ସେ ମଧ୍ୟ ତାଙ୍କ ମନ୍ତବ୍ୟରେ ବିଦ୍ୟାଳୟର ଶିକ୍ଷା ଓ ଛାତ୍ର ଛାତ୍ରୀମାନଙ୍କର ତହିଁରେ ଅଗ୍ରଗତିର ଭୁରି ଭୁରି ପ୍ରଶଂସା କରି ଚିତ୍ତଭାଇଙ୍କୁ ଜଣେ ଅଭୁତପୂର୍ବ ଶିକ୍ଷାବିତ୍ ବୋଲି କହି ସେତେବେଳେ ଆମକୁ ଉତ୍ସାହିତ କରିଥିଲେ । ଏ ବିଦ୍ୟାଳୟକୁ ସୁଦୂର ଫିନ୍‌ଲ୍ୟାଣ୍ଡରୁ ମଧ୍ୟ ଗବେଷକ ମିଷ୍ଟର ଉନ୍ତୋ, ମହାତ୍ମାଗାନ୍ଧିଙ୍କ ଜୀବନ ଦର୍ଶନ ଉପରେ ଗବେଷଣା ଲାଗି ତାଙ୍କର ଭାରତ ଗସ୍ତ କାଳରେ ଚମ୍ପତିମୁଣ୍ଡା ଜୀବନ ବିଦ୍ୟାଳୟରେ କିଛି ମାସ ଅବସ୍ଥାନ କରି, ଗାନ୍ଧିଜୀଙ୍କ ଜୀବନାଦର୍ଶ ଓ ଜୀବନ ଦର୍ଶନ ଉପରେ ଚିତ୍ତଭାଇଙ୍କ ସହ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଉପରେ ବିଚାର ବିମର୍ଷ କରି ଫେରି ଯାଇଥିଲେ । ଠିକ୍ ସେମିତି ଜର୍ମାନ୍‌ରୁ ଉର୍ଷୁଲା ଅପା ଏବଂ ଆମେରିକାରୁ ମେହେର ବହନ, ଜୀବନ ବିଦ୍ୟାଳୟରେ ଚାଲିଥିବା ନୂଆ ଶିକ୍ଷା ପ୍ରଣାଳୀ ଅନୁଧ୍ୟାନ କରି ଖୁସି ହୋଇ ଫେରିଥିଲେ । ଏତଦ୍‌ବ୍ୟତୀତ ତତ୍କାଳୀନ ଓଡ଼ିଶା ଶିକ୍ଷା ବିଭାଗର D.P.I. ଡ଼ଃ ବଳଭଦ୍ର ପ୍ରସାଦ ଏହି ବିଦ୍ୟାଳୟକୁ ପରିଦର୍ଶନରେ ଆସି ବିଦ୍ୟାଳୟର ଛାତ୍ର, ଶିକ୍ଷକ ଓ ଶିକ୍ଷାଦାନକୁ ଉଚ୍ଚ ପ୍ରଶଂସା କରି ଫେରି ଯାଇଥିଲେ । ଅନୁଗୋଳସ୍ଥିତ ମୌଳିକ ତାଲିମ୍ ମହାବିଦ୍ୟାଳୟର ଅଧ୍ୟକ୍ଷ ପ୍ରଫେସର ଶତ୍ରୁଘ୍ନ ନାଥ ଓ ଅନ୍ୟ ଅଧ୍ୟାପକମାନେ ଆମର ଅତି ଆଦରଣୀୟ ଅତିଥି ଭାବେ ଆସି ଆମକୁ ବହୁ ଉତ୍ସାହ ପ୍ରଦାନ କରିଥିଲେ ।

ତା'ର ସ୍ୱଳ୍ପ ସମୟର ଉତ୍‌ଥାନ ଭିତରେ ଚମ୍ପତିମୁଣ୍ଡା ଜୀବନ ବିଦ୍ୟାଳୟ ଏକ ନୂଆ ଆଶା ଆଲୋକର ଦିଶା ଦେଖାଇ ସମସ୍ତଙ୍କର ସୁଅନୁକୂଳ ଦୃଷ୍ଟି ଆକର୍ଷଣ କରି

ଆସିବା ବେଳକୁ ସେତେବେଳର ଶିକ୍ଷା ନିର୍ଦ୍ଦେଶକ (D.P.I.)ଙ୍କ ସ୍ୱେଚ୍ଛାଚାରୀ ମାନସିକତା ଓ ଅହଂକାର ଜନିତ ନିର୍ଯ୍ୟାତନା ଓ ପରିଚାଳନାଗତ ଅଦୂରଦର୍ଶୀ ଝିମିଟି ଖେଳ ମନୋମାଳିନ୍ୟରୁ ଅକାଳରେ ବିଦ୍ୟାଳୟଟି ନାନା ଦୃଷ୍ଟିରୁ ଭୂଗ୍ଣ ହୋଇଗଲା । ୧୯୫୮ ମସିହା ଠାରୁ ଯେଉଁଠି ଅନୁଭୂତ ହେଲା ଯେ- ବିଦ୍ୟାଳୟଟି ଯେନତେନ ପ୍ରକାରେଣ ଚାଲିଛି । ମାତ୍ର ତହିଁର ଜୀବନ ଦୀପ ସେଠାରେ ଆଉ ନାହିଁ ।

ମାତ୍ର ଓଡ଼ିଶାର ଶିକ୍ଷାକ୍ଷେତ୍ରରେ ଜୀବନ ବିଦ୍ୟାଳୟ ମାଧ୍ୟମ ଦେଇ ଯେଉଁ ବାସ୍ତବାଭିମୁଖୀ ଜୀବନ-ଶିକ୍ଷାର ଦୀପାଲୋକ (ସ୍ୱଳ୍ପ ସମୟପାଇଁ ହେଉ ପଛେ) ଛାତ୍ର ଶିକ୍ଷକ ଓ ଅଭିଭାବକମାନଙ୍କ ହୃଦୟ ଭିତରେ ନୂତନ ଆଶା ଆଶ୍ୱାସନା ଓ ବିଶ୍ୱାସର ସଞ୍ଚାର କରି ପାରିଥିଲା, ତାହା ଦିନେ ନା ଦିନେ ସମସ୍ତଙ୍କ ମନରେ ପୁନର୍ବାର ପ୍ରେରଣା ଭରାଇ ସେ ପଥରେ ପାଦ ଥାପିବାକୁ ଉଦ୍ଦୀପିତ କରାଇବ, ସେ ବିଶ୍ୱାସ ଆମର ଦିନକୁ ଦିନ ଦୃଢ଼ିଭୂତ ହେଉଛି । ଜୀବନ ବିଦ୍ୟାଳୟ ମଣିଷ ଓ ମଣିଷର ଜୀବନକୁ ଆଗରେ ରଖି ଆସନ୍ତାକାଲିର ମଣିଷ ଗଢୁଥିଲା ଏବଂ ଇତିହାସର ପୁନରାବୃତ୍ତି ପାଇଁ ସାମାନ୍ୟ ବିଶ୍ରାମ ପରେ ପୁଣି ତା'ର କାର୍ଯ୍ୟ କରି ଚାଲିବ ।

## (ଗ) ଦିନକର ଦିନ-ଲିପି

ଏଇ ଚଳନ୍ତି ବର୍ଷ ଅର୍ଥାତ୍ ୨୦୦୯ ମସିହା ମାର୍ଚ୍ଚ ମାସ ପ୍ରାରମ୍ଭ- ସମ୍ଭବତଃ ଚାରି କିମ୍ବା ପାଞ୍ଚ ତାରିଖରେ ଅନୁଗୋଳସ୍ଥିତ ଶୈଳ ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠିତ ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ପାଇଁ ସପରିବାର ମୁଁ ଯାଇଥିଲି । ସେଠାରେ ମହାପ୍ରଭୁଙ୍କ ଦର୍ଶନ ପରେ ପ୍ରସାଦ ସେବା ସାରି ଘର ବାହୁଡ଼ାବେଳକୁ ହଠାତ୍ ମୋ ସାନଝିଅ, କ୍ୱୋଇଁ ଅଡ଼ି ବସିଲେ ଯେ ବାପା ! ତମେ ପରା କହୁଥିଲ ଏଇ ଅନୁଗୋଳ ପାଖ ଚମ୍ପତିମୁଣ୍ଡା ଜୀବନ ବିଦ୍ୟାଳୟ, ଯେଉଁଠି ତମେ ଚିତ୍ତଭାଇ (ପ୍ରଫେସର ଶ୍ରୀଯୁକ୍ତ ଚିତ୍ତରଂଜନ ଦାସ)ଙ୍କ ପାଖରେ ପିଲାଦିନେ ପାଠ ପଢୁଥିଲ, ସେଇ ଜଂଗଲ ସ୍କୁଲ ଆମେ ଆଜି ଦେଖିବୁ । ସେମାନଙ୍କ ସାଙ୍ଗକୁ ପୁଣି ତ ବଡ଼ ଝିଅକ୍ୱୋଇଁ ମଧ୍ୟ ପାଳି ଧରି ମୋତେ ଏକ ପ୍ରକାର ବାଧ୍ୟ କଲେ ସେଇ ଖରାରେ ଖରାରେ ଚମ୍ପତିମୁଣ୍ଡା ଯିବାକୁ ।

ମୁଁ ପ୍ରଥମେ ପ୍ରଥମେ ତାଙ୍କୁ ସବୁ ବୁଝାଇବାକୁ ଚେଷ୍ଟା କରି କହିଲି ଯେ ସେଠାରେ ଆଉ ସେ ଘଞ୍ଚ ଜଂଗଲର ଚିହ୍ନବର୍ଣ୍ଣ ନାହିଁ କି ଝରଣାର ସୁଲଳିତ ନିଭୃତ କୁଳୁ କୁଳୁ ଧ୍ୱନି ଆଉ ଶୁଭୁନାହିଁ । ଆମ ସମୟର ସେ ଜୀବନ ବିଦ୍ୟାଳୟ ବି ନାହିଁ । ବିଦ୍ୟାଳୟଟିଏ ଅବଶ୍ୟ ଯଥାରୀତି ସେଠି ଦୁଃଖେ ସୁଖେ ଚାଲିଛି- ମାତ୍ର "ସେ ଜୀବନ", ଯାହା ଆମକୁ ସବୁ ବାସ୍ତବ ଶିକ୍ଷା ପ୍ରଦାନ କରି ଜୀବନର ମହନୀୟ ସ୍ୱପ୍ନ ଦେଖିବାକୁ ଖୋରାକ

ଯୋଗାଉଥିଲା, ତାହା ଆଉ ସେଠି ନାହିଁ । କିନ୍ତୁ ପିଲାମାନେ ସମସ୍ତେ ନ ଛୋଡ଼ବନ୍ଧା । ତେଣୁ ବାଧ୍ୟହୋଇ ପିଲାଙ୍କ ଆଗ୍ରହ ଦେଖି ଡ୍ରାଇଭରକୁ କହିଲି "ଚ଼ାଲ୍ ଭାଇ! ସମ୍ବଲପୁର ରାସ୍ତାରେ । ଅନୁଗୋଳରୁ ସିଧା ସିଧା ବଡ଼କେରା ଛକ । ଗାଡ଼ି ଚ଼ାଲିଲା ତା' ବାଟରେ । କିଛି ସମୟ ପରେ ବଡ଼କେରା ଛକରୁ ପୁଣି ଗାଡ଼ି ଗଡ଼ିଲା ଚ଼ମ୍ପତିମୁଣ୍ଡା ଅଭିମୁଖେ । ମୁଁ ନିରବରେ ବାଟ ଯାକ କେତେ ପରିବର୍ତ୍ତନର ଦୃଶ୍ୟ ଦେଖି ଦେଖି ଯାଉଥାଏ । ଲୋକମାନେ ପରିବର୍ତ୍ତନ । ରାସ୍ତାଘାଟ ପରିବର୍ତ୍ତନ । ସେ ସବୁର ଜୀବନାଭିମୁଖୀ ପରିବର୍ତ୍ତନ, କେତେ କେତେ ତିକ୍ତ ମଧୁର ଅନୁଭୂତି । କିଛିବାଟ ଗଲା ପରେ କହିଲି "ପିଲାଏ ! ରୁଗୁଡ଼ିପଡ଼ା ମାତିଳିଆ ନଇରେ ପାଣିଥିଲେ, ଗାଡ଼ି ସେଇଠି ରହିବ । ଆଉ... ଆମେ ଚ଼ାଲି ଚ଼ାଲି ଅଧା ମାଇଲିଏ ବାଟ ଯିବା । ମାତ୍ର ସୌଭାଗ୍ୟବଶତଃ ଗାଁ ମୁଣ୍ଡରୁ ଗାଡ଼ି ନଇ ପାଖକୁ ବୁଲିଗଲା ବେଳକୁ ବେଶ୍ ସୁନ୍ଦର ପୋଲଟିଏ ନଇ ପାର ପାଇଁ ହୋଇଯାଇଛି । ନଇ ଶୁଖିଲା, ଠୋ, ଠୋ । ପ୍ରଧାନମଂତ୍ରୀ ଗ୍ରାମ୍ୟସଡ଼କ ଯୋଜନାରେ ରାସ୍ତାକାମ ଜୋର୍ ସୋର୍ ଆଗେଇ ଚ଼ାଲିଛି । ଗାଡ଼ି ସିଧାଯାଇ ଜୀବନ ବିଦ୍ୟାଳୟକୁ ଯିବା ସଂଯୋଜକ ରାସ୍ତା ମୁଣ୍ଡରେ ପହଞ୍ଚିଗଲା । କହିଲି "ଏଇଠୁଁ ଆମସ୍କୁଲର ଆରମ୍ଭ ହୋଇଗଲା ।" ମାତ୍ର ପିଲାଏ ଆଶ୍ଚର୍ଯ୍ୟ ହୋଇ ଚ଼ିଲେଇ ଉଠିଲେ "ବାପା ! ଜଂଗଲ କାହିଁ ?" ମୁଁ ସମ୍ପୂର୍ଣ୍ଣ ନିରବ । ମୋ' ମନ ମୋତେ କାହିଁ କେଉଁ ଅତୀତକୁ ଉଡ଼େଇ ଦେଇଛି ।

ଯେଉଁଠି ଦିନେ ଏଇ ନାଲି ରୁଗୁଡ଼ିଆ ରାସ୍ତାର ଦୁଇ କଡ଼ରେ ଘଞ୍ଚ ଜଂଗଲର ଶସ୍ତ ସବୁଜ ଆମନ୍ତ୍ରଣ ମନକୁ ଅହେତୁକ ଆନନ୍ଦରେ ଓ ଉତ୍କଣ୍ଠାରେ ବୁଡ଼ାଇ ଦେଉଥିଲା - ବଣ୍ୟ କୁକ୍କୁଟୀ ଓ ଗଞ୍ଜାମାନଙ୍କର କକ୍କ କକ୍କ ଶବ୍ଦ ସହ ଅନ୍ୟାନ୍ୟ ବହୁ ବଣ୍ୟ ଛୋଟ ବଡ଼ ପକ୍ଷୀ ମାନଙ୍କର ମନୋହାରି କୂଜନ ସହ କୁରେଇ ଫୁଲ ବନଧାତୁକି ଫୁଲ, ଗଂଗଶିଉଳି ଫୁଲ, ବଣମଲ୍ଲିର ବାସ୍ନା, ଅକବି ଲୋକଟିକୁ କବିଟିଏରେ ପରିବର୍ତ୍ତନ କରି ଆଣୁଥିଲା- ସେ ସବୁ ଆଜି ନାହିଁ, ଏଇ ଅନତି ଦୂରରେ ବହି ଯାଉଥିବା ବଣ୍ୟ ନିର୍ଝରଟିର ବିମୁଗ୍ଧ ଗୀତ କି କାହିଁ କେଉଁଆଡ଼େ ହଜିଯାଇଛ ।

ତା' ବଦଳରେ ସମ୍ଭବତଃ ସ୍କୁଲ ତରଫରୁ ପରେ ଏବେକୁ କେତେକ ଆକାଶିଆ ଗଛ ଲଗାଯାଇଛି । ଯାହା ଡ଼େଙ୍ଗା ଡ଼େଙ୍ଗା ହୋଇ ବଢ଼ିଯାଇଛି । ଆଜି ନିରବ ନିଶ୍ଚଳ ଏଇ ବନର ପଦାଭୂଇଁ । ଏକୁଟିଆ କପୋତୀଟିଏ ବୋଧହୁଏ ମୋତେ ଲକ୍ଷ୍ୟକରି ଯେମିତି ବାହୁନି, ବାହୁନି କାନ୍ଦି କାନ୍ଦି ନିରନ୍ତର କହିଚ଼ାଲିଛି "କୁଆଡ଼େ ଅଇଲୁରେ ପୁତ...? କାହିଁକିରେ ପୁତ...?" ମୁଁ ନିରବରେ ଆଗକୁ ଆଗକୁ ଚ଼ାଲିଛି । ଗାଡ଼ି ମୋ ପଚେ ପଛେ ଚ଼ାଲିଛି । ଅନ୍ତର୍ଯ୍ୟାମୀ ଭାଇ ସେତୁ ପାଖରେ ପହଞ୍ଚି ଦେଖିଲି - ତାହା

ଯେମିତି ଖୁବ୍ ବୁଢ଼ା ହୋଇ ଅଣ୍ଟା ଭାଂଗି ନଇଁ ପଡ଼ିଛି । ଝରଣା, ଯାହାକୁ ଆମେ "ତମସା" ବୋଲି ନାଆଁ ଦେଇଥିଲୁ ସିଏ ପୁରା ପୁରି କେଉଁ ଆଡ଼େ ସେଠି ହଜିଯାଇଛି । ସ୍କୁଲ ଭିତରକୁ ପସିଲାବେଳକୁ ତାହା ଜନମାନବ ଶୂନ୍ୟ ଏକ ପରିତ୍ୟକ୍ତ ମଶାଣି ପଦାପରି ଦୂରରୁ ଦେଖାଯାଉଛି ।

ଜୀବନ ବିଦ୍ୟାଳୟ, ଯେଉଁଠି ଦିନେ ଆଲୋକିତ ଜୀବନ ତା'ର ସବୁକିଛି ଜାଣିଯିବା ପ୍ରୟାସର ବାଲ୍ୟ ଚପଳତା ଭରା ମଧୁର ଜିଜ୍ଞାସାର କଲ୍ଲୋଳିତ ଶବ୍ଦରେ ଏଇ ନିଘଞ୍ଚ ବନ ଭୂଇଁକୁ ଉଚ୍ଚକିତ କରି ତୋଳିଥିଲା, ତାହାରି ପ୍ରବେଶ ପ୍ରସ୍ଥର ବାମ ପାର୍ଶ୍ୱସ୍ଥି (ଯେଉଁଠି ଆମ ତନ୍ତ ଘର, ଗ୍ରନ୍ଥାଗାର ଓ ରୋଷେଇ ଶାଳା ଥିଲା) ଖାଲି ଗୁଡ଼ାଏ ପୁରୁଣା ଭଗ୍ନାବଶେଷର ଇଟା ଖଣ୍ଡ, ଯେଉଁ ଗୁଡ଼ିକ ତତ୍କାଳୀନ ଛାତ୍ରମାନଙ୍କ ଦ୍ୱାରା ତିଆରି ହୋଇ, ପୋଡ଼ାହୋଇ ତାଙ୍କରି ମୁଣ୍ଡରେ ଭାଟିରୁ ଏଠିକୁ ବିଦ୍ୟାଳୟର ଘର ତିଆରି ହେବାପାଇଁ ବୁହାହୋଇ ଆସିଥିଲା, ସେ ସବୁର ଦୃଶ୍ୟ ମୋ' ଲାଗି ସେଦିନ ଥିଲା ଲୋତକାପ୍ଲୁତ ।

ବିଦ୍ୟାଳୟର ପ୍ରଥମ ୧୧ ବଖୁରିଆ ଝାଡି ମାଟି ଚାଳଘର କଥା ଭାବିଲା ବେଳକୁ ମୋ' ପେଟ ଭିତରୁ କୋହ ଉଠି ଆସିଥାଏ । ପିଲାମାନଙ୍କ ନାନା ଉତ୍କଣ୍ଠାପୂର୍ଣ୍ଣ ପ୍ରଶ୍ନରେ ଜର୍ଜରିତ ହୋଇ ମୋର ବାକ୍ସ୍ଫୁର୍ତ୍ତି ଯେମିତି କେଉଁଆଡ଼େ ଦିଗହଜା ହୋଇ ଗଲାପରି ମୋତେ ଲାଗୁଥାଏ । ଆମ ସାମ୍ନାର ବହୁ ଦୂରରେ ଧାଡ଼ିଏ ଦିଶୁଛି ଅଯତ୍ନ ପକ୍କାଘର । ମୁଁ ରହୁଥିବା ପାଞ୍ଚ ବଖୁରିଆ ଖପର ଛାତଘର (ଯାହାର ଭଗ୍ନମୁଖୀ ଅବସ୍ଥାର ଫଟୋଟିଏ ପରିଶିଷ୍ଟରେ ଦିଆଯାଇଛି, କନ୍ୟାଶ୍ରମ ଚିତ୍ତଭାଇଙ୍କ କ୍ୱାର୍ଟର ଅନ୍ୟ ଶିକ୍ଷକମାନଙ୍କ ବସାଘର ସବୁ କିଛି ଆଜି ନିଶ୍ଚିହ୍ନ ।

ଖାଲି ଟାଙ୍ଗର ଭୂଇଁକୁ ଅଂଗୁଳି ନିର୍ଦ୍ଦେଶ କରି ପିଲାଙ୍କୁ ମୁଁ ଆର୍ଦ୍ର କଂଠରେ କହୁଥାଏ "ହେଇ ! ଏଇଠି ପ୍ରଥମେ ୧୧ ବଖୁରିଆ ଏଲ୍(L) ଟାଇପ୍‌ର ଝାଟିମାଟି ଚାଳ ଘରଥିଲା । ଆମେ ସବୁ ପିଲାମାନେ କେତେ ହସ ଖୁସିରେ ତାରି ବାରନ୍ଦାରେ ଧାଡ଼ିହୋଇ ବସି ସକାଳରେ ଜଳଖିଆ (କେଉଁଦିନ ଚୁଡ଼ା ଗୁଡ଼, କେବେ ଖେଚୁଡ଼ି, ଆଉ କେବେ ମୁଡ଼ି ଚିନା ବାଦାମ, ଗହମ ଭଂଗା ହୋଇ ତହିଁରେ ଖିରୀ ଖରାଦିନେ ବେଳେ ବେଳେ ବାସି ପଖାଳ ଲଂକାଲୁଣ ଆମ୍ବୁଲ ଆଉ କେବେ ବା ମାଣ୍ଡିଆ ଜାଉ ସହ ମିଲ୍କ ପାଉଡ଼ରରେ ତିଆରି ବସା ଦହି) ଖାଉଥିଲୁ । ଦ୍ୱିପ୍ରହରର ଭୋଜନ ଓ ରାତ୍ରିଭୋଜନ ଠିକ୍ ସୂର୍ଯ୍ୟାସ୍ତ ପରେ ସନ୍ଧ୍ୟାବେଳେ ଲଂଠନ ଜାଳି ଖାଉଥିଲୁ । ଏଇଠି ଆମର ରୋଷେଇ ଘରଥିଲା । ଇଆରି ସାମ୍ନାକୁ ଭଣ୍ଡାର ଘର ଯେଉଁଠି ସପ୍ତାହକ ଲାଗି ଅନୁଗୋଳ

ହାଟରୁ ରସଦସବୁ ଆସି ମହଜୁଦ୍ ହୋଇ ରହୁଥିଲା । ଏଇ ଜାଗାରେ ଆମର ଗୋଶାଳା ଥିଲା । ଆମ ଜୀବନ ବିଦ୍ୟାଳୟର ଏଇଠି ହଳେ ବାଛୁରୀ ସହ ଦୁହାଁଳିଆ ଗାଈ, ହଳେ ଖୁବ୍ ସୁସ୍ଥ ସବଳ ବଳଦ, ଦୁଇଟା ପଣ୍ଡା ମଇଁଷି ଓ ଚାଷ ଲାଗି ନାନା ଉପକରଣ ମାନ ସେଇଠି ସବୁ ରହୁଥିଲା । ଦୁଇ ଦୁଇଟା କୂଅ ଥିଲା । ସେଇ କୂଅ ମୂଳେ ଆମେ ସବୁ ଗାଧୁଆ, ପାଖୁଆ ଖରାଦିନ ଯାକ କରୁଥିଲୁ । ବର୍ଷା ଚାରିମାସ ତ ଆମର "ତମସା" ତଟିନୀ ଆମର ସବୁ କାମ ପାଇଁ ପାଣି ଯୋଗାଇ ଚାଲିଥିଲା । ଜଂଗଲ ପଦା ହୋଇଗଲା ପାହାଡ ନଣ୍ଡା ପ୍ରାୟେ ଠିଆ ହୋଇ ରହିଛି । ତାଙ୍କରି ମାନଙ୍କ ଆଖି ଆଗରେ "ତମସା"ର ତଣ୍ଟି ଶୁଖିଗଲା ଅନୁଷ୍ଠାନ ବି ଉଜୁଡ଼ିଗଲା । ଏ ସବୁ କଥା ମୋଠାରୁ ଶୁଣି ପିଲାମାନଙ୍କର ମନ ମରିଗଲା ପରି ଦିଶିଲା ।

ତେଣୁ ସେ ସବୁ କଥା ବଂଦ କରି ଆମେ ପ୍ରାୟ୍ ୩/୪ ଶହ ଗଜ ପଡ଼ିଆ ଚାଲି ଚାଲି ପାର ହୋଇ ଦୂରରେ ଦିଶୁଥିବା ସେଇ ଶ୍ରୀହୀନ କୋଠାଘର ଆଡ଼େଗଲୁ ଦେଖିଲୁ ସବୁ ଘର ଜନମାନବ ଶୂନ୍ୟ । ବୋଧହୁଏ ସେଦିନଟି କୌଣସି ଛୁଟୀଦିନ ଥିଲା । ସେଇ ଧାଡ଼ିଏ ପକ୍କାଘରର ଗୋଟିଏ ମୁଣ୍ଡରୁ ଅନ୍ୟ ଶେଷ ମୁଣ୍ଡକୁ ଯାଇ ଆମେ ଦେଖିଲୁ ଯେ ଦୁଇ ଜଣ କିଏ ନିଘୋଡ଼ ନିଦରେ ଶୋଇଛନ୍ତି । ବାପୁ ସେମାନଙ୍କୁ ଡ଼ାକି ଉଠାଇଲା । ଜଣେ ସେ ଦୁଇଜଣଙ୍କ ଭିତରୁ ଉଠି ଆସି ବାପୁର ପରିଚୟ୍ ମାଗିଲେ । ବାପୁ କ'ଣ କହିଲା ବେଳକୁ ମୁଁ ଯାଇ ତାଙ୍କ ପାଖରେ ପହଞ୍ଚି ଗଲି । ସେବାବୁ ମୋତେ ଚିହ୍ନି ପାରି ନମସ୍କାର କଲେ । ସେ ହେଉଛନ୍ତି ତ୍ରିପାଠୀ ବାବୁ । ବିଦ୍ୟାଳୟର ପ୍ରଧାନ ଶିକ୍ଷକ । ଆମକୁ ଭାରି ଶୋଷ ହେଉଥିଲା । ଖୁବ୍ ଆଗ୍ରହ ସହ ସେ ବାବୁ ମୋତେ ଓ ମୋ ପିଲାମାନଙ୍କୁ ମାଠିଆରୁ ଥଣ୍ଡା ପାଣି ପିଇବାକୁ ଦେଲେ । ଖୁବ୍ ଖୁସିଟାଏ ହୋଇ କହିଲେ "ସାର୍ ଏ ପାଣି ଏଠିକା ଗଭୀର ନଳକୂପ ପାଣି ।" ଭାବିଲି, ସେ ଦିନର ସ୍ୱଚ୍ଛ ଝରଣା ପାଣିଠାରୁ ମୋ' ଲାଗି ଏହା ପବିତ୍ର ଓ ସ୍ୱାଦିଷ୍ଟ ନୁହେଁ । ପଚାରିଲି ଆମ ସମୟର କୂଅ ଦୁଇଟି ? ଉତ୍ତରରେ ସେ କହିଲେ, ତାହା ଏବେ ପରିତ୍ୟକ୍ତ । ଏ ନଳକୂପର ପାଣି ବି ଆସ୍ତେ ଆସ୍ତେ କମି କମି ଆସିଲାଣି ସାର୍ !

ପାଣି ପିଇ ଆମେ ସେଇଠୁଁ ବିଦାୟ୍ ନେଇ ବାହାରିଲା ବେଳକୁ ସେବାବୁ ପୁଣି କହିଲେ "ଜାଣିଲେଣି ସାର୍ ! ହେ... ସେଠି (ଏକ ଦୂର ସ୍ଥାନକୁ ନିର୍ଦ୍ଦେଶ କରି) ଚିତ୍ତଭାଇଙ୍କ କ୍ୱାର୍ଟର୍ସ ଥିବା ପଛପଟ ଜମିରୁ କିଛି ଜମି ନବ ଜୀବନ ମୁଣ୍ଡଳ ନା ସେମିତି କିଛି ଗାନ୍ଧିୟାନ୍ ଅନୁଷ୍ଠାନକୁ ଦିଆ ସରିଲାଣି । ସେଇଠି କିଛି ହସ୍ତଶିଳ୍ପ ଅନୁଷ୍ଠାନ ହେବ ପ୍ରାୟ୍ । ଚାଲ ଚାଲ ହୋଇ ଗାଡ଼ି ପାଖକୁ ଗଲାବେଳେ ଭାବୁଥିଲି । କେତେ ବଡ଼ ଆଗ୍ରହ ଓ ସଦିଚ୍ଛା ନେଇ ଏଠି ବଣ୍ୟ ପ୍ରକୃତିର ସୁନ୍ଦର ପରିବେଶ ଭିତରେ

ମଣିଷ ଗଢ଼ା ଅନୁଷ୍ଠାନଟିଏ ଭରପୁର ଆଶା ଓ ଆକାଂକ୍ଷା ସହ ଆରମ୍ଭ ହୋଇ ଚ଼ାରିବର୍ଷ କାଳ ଏକ ନୂଆ ଦିଶାର ଜୀବନା ଲୋକ ନେଇ ବେଶ୍ ଚ଼ାଲିଥିଲା । ଓଡ଼ିଶାର ନାନା ଅନଗ୍ରସର ଜିଲ୍ଲା ଓ ପରିବେଶରୁ ଦରିଦ୍ର ଅଂଧାରୀ ମୂଲକ ଆଦିବାସୀ, ହରିଜନ ଏବଂ ଅସ୍ୱଛଳ ମେଧାବୀ ଉଚ୍ଚ ବର୍ଗ ପିଲାମାନଙ୍କର ଜୀବନ, ଏଠି ଆଲୋକମୟ ଆନନ୍ଦର ସଂଧାନ ପାଇଁ ଆଶାୟି ହୋଇ ସେମାନଙ୍କ ଘରଦ୍ୱାର ବାପା ମାଆ ଛାଡ଼ି କେତେ ଖୁସୀରେ ବିଦ୍ୟାଧ୍ୟୟନ ସହ ନିଜ ଗୋଡ଼ରେ ନିଜେ ଠିଆ ହୋଇ କାଟ ଚ଼ାଲିବାର ରାହା ଟିକେ ପାଉଥିଲେ ! ଆଜି ସେ ସବୁ ମୋ' ପାଇଁ ଓ ସର୍ବୋପରି ମୋ' ରାଇଜ ଓଡ଼ିଶା ପାଇଁ ନିହାତି ଦୂରନ୍ତ ସ୍ୱପ୍ନଟିଏ ହୋଇଗଲା । ଯଦି ଗାନ୍ଧିଜୀଙ୍କ ସୁନା ପୁଅଟି ପରି ଦିଶୁଥିବା ନେହେରୁଙ୍କର ତଥାକଥିତ ଜାତୀୟ ସରକାର ତଥା ରାଜ୍ୟ ସରକାର ଏ ଅନୁଷ୍ଠାନର ମହତ୍ୱ ଉପଲବ୍ଧି କରି ତାକୁ ଆନ୍ତରିକ ସାହାଯ୍ୟ ସହଯୋଗ କରି ବଢ଼ାଇ ଚ଼ାଲି ଥାଆନ୍ତେ ଓ ପରି ଚ଼ାଳନାଗତ ଅହଂ ଶୂନ୍ୟ ଉଦାର ମନର ଅଭାବ ହୋଇନଥାନ୍ତା ତେବେ ଏ ଅନୁଷ୍ଠାନ ଆଜି ଦେଶପାଇଁ ଏକ ବରଦାନ ସଦୃଶ୍ୟ ଠିଆହୋଇ ହସୁଥାଆନ୍ତ ଓ ସମସ୍ତଙ୍କ ମୁଖରେ ହସ ଫୁଟାଇ ପାରୁଥାଆନ୍ତା ।

ପରିଚ଼ାଳନା ମଣ୍ଡଳୀ ଆପଣା ମାନ ସମ୍ମାନ ଓ ଅହଂକାରକୁ ଆଗ କରି ଦେଖିଲେ । ଦୁର୍ଭାଗ୍ୟକୁ ବିଦ୍ୟାଳୟର କେତେକ ତତ୍କାଳୀନ ଶିକ୍ଷକ ଅତ୍ୟନ୍ତ ଲୋଭାଶକ୍ତ ଓ ଉଚ୍ଚାକାଂକ୍ଷୀ ହୋଇ ପରିଚ଼ାଳନା ମଣ୍ଡଳୀକୁ ନାନା କୁମଂତ୍ରଣା ଦେଇ ସେମାନଙ୍କୁ ଦିଗ୍‌ଭ୍ରାନ୍ତ କରି ବସିଲେ, କେବଳ ନିଜର ସାମାନ୍ୟ ସ୍ୱାର୍ଥପାଇଁ, ତା' ସାଙ୍ଗକୁ ତତ୍କାଳୀନ D.P.I. ମୌଳିକଶିକ୍ଷା ମାରଣ ନୀତି ନିୟମ ଜାରିକରି ଅନୁଷ୍ଠାନର କଳିଟିକୁ ମୋଡ଼ି ମାଡ଼ି ତଳକୁ କରିଦେଲେ । ଯାହା ଫଳରେ ଆଜି ଏ ଅନୁଷ୍ଠାନ ଏପରି ଦୁର୍ଭିକ୍ଷ ପ୍ରପିଡ଼ୀତ ବର୍ଷାବିହୀନ ଅପନ୍ତରା ପଡ଼ିଆ ଜମି ହୋଇ ପଡ଼ି ରହି ଅତୀତକୁ ସ୍ମରଣ କରି ଲୁହ ଗଡ଼ଉଛି । ଅର୍ଦ୍ଧ ଶତାବ୍ଦୀ ତଳେ ଏଇ ମାଟିକୁ ନିଜ ହାତରେ ସବୁଜ ଶସ୍ୟରେ ଭରପୁର କରି ଜଣେ ଜିଜ୍ଞାସୁ ଯୁବ ଶିକ୍ଷକ ଚ଼ିଉଭାଇଙ୍କ ଦିଗ ଦର୍ଶନ ସହ ଛାତ୍ର ଛାତ୍ରୀମାନଙ୍କ ସବୁକିଛି ଜାଣିବାର ଶୂନ୍ୟ ଝୁଲି ଗୁଡ଼ିକୁ ପରିପୂର୍ଣ୍ଣ କରିବାର ଆଗ୍ରହ ନେଇ ପ୍ରାଣପଣେ ଚ଼େଷ୍ଟା କରି ଚ଼ାଲିଥିଲେ । ବିଦ୍ୟାର୍ଥୀମାନେ ମଧ୍ୟ ବିଦ୍ୟାର୍ଜନର ମହନୀୟ ଦୀକ୍ଷାନେଇ ମୁକ୍ତ ମନ ଓ ପ୍ରାଣରେ ସକଳ ପ୍ରକାର କଷ୍ଟ ସ୍ୱୀକାର ପୂର୍ବକ ମଣିଷ ପରି ମଣିଷଟିଏ ହୋଇ ନିଜେ ନିଜକୁ ଗଢ଼ି ତୋଳିବା ସହ ଦେଶର ଟେକ ରଖି ସ୍ୱକୀୟ ସାମାଜିକ ତଥା ସାଂସ୍କୃତିକ ମହତ୍ୱର ଚ଼ିରନ୍ତନ ଜୀବନ-ରତ୍ନ ସର୍ବ ସମକ୍ଷରେ ତୋଳି ଧରିବାର କାର୍ଯ୍ୟରେ ନିଜକୁ ଚ଼ଳ ଚ଼ଞ୍ଚଳ କରି ବିଦ୍ୟାଧ୍ୟୟନରେ ଲାଗି ପଡ଼ିଥିଲେ । ଜୀବନ ବିଦ୍ୟାଳୟ ଜୀବନର ଗାଥା ଗାଇ

ସମସ୍ତଙ୍କୁ ମଜ୍ଜାଇ ହଜାଇ ରଖି ଏଠି ନବ ଉତ୍କଳର ନିର୍ମାଣର ଜୟଗାନ କରୁଥିଲା । ମାତ୍ର ସେ ସବୁ ଆଜି ଏଠି ନୀରବ ଓ ବର୍ଜିତ ।

ସେଦିନର ଜୀବନ ବିଦ୍ୟାଳୟ ଓ ତାହାର ପାଠ୍ୟ ଖସଡ଼ା ଏବଂ ଔଦ୍ୟୋଗୀକ କାର୍ଯ୍ୟକ୍ରମ ଯଦି ଆଜିଯାଏ ବଂଚ଼ି ରହି କାର୍ଯ୍ୟକ୍ଷମ ହୋଇ ଚ଼ାଲିଥାଆନ୍ତା ତେବେ ଆଜି ମଧ୍ୟ ଏଠି ବିଦ୍ୟାର୍ଥି ଓ ଶିକ୍ଷକ ଶିକ୍ଷୟିତ୍ରୀ ମାନଙ୍କର ଧ୍ୟାନମଗ୍ନ ଚ଼େତନା ଯୁକ୍ତ ଜୀବନାରୋହଣର ମର୍ମ୍ମସ୍ପର୍ଶି ଦୃଶ୍ୟ ସାରା ଜଗତର ଜନ ମନକୁ କିଣି ନେଇ ଯାଉଥାଆନ୍ତା । ଦେଶ ଗଠନର ମୂଳ ପିଣ୍ଡ ଛାତ୍ର ଜୀବନ ଏଠି ଆଶା ଆକାଂକ୍ଷାର ଶସ୍ୟଭରା ହୋଇ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରି ଠିଆ ହୋଇଥାନ୍ତା । ବିଗତ ଅର୍ଦ୍ଧଶତାବ୍ଦୀ ଭିତରେ ରାଜ୍ୟର କେତେ କେତେ ଅଂଧାରୀ ମୂଲକର ପିଲାଏ ଏଠିକୁ ପାଠ ପଢ଼ିବାକୁ ଆସି ମଣିଷ ହୋଇ ପୁଣି ସେ ସବୁ ସ୍ଥାନକୁ ଫେରିଯାଇ କେତେ ନୂଆ ଜୀବନର ଦିପାବଳିରେ ବଣ୍ୟ ଜୀବନକୁ ଆଲୋକମୟ  କରୁ ନ ଥାନ୍ତା ସତେ !! ଜୀବନର କେତେ ଉଚ୍ଚତର  ସ୍ୱପ୍ନରେ ସେମାନେ କାର୍ଯ୍ୟ କରି ଯାଉ ନ ଥାନ୍ତେ !

ସେଇ ସ୍ୱପ୍ନର  ଅବର୍ତ୍ତମାନରେ ଆଜି ମୋ' ପରି ଜଣେ ଏଠିକାର ପୁରାତନ ଛାତ୍ର କେବଳ ଅତୀତକୁ ରୋମନ୍ଥନ କରିବା ଛଡ଼ା ତା'ର ଏ ଉତ୍ତୀର୍ଣ୍ଣ ବୟସରେ ଅନୁତପ୍ତ ହୃଦୟ ନେଇ ଏଠୁଁ ଫେରିବା ବ୍ୟତୀତ ଆଉ କୌଣସି ରାହା ଖୋଜି ପାଇ ପାରୁନାହିଁ । ମୋ' ପରି ଏଇ ମାଟିରୁ ଉତୁରୀ ଥିବା ବହୁ ଛାତ୍ର ଛାତ୍ରୀ ଓ ଅନେକ ଅନେକ ଶୁଭେଚ୍ଛୁ ମାନଙ୍କ ମନରେ ତଥାପି ସେହି ଜୀବନ ବିଦ୍ୟାଳୟର ସ୍ୱପ୍ନ ବଞ୍ଚି ରହିଛି । ତାକୁ ଦଳି ମକ୍‌ଚି ଧର୍ଷଣ କରି ବହୁ ମୋଟା ମୋଟା ଚର୍ବିଳ ଶୂକର ମାନେ କୋଉ କାଳୁଁ ମାଟିରେ ମିଶି ଗଲେଣି । ମାତ୍ର ଏ ବିଦ୍ୟାଳୟର ସ୍ୱପ୍ନ ଏବେ ମଧ୍ୟ ବହୁ ଲୋକଙ୍କ ମନରେ ବାରମ୍ବାର ଉଙ୍କି ମାରୁଛି । ସୁସ୍ୱପ୍ନ ସର୍ବଦା ବଞ୍ଚି ରହିବ । ପୁଣି ନିଷ୍ଚୟ ସକ୍ରିୟ ହୋଇ ଅତୀତର ପୁନରାବୃତ୍ତି ହେଲାପରି ହେବ, ମୋ' ରାଜ୍ୟର ଭାଗ୍ୟାକାଶରେ ଜୀବନ ଶିକ୍ଷାର ପୁଣି ଏକ ନୂତନ ସୂର୍ଯ୍ୟର ଉଦୟ ହେବ । ସେ ଆଶା ମୋର ଅଛି ।

**ଚୈ଼ତନ୍ୟ ପ୍ରସାଦ ସେଠୀ**

•

# ଚିଠିଟିଏ

ଶ୍ରୀମତୀ କୃଷ୍ଣା ମହାନ୍ତି (ତିନୁଅପା)

ପରମ ପୂଜନୀୟ ଚିତ୍ତ ଭାଇ,

ଆପଣ ଓ ଭାଉଜବୋଉ ମୋର ପ୍ରଣାମ ଜାଣିବେ। ଆଜି ମୋତେ ଅଣସ୍ତରୀ ପୂରିଗଲା। ମୁଁ ସତୁରୀ ବର୍ଷରେ ପାଦ ଦେଲି। କିନ୍ତୁ ମତେ ଯେମିତି ଲାଗୁଛି ମୁଁ ସତର ବରଷରେ ପାଦ ଦେଇଛି ଓ ଚଂପତି ମୁଣ୍ଡାରେ ଅଛି। କାହିଁକିନା ମୁଁ ସେମିତି ଏକ ଜାଗାରୁ ଆପଣଙ୍କୁ ଏ ଚିଠି ଲେଖୁଛି। ଏତେ ବର୍ଷ ପରେ ମୁଁ ଆପଣଙ୍କୁ ଚିଠି ଲେଖୁଛି - ନିପଟ ଅଳସେଇଟାଏ - ମୁଁ ବି ନିଜେ ଆଶ୍ଚର୍ଯ୍ୟ ହେଉଛି। କିନ୍ତୁ କ'ଣ କରିବି ଏଠି ଆସି ପହଞ୍ଚିଲା ବେଳୁ ମୁଁ ଆମ ଜୀବନ ବିଦ୍ୟାଳୟର ସେଇ ଦିନଗୁଡ଼ିକର କଥା ଭାବୁଛି ଓ ପ୍ରତିପଦରେ ଆପଣଙ୍କ ଉପସ୍ଥିତି ଅନୁଭବ କରୁଛି। ଆପଣଙ୍କର ସବୁ କଥା ମନେ ପଡ଼ିଯାଉଛି। ଏ ଜାଗାଟି ହେଉଛି କର୍ଣ୍ଣାଟକର ଉଡୁପି ଜିଲ୍ଲାରେ। ଉଡୁପି ସହରରୁ ପ୍ରାୟ ୪୦ କି.ମି. ଦୂରରେ। ଗାଡ଼ି ମଟର ରାସ୍ତାରୁ ୫/୬ କି.ମି. ଦୂର ଏକ ପାହାଡ଼ିଆ ଜଙ୍ଗଲ ଗାଁ- 'ନକ୍ରେ', କାରକଳା ତାଲୁକାରେ। ଜଙ୍ଗଲର ଗଛ ଓ ଉଦ୍ଭିଦ ଯଦିଓ ଚଂପତିମୁଣ୍ଡାଠାରୁ ଭିନ୍ନ - ତେବେ ସର୍ବତୋ ଭାବରେ ଦେଖିଲେ ଏତେ ସାମ୍ୟ ରହିଛି ଯେ ବାରମ୍ବାର ମୁଁ ମୋ ଝିଅ ଝୁନୁକୁ ଆପଣଙ୍କ କଥା ନକହି ରହି ପାରୁନାହିଁ। ମୋର ଏଠିକି ଆସିବାର କାରଣ ହେଉଛି ଝୁନୁକୁ ସଙ୍ଗ ଦେବା। ସେ ମୋତେ ୩ ମାସ ଆଗରୁ ତା' ସାଙ୍ଗରେ ଆସି ଏଠାରେ ରହିବାକୁ ଆମନ୍ତ୍ରଣ କରିଥିଲା। ଦେଶ ଓ ବିଦେଶର ଭିନ୍ନ ଭିନ୍ନ ଜାଗାରେ ଭିନ୍ନ ଭିନ୍ନ ପେଷାରେ କାମ କରୁଥିବା କେତେ ଜଣ ସମଭାବାପନ୍ନ ଏକାଠି ହୋଇ ଏଇ ଗାଁରେ ଚାଷ ଜମି ନେଇ ଜୈବିକ ଚାଷର ପ୍ରୟୋଗ ଆରମ୍ଭ କରିଛନ୍ତି - କିଛିଟା 'କିବୁଥ୍', କିଛିଟା ଗାନ୍ଧିଜୀଙ୍କର ଟ୍ରଷ୍ଟିଶିପ୍ ଚିନ୍ତାଧାରାରେ; ନାଁ ଦେଇଛନ୍ତି 'ସାଂଗତ୍ୟ'। ଝୁନୁ ଓ ତା' ସ୍ୱାମୀ ଡ଼େଭିଡ୍ ମଧ୍ୟ ଏମାନଙ୍କ ସାଙ୍ଗରେ ମିଶିଛନ୍ତି। ଉଡୁପି ଇଂଜିନିୟରିଂ କଲେଜର ଜଣେ ଅଧ୍ୟାପକ ଜାଗାଟିକୁ ଚୟନ କରିଛନ୍ତି ଓ ଅନ୍ୟ ସମସ୍ତେ ଅର୍ଥ ଯୋଗାଇ ଦେଇଛନ୍ତି। ପ୍ରାଥମିକ କାମ ଭାବରେ ଜୈବିକ ଚାଷ ପାଇଁ କମ୍ପୋଷ୍ଟ ପ୍ରସ୍ତୁତି ଓ ଜମି ପ୍ରସ୍ତୁତ କରି କିଛି କିଛି ପରିବା ଚାଷ ଆରମ୍ଭ କରି ଦେଇଛନ୍ତି। ଏହି ଅଧ୍ୟାପକ ସପ୍ତାହରେ ୩ଦିନ କଲେଜରେ ପଢ଼ାନ୍ତି ଓ

ବାକି ୪ଦିନ ଏଠାକୁ ଆସନ୍ତି । ଅନ୍ୟମାନେ ପାଳି କରି ଆସି କିଛି ଦିନ ଲେଖାଏଁ ରହି କାମରେ ଯୋଗ ଦେଇଛନ୍ତି । ବେଳେବେଳେ କିଛି ଆଗ୍ରହୀ ଛାତ୍ର ମଧ୍ୟ ପହଞ୍ଚି ଯାଉଛନ୍ତି । ଝୁନୁ ଓ ଡ଼େଭିଡ୍ ତିନି ବର୍ଷ ପରେ ଆମେରିକା ଛାଡ଼ି ଭାରତକୁ ଚାଲି ଆସିବାର ନିଷ୍ପତ୍ତି ନେଇଛନ୍ତି । ଝୁନୁ ବର୍ତ୍ତମାନ ୧୫ଦିନ ରହି କାମ କରି ଫେରିଯିବ । ତା'ର କିଛି ଦିନ ପରେ ଡ଼େଭିଡ୍ ଆସି ତିନି ସପ୍ତାହ ରହିବେ ।

ପାହାଡ଼ ଜଙ୍ଗଲ ଘେରା ନକ୍‌ରେ ଗାଁର ଏଇ ଅଂଶଟି ଆଧୁନିକ ଜଗତଠାରୁ ଦୂରରେ । ଏଠିକି ଗାଡ଼ି ମଟରର ଶବ୍ଦ ମଧ୍ୟ ଶୁଭେ ନାହିଁ । ଗୋଟାଏ ପାଖରେ ୫ କି.ମି. ଚାଲିଲେ ବସ୍ ମିଳେ । ଆଉ ଗୋଟାଏ ପାଖରେ ପାହାଡ଼ ଚଢ଼ି, ଓହ୍ଲାଇ ୧ କି.ମି. ଚାଲିଲେ ମାଙ୍ଗାଲୋରକୁ ଯାଉଥିବା ରାସ୍ତା ମିଳେ । ଏଠି ଚାଷୀମାନେ ମୁଖ୍ୟତଃ ଅର୍ଥକାରୀ ଫସଲ ଭାବରେ ଗୁଆ, ନଡ଼ିଆ ଚାଷ କରିଥା'ନ୍ତି । ତା'ଛଡ଼ା ଧାନ, ମୁଗ, ବିରି, ମାଣ୍ଡିଆ, କଦଳୀ ଓ ପନିପରିବା ଚାଷ ବି ହୁଏ । 'ସାଂଗତ୍ୟ' ଗୋଷ୍ଠୀ ଯେଉଁ ଚାଷୀଠାରୁ ଜମି କିଣିଛନ୍ତି, ତା'ର ପୁରୁଣା ଦୁଇ ବଖରା ଟାଇଲ ଘର ଓ ଛୋଟ ଦେଶୀ ଗାଈଟିକୁ ମଧ୍ୟ କିଣି ନେଇଛନ୍ତି । ସାଢ଼େ ସାତ ଏକର ଜମିରୁ କିଛି ପାହାଡ଼ର ଗଡ଼ାଣିରେ (ଟିକିଏ ଉଚ୍ଚ ଜାଗା) ଓ କିଛି ତଳ ଆଡ଼କୁ ଅଛି । ତଳ ଜମି ପାଖ ଦେଇ କଳା ପଥରରେ ପୂର୍ଣ୍ଣ ଛୋଟ ପାହାଡ଼ି ନଈଟିଏ ବହି ଯାଉଛି ଠିକ୍ ଆମ ଚଂପତି ମୁଣ୍ଡାର ଝରଣା ଭଳି । ଏଇ ପରିବେଶ-ପ୍ରକୃତି-ଜଙ୍ଗଲ, ପାହାଡ଼, ଝରଣା ଓ ଗାଁର ସରଳ ଚାଷୀଙ୍କ ଜୀବନ ମୋତେ ୫୩ ବର୍ଷ ତଳକୁ ନେଇ ଯାଇଛି, ଯେତେବେଳେ ଆମେ ଆପଣଙ୍କ ସାଙ୍ଗରେ ଗଛକଟାଠାରୁ ଆରମ୍ଭ କରି, ଇଟା ତିଆରି, ଝାଟି ମାଟିରେ ଘର ତିଆରି, ଚାଷ ପାଇଁ ଜମି ପ୍ରସ୍ତୁତି ଆଦି କାମ ନିରଳସ ଭାବରେ କରି ଯାଉଥିଲୁ । ଜିନିଷ ସଂଗ୍ରହ ଓ ଲୋକଙ୍କ ସାହାଯ୍ୟ ପାଇଁ ପଡ଼ୋଶୀ ଗାଁକୁ ଯାଉଥିଲୁ । ସକାଳ ଓଳିର ଶାରୀରିକ ପରିଶ୍ରମ ପରେ ଉପରଓଳି ଆପଣଙ୍କ କ୍ଲାସ୍ ପାଇଁ ଆତୁର ହୋଇ ଅପେକ୍ଷା କରୁଥିଲୁ । କ୍ଲାସ୍ ବେଳେ ନିହାତି ଦରକାର ହେଲେ ବି ଉଠିବାକୁ ଇଚ୍ଛା ହେଉ ନଥିଲା । ସେଥିରେ କୌତୁକପୂର୍ଣ୍ଣ ହାସ୍ୟରସର ଆନନ୍ଦ ଭିତର ଦେଇ କେତେ ଜ୍ଞାନ ମିଳି ଯାଉଥିଲା । ମିନିଟକ ପାଇଁ ବି ଉଠିଗଲେ ମୂଲ୍ୟବାନ କିଛି ହରେଇବାର ଆଶଙ୍କା ହେଉଥିଲା । ପହିଲି କରି ଯେତେବେଳେ ଆମର ସାତ ବଖରା ଝାଟି ମାଟି ଘର ତିଆରି ସରିଲା ଓ ଆମେ ଝିଅମାନେ ଆସି ଗୋଟିଏ ବଖରା ପାଇଗଲୁ- କି ତୃପ୍ତି ! କି ଆନନ୍ଦ ! ସତେ ଅବା ମହଲଟାଏ ତିଆରି କରି ରହିଛୁ । ଶୀତ ସକାଳୁ ପ୍ରାର୍ଥନା ପରେ ପରେ ଝରଣାକୁ ଗାଧୋଇ ଯିବା, ଚୁଆ ଖୋଳି ପିଇବା ପାଣି ଛେଦେଇ ଆଣିବା; ଦିନେ ଦିନେ ପଥର ଉପରେ, ବାଲିରେ ବାଘର ପାଦ ଚିହ୍ନ ଦେଖିବାର ଶିହରଣ ଓ

ଉତ୍ତେଜନାର ଅନୁଭବ କ'ଣ କମ୍ କଥା ଥିଲା ! ରୋଷେଇ ଘର ଓ ଗୁହାଳ ତିଆରି - ବର୍ଷାଦିନେ ଶୁଖିଲା ଜାଳ ନ ଥିଲେ ଓଦା ଜାଳରେ ରୋଷେଇ କରି ଖାଇବା ଓ ଜୋରକୁ ଯାଇ ନ ପାରି ଓଳି ପାଣିରେ ବାସନ ଧୋଇବା ଓ ଆଉରି ଏମିତି କେତେ ଅନୁଭୂତି ଭୁଲିବାର ନୁହେଁ। ବର୍ଷାରେ ତିନ୍ତି ଜଙ୍ଗଲରେ ବୁଲି ବୁଲି ରବୀନ୍ଦ୍ର ସଂଗୀତ ଗାଇବାର ଆନନ୍ଦ କ'ଣ କମ୍ ଥିଲା ! - ଜଙ୍ଗଲରୁ ଜାଳ କୁଟା, ଶୁଖିଲା ପତ୍ର ସଂଗ୍ରହ କରିବା, ବଡ଼ ଜାଳ ପାଇଁ ଶଗଡ଼ ଗାଡ଼ି ନେଇ ପାହାଡ଼ ଉପର ଜଙ୍ଗଲକୁ ଯାଇ ସଂଧ୍ୟାରେ ଫେରିବା, ଜଙ୍ଗଲରେ ବଳଦ ଓ ମଇଁଷୀଙ୍କୁ ଚରାଇବାକୁ ନେଇ ମଇଁଷୀ ବାଟବଣା ହୋଇ ହଜିଗଲେ ବଣ ଭିତରେ ଖୋଜି ବୁଲିବା, ବାଘ, ଭାଲୁ, ହେଟାର ଭୟ, ସାପ, କୁଆସାପଙ୍କ ସାଙ୍ଗରେ ଭେଟାଭେଟି - ଏମିତି କେତେ ଆଡ୍‌ଭେଞ୍ଚର କଥା ସ୍ମୃତିପଟରେ ଗୋଟି ପରେ ଗୋଟି ଭାସି ଉଠୁଛି। ଏଇ ଜଙ୍ଗଲ, ପାହାଡ଼ି ନଈ ଓ ପରିବେଶର ସିନା ଏତେ ସାମଞ୍ଜସ୍ୟ - କିନ୍ତୁ ଗୋଟିଏ ବିଷୟରେ ଭିନ୍ନ ଯେ ଏ ଜଙ୍ଗଲରେ ଜନ୍ତୁ କହିଲେ କେବଳ ମାଙ୍କଡ଼ ଓ ଖୁବ୍ କମ୍ ସରିସୃପ ଅଛନ୍ତି। ତେବେ ବିଭିନ୍ନ ପ୍ରକାରର ପକ୍ଷୀରେ ପୂର୍ଣ୍ଣ - ବିଶେଷ କରି ପାଣି ପକ୍ଷୀ। ଦିନ ସାରା ତାଙ୍କ କାକଳି ବଡ଼ ଶ୍ରୁତି ମଧୁର। ମଝିରେ ମଝିରେ ଚାଷୀମାନେ ନଈରେ ଲଗାଇଥିବା ପମ୍ପର ଶବ୍ଦ ଏଇ ପରିବେଶରେ କାନକୁ ଅଡୁଆ ଶୁଣାଯାଏ। ସଂଧ୍ୟାବେଳେ ବଗ ଓ ଗେଣ୍ଡାଳିଆ ମାଳ ମାଳ ହେଇ ଉଡ଼ିଗଲା ବେଳେ ଆପଣଙ୍କ ସାଙ୍ଗରେ ଗାଉଥିବା 'ମେଘେର କୋଲେ କୋଲେ ଯାୟରେ ଚଲେ ବକେର ପାଁତି' ମନେ ପଡ଼ି ଯାଉଛି। ଚମ୍ପତି ମୁଣ୍ଡାରେ ଆପଣଙ୍କ ସାନ୍ନିଧ୍ୟରେ କଟିଥିବା କେତେ ମଧୁର ସ୍ମୃତି, କେତେ ଅପୂର୍ବ ଅନୁଭବ ରହିଛି। ମୁଁ ତ ଆପଣଙ୍କର ସବୁଠାରୁ ଅଳସେଇ ଛାତ୍ରୀ ଥିଲି (ଲେଖିବାରେ), ଆଜି ବି ସେଇ ରୋଗରେ ଭୋଗୁଛି- ନିଜର ଭାବନାଗୁଡ଼ାକୁ ସଜାଡ଼ି ଲେଖି ପାରୁ ନାହିଁ। ସେଇ ବୟସରେ ଜଣେ ବିଶ୍ୱମାନବର ସଂସ୍ପର୍ଶରେ ଆସିବାର, ଜ୍ଞାନ ଆହରଣ କରିବାର ସୁଯୋଗ ଓ ସୌଭାଗ୍ୟ ପାଇଥିଲି, ଯିଏ କି ସମଗ୍ର ବିଶ୍ୱର ମଣିଷମାନଙ୍କ ପାଇଁ ମୋ' ଦୃଷ୍ଟିକୁ ପ୍ରସାରିତ କରି ଦେଇଥିଲେ- ସେବେଠାରୁ ଆଜିଯାଏ ସେଇ ମନ ନେଇ ଦୁନିଆକୁ ଓ ମଣିଷଙ୍କୁ ନିରେଖି ଚାଲିଛି। କିଛି ଲେଖି ସିନା ପାରୁ ନାହିଁ - ଯାହା ପାଇଛି ଓ ପାଉଛି ସେ କ'ଣ କମ୍ କଥା ! ମୋର ଅଳସୁଆମି ଓ ଉଦାସୀନତା ପାଇଁ ଆପଣ ମୋତେ କେତେ ଥର ତାଗିଦ୍ କରିଛନ୍ତି। ଆପଣାର ଅପରିପକ୍ୱତା ଓ ଆଳସ୍ୟର ପରିଣାମକୁ ହୃଦୟଙ୍ଗମ କଲେ ମଧ୍ୟ ଜିଣି ପାରିଲି ନାହିଁ।

ଆପଣ ପାଖକୁ ୫ ଦିନ ତଳେ ଚିଠିଟା ଆରମ୍ଭ କରି ଆଉ ଲେଖିବାକୁ ବସି ପାରୁନଥିଲି। 'ସାଂଗତ୍ୟ'ରେ ଏ କେଇଦିନ ଭିତରେ ସଙ୍ଗରେ ପରିବର୍ତ୍ତନ

ହୋଇଚାଲିଛି । ମଝିରେ ଦୁଇଦିନ ପାଇଁ ଜଣେ କଂପ୍ୟୁଟର ଇଂଜିନିୟର ଉଡୁପିରୁ ଆସିଥିଲେ । ସେ ଜଣେ ଉତ୍ସାହୀ ସଦସ୍ୟ । ଝୁନୁ ହେରିକାଙ୍କ ଠାରୁ ପ୍ରାୟ ୧୦ ବର୍ଷ ସାନ । ଏବେ ଜଣେ ଗଣିତଶାସ୍ତ୍ରର ଗବେଷକ ଆମେରିକାରୁ ଆସିଛନ୍ତି । କେରଳର ଗୋଟିଏ ୧୯/୨୦ ବର୍ଷର ପିଲା ବର୍ତ୍ତମାନ ସ୍ଥାୟୀ ଭାବରେ ରହୁଛି । ସପ୍ତାହରେ ୪ଦିନ ରହୁଥିବା ଅଧ୍ୟାପକଙ୍କ ବ୍ୟତୀତ ଜଣେ ମହାରାଷ୍ଟ୍ରର ଅଳ୍ପ ବୟସର ଯୁବକ ଜୈବିକ ଚାଷ ଶିଖିବା ଉଦ୍ଦେଶ୍ୟରେ ଆସି ପହଞ୍ଚିଛନ୍ତି । ସେ ୩ ବର୍ଷ ପୂର୍ବେ ଏକୁଟିଆ ସାଇକେଲ ଯାତ୍ରା କରିଥିଲେ-ମହାରାଷ୍ଟ୍ରରୁ ବାହାରି ମଧ୍ୟପ୍ରଦେଶ, ଛତିଶଗଡ଼, ଓଡ଼ିଶା, ଝାଡ଼ଖଣ୍ଡ ପ୍ରଭୃତି ବୁଲିଥିଲେ । ଦର୍ଶନଶାସ୍ତ୍ରରେ M.A. କଲାପରେ ତାଙ୍କର ଜୈବିକ ଚାଷ ଦିଗରେ ମନ ବଳିଛି । ସଂପୂର୍ଣ୍ଣ କ୍ରାନ୍ତି ବିଦ୍ୟାଳୟ ଷ୍ଵେଡ଼ଛିର ଜଣେ କାର୍ଯ୍ୟକର୍ତ୍ତା (ମାଲାୟାଲି) ମଝିରେ ଆସି ୨ ଦିନ ରହି, ଆମକୁ କେରଳ, ତାଙ୍କ ଗାଁକୁ (ପୟ୍ୟନୁର) ନେଇ ଯାଇଥିଲେ । ପଶ୍ଚିମ ଘାଟର ପ୍ରାକୃତିକ ଶୋଭା ଉପଭୋଗ କରୁ କରୁ ମାଙ୍ଗାଲୋର ପହଞ୍ଚିଗଲୁ । ମାଙ୍ଗାଲୋରରୁ କେରଳ-ଗୋଟାଏ ପଟେ ଆରବ ସାଗର ଉପକୂଳର ମନୋରମ ଶୋଭା ତ ଅନ୍ୟପଟେ ପଶ୍ଚିମ ଘାଟର ଅପୂର୍ବ ସୌନ୍ଦର୍ଯ୍ୟ ! ମୁଗ୍ଧ ମନ ସବୁଠି ରହିଯିବାକୁ ଚାହେଁ । ତିନିଦିନରେ ଫେରିଲୁ । ବର୍ତ୍ତମାନ ଝୁନୁ ଓ ମୁଁ ମିଶି ଏଠି ଛ' ଜଣ ଅଛୁ । ମୁଁ ଏମାନଙ୍କ ପାଇଁ କାଠଚୁଲୀରେ ରୋଷେଇ କରୁଛି । ଚାନ୍ଦିନୀ କି ନନ୍ଦ ନ ଥିବା ନାଣ୍ଡି କୂଅରୁ ଖରାରେ ପାଣି କାଢୁଛି । ନଈରେ ଯାଇ ଲୁଗା କାଚୁଛି ।

ଏଠି ପାଇଖାନା ମାଇଁ ହ୍ୟୁମାନିଓର୍ ବାଲ୍‌ଟି ପାଇଖାନା ବ୍ୟବହାର କରି ଟ୍ରେଞ୍ଚରେ ପ୍ରତିଦିନ କମ୍ପୋଷ୍ଟିଙ୍ଗ ହେଉଛି । ଝୁନୁ ଦିନକୁ ପ୍ରାୟ ୫୦ ଗରା ପାଣି କାଢ଼ି ପରିବା ବଗିଚାରେ ଦେଉଛି । ପତର ଏକାଠି କରି, ଗୋବର ଗୋଟେଇ କମ୍ପୋଷ୍ଟ୍ ପ୍ରସ୍ତୁତ କରୁଛି । ଭାଇମାନେ ଏକାଠି କରୁଛନ୍ତି କୂଅ ବନ୍ଧେଇବେ । ତା'ଛଡ଼ା ମୁଗ ଓ ବିରି ବୁଣିବାକୁ ଜମି ପ୍ରସ୍ତୁତ କରୁଛନ୍ତି । ମଇଁଷୀ ପଣ୍ଡାରେ ଜମି ହଳ ହେଉଛି । ପ୍ରତିବେଶୀ ଜଣେ ଖ୍ରୀଷ୍ଟିଆନ ଚାଷୀ ଭାଇ ଆସି ହଳ ଧରିଥିଲେ । ତାଙ୍କ ପାଇଁ ଆମେ ଚା' କଳଶିଆ ନେଇ ଯାଉ । ସେ ତାଙ୍କ ପର୍ବରେ ଆମକୁ ଡ଼ାକି କେକ୍ ଖୁଆଇଥିଲେ । ୫୨/୫୩ ବର୍ଷ ତଳେ ମୁଁ ଯେଉଁ ଜୀବନ କଟେଇଥିଲି- ମୋ' ଝିଅ ଆମେରିକାରୁ ଆସି ସେଇପରି ଜୀବନ ଆଦରି ନେଉଛି ଦେଖି ମୁଁ ଅଭିଭୂତ ହୋଇ ଯାଉଛି । ମୁଁ ଏମାନଙ୍କୁ ଆପଣଙ୍କ କଥା ଓ ଆମ ଜଙ୍ଗଲ ସ୍କୁଲ କଥା କହୁଥିଲି- ସେତେବେଳେ ଆପଣ ଆମକୁ ଜଙ୍ଗଲ ସୁରକ୍ଷାର ମହତ୍ତ୍ୱ କଥା କହୁ କହୁ କିପରି ଫିନ୍‌ଲ୍ୟାଣ୍ଡର ଉଦାହରଣ ଦେଉଥିଲେ, ଡ଼େନମାର୍କ ଓ ନରୱେର ନିତ୍ୟ ନୈମିତ୍ତିକ ଜୀବନ ସହ ଶିକ୍ଷାର ଘନିଷ୍ଠ

ନିର୍ବନ୍ଧ କଥା କହୁଥିଲେ । ଆମେ ଜଙ୍ଗଲ ସ୍କୁଲରେ କ'ଣ ସବୁ କରୁଥିଲୁ ଓ କିପରି ପାଠ ପଢୁଥିଲୁ- ରୋଷେଇ କରୁ କରୁ ଏସବୁ ସାଂଧ୍ୟ ଗପ ଚାଲୁଛି । ମଝିରେ ମଝିରେ ସେମାନେ ଜୈବିକ ଚାଷ ଓ କମ୍ପୋଷ୍ଟିଙ୍ଗ ଓ କିଆ ଚାଷ ଉପରେ ବିଭିନ୍ନ ଲେଖା ପଢ଼ି ଶୁଣାଉଛନ୍ତି ।

ଆରମ୍ଭରେ ଏମାନେ ଆଶଙ୍କା କରିଥିଲେ ଯେ ମୁଁ ଏ ବୟସରେ ଏଠି ଚଳିବାକୁ ହୁଏତ ହଇରାଣ ହେବି । କାରଣ ଅନେକଙ୍କର ମା' ମୋ'ଠାରୁ ସାନ ଓ ମୋ ବୟସର ହେଲେ ମଧ୍ୟ ଏଠାକୁ ଆସିବାକୁ ସାହାସ କରି ନାହାନ୍ତି । ମୋ'ଠାରୁ ମୋ' ମୂଳଦୁଆର ମଜବୁତି ସଂପର୍କରେ ଶୁଣିବା ପରେ ସେମାନେ ନିଶ୍ଚୟ ବୁଝି ପାରିଥିବେ ।

ବିଭୂତିବାବୁଙ୍କ ସାଙ୍ଗରେ ପିଲାଙ୍କୁ ନେଇ ଇଣ୍ଡୋନେସିଆର ଇରିଆନ ଜୟାରେ ପ୍ରାୟ ୩ ବର୍ଷ ଥିଲି । ସେଠଇ ରାଷ୍ଟ୍ରସଂଘର ବିଭିନ୍ନ ଏଜେନ୍‌ସି ଏକତ୍ରିତ ହୋଇ ଇରିଆନ ଜୟାର ବିକାଶ ପାଇଁ କାମ କରୁଥିଲେ । ପ୍ରାୟ ୨୮ଟା ଦେଶର ବିଶେଷଜ୍ଞମାନେ ଆସି କାମ କରୁଥିଲେ । ଅଧିକାଂଶ ଆମ ପରି ସପରିବାର ଆସିଥିଲେ । ଆପଣଙ୍କ ଠାରୁ ଶୁଣିଥିବା ବର୍ଣ୍ଣନା ଯୋଗୁଁ ସ୍କାଣ୍ଡିନେଭିଆର ଲୋକମାନଙ୍କୁ ଦେଖି ଭାରି ଆପଣାର ମନେ ହୋଇଥିଲା ଓ ତାଙ୍କ ସାଙ୍ଗରେ କେତେ ଶୀଘ୍ର ଦୋସ୍ତି ହୋଇ ଯାଇଥିଲା । ସେମାନେ ମଧ୍ୟ ମୋ' ସହିତ ଆତ୍ମୀୟ ଭଳି ବ୍ୟବହାର କରିଥିଲେ । ଏ ଆତ୍ମୀୟତା ଆସିଥିଲା ଆପଣଙ୍କ ଯୋଗୁଁ । ଜୀବନ ବିଦ୍ୟାଳୟରେ ଜାଗରିତ ହୋଇଥିବା ଜିଜ୍ଞାସା ମୋତେ ଇରିଆନ ଜୟା ଓ ସେଠାରେ ଥିବା ଅନ୍ୟ ଇଣ୍ଡୋନେସୀୟଙ୍କ ସହ ଏକାତ୍ମତାରେ ବାନ୍ଧି ଦେଇଥିଲା, ବିଶେଷ କରି ମହିଳାମାନଙ୍କ ସହ । ମୁଁ ଆଗ୍ରହରେ ଇଣ୍ଡୋନେସିଆ କହିବା, ପଢ଼ିବା, ଲେଖିବା ଶିଖିଗଲି । ଅବଶ୍ୟ ରୋମାନ୍ ଲିପି ହୋଇଥିବାରୁ ପଢ଼ିବା ଓ ଲେଖିବା ସହଜ ହେଲା । ଆପଣ ଖୋଲି ଦେଇଥିବା ଦୃଷ୍ଟି ବିସ୍ତାରିତ ହୋଇ ସମସ୍ତ ଛୋଟ, ବଡ଼, ସରଳ ଓ ଜଟିଳକୁ ମୁଗ୍ଧ ହୋଇ ଦେଖୁଥିଲା ଓ ସମାଲୋଚନା ମଧ୍ୟ କରୁଥିଲା । ଇଣ୍ଡୋନେସିଆର ଇସ୍‌ଲାମ୍ ଧର୍ମ ଏବଂ ରାମାୟଣ-ମହାଭାରତର ସଂସ୍କୃତି ମଧ୍ୟରେ ସଂହତିର ସୁକ୍ଷ୍ମ ପରମ୍ପରା ଯେତିକି ମୁଗ୍ଧ କରୁଥିଲା, ଯେତିକି ପ୍ରଭାବିତ କରୁଥିଲା, ସେତିକି ବ୍ୟଥିତ କରୁଥିଲା ଜାଭାବାସୀଙ୍କର ଇରିଆନ୍‌ଙ୍କ ଉପରେ ଚଲାଉଥିବା ଆଧିପତ୍ୟ ଦେଖି । ଇରିଆନ ଜୟାର ପାର୍ବତ୍ୟଭୂମି ଓ ଦକ୍ଷିଣର ସନ୍ତସନ୍ତିଆ ଭୂମି ନରମାଂସଭକ୍ଷୀ (canimbal) ଆଦିମ ଅଧିବାସୀଙ୍କୁ ଦେଖିଲି । ପ୍ରକୃତି କୋଳରେ ଆଜି ମଧ୍ୟ ମଣିଷ ସେଇ ପ୍ରସ୍ତର ଯୁଗରେ ରହିଯାଇଛି- ଯେତେବେଳେ କି ସଭ୍ୟ ଓ ଉନ୍ନତ ବୋଲାଉଥିବା କିଛି ଲୋକ ଧନ ଲୋଭରେ ଆସି ତାଙ୍କ ଭୂଇଁରୁ ସୁନା ଛାଣି ନେଉଛନ୍ତି ! ପୁଣି ଜ୍ଞାନପିପାସୁ ନୃତତ୍ତ୍ୱବିଦ୍‌ମାନେ ଆସି ତାଙ୍କ

ଉପରେ ଗବେଷଣା କରୁଛନ୍ତି । ଆମେ ସେଠି ପହଞ୍ଚିବାର ୨୪ ବର୍ଷ ପୂର୍ବରୁ ନୃତତ୍ତ୍ୱରେ ଗବେଷଣା କରୁଥିବା ୨୨ ବର୍ଷୀୟ ମାଇକେଲ୍ ରକ୍‌ଫେଲର ଆସ୍‌ମାତର ନରଭକ୍ଷୀଙ୍କର ଶିକାର ହୋଇ ସାରିଥିଲା । ସେଠାରେ ବହୁବର୍ଷ ଧରି କାମ କରୁଥିବା ମିସନାରୀମାନେ ମଝିରେ ମଝିରେ ଦାନୀ ଓ ୟାଲି ନରଭକ୍ଷୀଙ୍କର ଶିକାର ହୋଇଛନ୍ତି । ଏହି ଆଦିମ ଅଧିବାସୀମାନେ ଆଦୌ ଲୁଗାର ବ୍ୟବହାର ତ ଜାଣିନଥିଲେ, ପଥରରେ ଖୋଳି କେବଳ କନ୍ଦମୂଳ ଚାଷ କରି ନିଆଁରେ ପୋଡ଼ି ଖାଇଥିଲେ । ଏମାନେ ଘୁଷୁରି ପାଳନ୍ତି ଓ ବିଶେଷ ଦିନରେ ଗୋଟା ଘୁଷୁରି ପୋଡ଼ି ଭୋଜି କରନ୍ତି । ଅଭ୍ୟନ୍ତରର ପାର୍ବତ୍ୟ ଇଲାକାରେ କାମ କରୁଥିବା ଜଣେ ଡେନିଶ୍ ଫାଦର୍‌ଙ୍କ ସହ ପରିଚୟ ହେଲା ଓ ତାଙ୍କ କର୍ମ କ୍ଷେତ୍ରରେ ଯାଇ ୨ ଦିନ ରହିଥିଲି । କେବଳ କନ୍ଦମୂଳ ଚାଷ କରୁଥିବା 'ଦାନୀ' ମାନଙ୍କୁ ସେ କୋବି, ମୂଳା, ଗାଜର, ଟୋମାଟୋ, ଆଳୁ ଚାଷ କରିବା ଶିଖାଉଥାନ୍ତି ଓ ତାଙ୍କୁ ପାଠ ପଢ଼ାଉଥା'ନ୍ତି । କିନ୍ତୁ କେବେହେଲେ ତାଙ୍କୁ ଲୁଗା ପିନ୍ଧିବାକୁ ବାଧ୍ୟ କରୁ ନ ଥା'ନ୍ତି । ତାଙ୍କ ମତ ଥିଲା ଯେ ସେମାନେ ନିଜେ ନ ଚାହିଁଲେ ବାଧ୍ୟ କରି ତାଙ୍କୁ ଲୁଗା ପିନ୍ଧାଇବା ଉଚିତ୍ ନୁହେଁ । ସରକାରୀ ଲୋକେ ଗୋଟାଏ ଅଞ୍ଚଳରେ ଲୋକଙ୍କୁ ବନ୍ଧୁକ ଦେଖାଇ ଜବରଦସ୍ତି ପ୍ୟାଣ୍ଟ ସାର୍ଟ ପିନ୍ଧାଇଥିଲେ । ସେ ବିଚରାମାନଙ୍କର ଲୁଗା ଖୋଲିବା, ପିନ୍ଧିବାର ଅଭ୍ୟାସ ନ ଥିବାରୁ ସେମାନେ ତାକୁଇ ପିନ୍ଧି ନଈରେ ଗାଧୋଇଲେ ଓ ସେ ପୋଷାକ ତାଙ୍କ ଦେହରେ ଶୁଖିଲା, ଫଳରେ ବହୁ ପିଲା, ବୁଢ଼ା ଖୁବ୍ ବେମାର ପଡ଼ିଲେ ଓ ମରିଗଲେ । ଏ କଥା ଫାଦର୍ ନିକୋଙ୍କୁ ଖୁବ୍ ବାଧିଥିଲା ଓ ସେ ସେମାନଙ୍କ ଭିତରେ ଯାଇ ସେବା କାର୍ଯ୍ୟ କରିଥିଲେ । ଫାଦର ନିକୋଙ୍କ ସହ ବନ୍ଧୁତ୍ୱର ମାଧ୍ୟମ ମଧ୍ୟ ଆପଣହିଁ ଥିଲେ । ତାଙ୍କ ସାଙ୍ଗରେ ଜଙ୍ଗଲ ଭିତରେ ବାଟ ଚାଲୁ ଚାଲୁ, ଭେଳାରେ ନଈ ପାରି ହେଉ ହେଉ ଅନ୍ତରଙ୍ଗ ଭାବରେ ଅନେକ କଥା ଗପି ଚାଲି ଥାଉ । ସେ ଜଣେ ଗାନ୍ଧି ଭକ୍ତ ଥିଲେ । ସେଠାକାର ଲୋକଙ୍କୁ କପା ଚାଷ ଶିଖାଇ, ତା'ପରେ ସେମାନେ ସୂତାକାଟି, ଲୁଗାବୁଣି ପିନ୍ଧନ୍ତୁ ଓ ତାଙ୍କ ଭିତରେ ସଭ୍ୟତାର କ୍ରମ ବିକାଶ ହେଉ ବୋଲି ସେ ବିଚାରୁଥିଲେ । -କଲିକତାରେ ଔକଖଙ୍କୁ ଜୟପୁରା ପାଇଁ Air ticket ପାଇଁ ଯେତେବେଳେ ଯାଇଥିଲି, ଜଣେ ବଙ୍ଗାଳୀ ଭଦ୍ରଲୋକ ମୋତେ କହିଥିଲେ- "କୋଥାଏ ଏକ୍‌ଟା ପାଣ୍ଡବ ବର୍ଜିତ ଦେଶେ ଯାଚ୍ଛେନ୍ ଦିଦି ?" -ଫାଦର ନିକୋଙ୍କୁ ଭେଟି ମନେ ହେଲା ଏ ଜାଗା ପାଣ୍ଡବ ବର୍ଜିତ ହୋଇପାରେ । ଏବେ କିନ୍ତୁ 'କର୍ମଯୋଗୀ' ବର୍ଜିତ ନୁହେଁ ।

ଇରିଆନ୍ ଜୟାରେ କାମ କରୁଥିବା ଏକ ଆମେରିକାନ୍ ମିଶନାରୀ (CAMA) ଦଳ ତାଙ୍କ ପିଲାଙ୍କ ପାଇଁ ସେଣ୍ଟାନୀରେ ଏକ ସ୍କୁଲ କରିଥିଲେ । ଆମର ପିଲାମାନେ ସବୁ

ସେଠି ପଡ଼ିଲେ। ଆମେ ହିନ୍ଦୁ ହୋଇ କ୍ରିସ୍‌ମସ୍ ପାଳୁନ୍ଥୁ ଓ କାରୋଲ୍ ଗାଉନ୍ଥୁ ଦେଖି ତାଙ୍କୁ ଆଶ୍ଚର୍ଯ୍ୟ ଲାଗୁଥିଲା। ସେମାନେ ଆମ ପିଲାଙ୍କୁ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ପ୍ରବର୍ତ୍ତାଉଥିଲେ। ହିନ୍ଦୁ ଧର୍ମ ବିଷୟରେ ତାଙ୍କର ଧାରଣା ଖୁବ୍ ସୀମିତ ଥିଲା। ମଝିରେ ମଝିରେ ସେମାନଙ୍କ ସାଙ୍ଗରେ ହିନ୍ଦୁଧର୍ମ ନେଇ କିଛି କିଛି ଚର୍ଚ୍ଚାଲୋଚନା ହେଉଥିଲା। କିଛି ଦିନ ପରେ ସେମାନଙ୍କ ସହ ବନ୍ଧୁତ୍ୱ ବେଶ୍ ନିବିଡ଼ ହୋଇଗଲା। U.N.ର କାମ ଆରମ୍ଭ ହେବା ଆଗରୁ ମିଶନାରୀ ମହିଳାମାନେ ଓ ସ୍ଥାନୀୟ ଶିକ୍ଷିତ ମହିଳାମାନେ ମିଶି ଏକ International Ladies Club ଆରମ୍ଭ କରିଥିଲେ। ପ୍ରତି ଗୁରୁବାରରେ ଏକାଠି ହୋଇ କିଛି ଚର୍ଚ୍ଚା ଓ କିଛି ମନୋରଞ୍ଜନ ଆଦି କରୁଥିଲେ। U.N.ର ସବୁ agencyର ମହିଳାମାନେ ମିଶିବାରୁ ଏହା ଏକ ବ୍ୟାପକ ସଂସ୍କୃତି ସଂପନ୍ନ club ହୋଇଗଲା। ବିଭିନ୍ନ ରକମର କାର୍ଯ୍ୟକ୍ରମ ହେବା ଆରମ୍ଭ ହେଲା। ଆଞ୍ଚଳିକ ପିଲାଙ୍କ ପାଇଁ ସ୍କୁଲ କରିବା, ରିଲିଫ୍ କାମ ଆଦି ଆରମ୍ଭ ହେଲା। ଅନେକ ବିଦୁଷୀ ମହିଳା ଥାଉ ଥାଉ, ଲାଗ୍ ଲାଗ୍ ଦୁଇବର୍ଷ ମୁଁ ଏହି ଲେଡ଼ିଜ୍ କ୍ଲବ୍‌ର ଚେୟାରପର୍ସନ ବଛା ହେଲି। ମୁଁ ନିଜେ ଆଶ୍ଚର୍ଯ୍ୟ ହେଲି- ଭାଷଣ ତ ମୁଁ ଆଦୌ ଦେଇ ପାରେନା। କେବଳ ସମସ୍ତଙ୍କ ସାଙ୍ଗରେ ସଂପର୍କ ଓ କୌଣସି କାମକୁ ପଛେଇ ଯାଉ ନ ଥିବା ହୁଏତ ଏହାର କାରଣ ହୋଇପାରେ। ଯେ କୌଣସି ପରିସ୍ଥିତିରେ ନିଜକୁ ଖାପ୍ ଖୁଆଇନେବା ଆମେ ଆମ ଜୀବନ ବିଦ୍ୟାଳୟରୁ ଶିଖିଥିଲୁ। ଆଧୁନିକ ଜଗତରୁ ବହୁ ଦୂରରେ ଥାଇ ମଧ୍ୟ ଆଧୁନିକ ମଣିଷର ସଭ୍ୟତା ବିଷୟରେ ଆପଣ ଆମକୁ ବେଶ୍ ସଚେତନ କରି ଦେଇଥିଲେ। ଅଷ୍ଟ୍ରେଲିଆରେ ଯାଇ ଗୋରାମାନଙ୍କର ଉନ୍ନତ ବିକଶିତ ଜୀବନ ଯେତିକି ଭଲ ଲାଗିଥିଲା, ପ୍ରବାଳ ପ୍ରବାହର ସୌନ୍ଦର୍ଯ୍ୟରେ ଯେତିକି ମୁଗ୍ଧ ହୋଇଥିଲି, ସେତିକି ଦୁଃଖ ହୋଇଥିଲା ସେଠାକାର ଆବୋରିଜିନ୍‌ଙ୍କ ଅବସ୍ଥା ଦେଖି।

ଭାଇ, ଆଜି ଧନୀ, ଦରିଦ୍ର, ଶୋଷିତ, ଶୋଷକ, ଶାସକ, ଶାସିତ ସମସ୍ତେ ଗ୍ଲୋବାଲ ଓ୍ୱାର୍ମିଂ ଓ ପରିବେଶ ପ୍ରଦୂଷଣକୁ ନେଇ ବେଶ୍ ଚିନ୍ତିତ ମନେ ହେଉଛନ୍ତି। ଅବଶ୍ୟ ଯିଏ ବୁଝି ପାରୁନାହାନ୍ତି- ତାଙ୍କର ଚିନ୍ତା ନାହିଁ। କଳ, କାରଖାନା, ଗାଡ଼ି, ମଟରର ଧୂଆଁ କମାଇବାକୁ ହେବ, ପ୍ରାୟ ସମସ୍ତେ ଏ କଥା ବୁଝିଲେଣି। ମାଟିକୁ ରାସାୟନିକ ସାର ଓ କୀଟନାଶକରୁ ବଞ୍ଚାଇବାକୁ ହେବ ଏ କଥା ମଧ୍ୟ ବୁଝିଲେଣି। ଏ ସଂପର୍କରେ ଗଭୀର ଭାବରେ ଚିନ୍ତା କରୁଥିବା, ଗବେଷଣା କରୁଥିବା ଲେଖା ଓ ପ୍ରୟୋଗ କରିଥିବା ଲେଖାମାନ ପ୍ରକାଶିତ ହେଉଛି- ଯେତିକି ପଢ଼ିଛି ଓ ଶୁଣୁଛି- ମନେ ହେଉଛି ଆମକୁ ପୁଣି ସେଇ କମ୍‌ରେ ଚଳୁଥିବା ଜୀବନକୁ ହିଁ ବାଛି ନେବାକୁ ହେବ। ଆମର ସେଇ ଚମ୍ପତିମୁଣ୍ଡାର ଜୀବନ। ଦାରିଦ୍ର୍ୟର ନୁହେଁ- ଅସ୍ୱାସ୍ଥ୍ୟକର ନୁହେଁ।

ପ୍ରକୃତି କୋଳରେ ସୁସ୍ଥ, ସୁନ୍ଦର ପରିବେଶରେ, ଯେତେ କମ୍ ସମ୍ଭବ ଆବଶ୍ୟକତାରେ ଚଳିବା। ଆଜି 'ସାଂଗତ୍ୟ'ରେ ଏଇ ଯୁବଗୋଷ୍ଠୀ ସେଇ ପ୍ରୟୋଗରେ ଲାଗିଛନ୍ତି। ଏମାନଙ୍କ ପରି ଆଉରି ଅନେକେ ଏଭଳି ପ୍ରୟୋଗ କରୁଛନ୍ତି ଓ ସେମାନେ ସମସ୍ତେ ପରସ୍ପର ସହ ଯୋଗାଯୋଗ ଓ ଅନୁଭୂତି ଆଦାନ ପ୍ରଦାନ କରୁଛନ୍ତି। ଏ ସବୁ ଦେଖି ମୋ' ମନରେ ଆଶାର ସଞ୍ଚାର ହେଉଛି। ମନେ ହେଉଛି ଆପଣଙ୍କ ପରି ବ୍ୟକ୍ତିମାନେ କରିଥିବା କର୍ମ ଓ ସାଧନା କେବେ ବିଫଳ ହୁଏ ନାହିଁ।

ମୁଁ ଅନୁଗୁଳ ଛାଡ଼ିବା ବେଳେ ଶୁଣିଥିଲି ଆପଣଙ୍କ ଦେହ ବିଶେଷ ଭଲ ନ ଥିଲା। ଆଶାକରେ ଯା' ଭିତରେ ଆପଣ ସୁସ୍ଥ ହୋଇ ଉଠିଥିବେ। ଫେରିଲେ ଆପଣଙ୍କ ସାଙ୍ଗରେ ଦେଖାହେଲେ ଆଉରି ଅନେକ କଥା କହିବାର ଅଛି ଓ ଆପଣଙ୍କଠାରୁ ଶୁଣିବାର ଅଛି।

ଆଜି ଏତିକିରେ ରହିଲି- ସ୍ନେହାଧୀନା

ତିନୁ

•



ତତ୍କାଳୀନ ଛାତ୍ରମାନଙ୍କ ଦ୍ୱାରା ଅଙ୍କିତ କଳାକୃତି

# ଚଂପତିମୁଣ୍ଡାରେ ଚାରିବର୍ଷ

**ଶ୍ରୀ ଦୁର୍ଗାଚରଣ ବେହେରା**

ହଠାତ୍ ମୋର ଚିତ୍ତଭାଇଙ୍କ ସହିତ ଦେଖାହେଲା । ମୁଁ ବଳଦ ଚରାଉ ଥିଲାବେଳେ ତାଙ୍କୁ ନମସ୍କାର କଲି । ତା'ପରେ ମୋ ବିଷୟରେ କହିବା ଆରମ୍ଭ କଲି । ତା' ପୂର୍ବରୁ ଛାତ୍ରାବାସରେ ପ୍ରଥମେ ଚିହ୍ନିଥିଲି । ସେହିଠୁହିଁ ସେ ମୋତେ ଛାତ୍ରାବାସ ଭିତରକୁ ନେଇ ଚମ୍ପତିମୁଣ୍ଡାର ଛାତ୍ରହିସାବରେ ଗ୍ରହଣ କଲେ । ଜୀବନ ବିଦ୍ୟାଳୟଟି ବିଶିଷ୍ଟ ଚିନ୍ତାନାୟକ ଶ୍ରୀଯୁକ୍ତ ମଜୁମଦାରଙ୍କ ଦ୍ୱାରା ଉଦ୍‌ଘାଟିତ ହେଇଥିଲା ୧୯୫୪ ମସିହା ଅଗଷ୍ଟ ୨୬ ତାରିଖରେ ।

ପୂଜ୍ୟଶ୍ରୀ ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ(ବାପି), ମାଳତୀ ଦେବୀ (ନୁମା) ଇତ୍ୟାଦିଙ୍କ ଗହଣରେ ବାକିରାଉତ ଛାତ୍ରାବାସରେ ଘଣାଘରେ ଆମର କ୍ଲାସ ଆରମ୍ଭ ହୋଇଥାଏ । ଆମେ ସେତେବେଳେ ଅଷ୍ଟମ ପାସ୍ କରିଥିବା କିଛି ଛାତ୍ର ଥିଲୁ । ସେ ସମୟରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିଲେ । ତାଙ୍କ ଝିଅ କୃଷ୍ଣା ମହାନ୍ତି(ତିନୁ) ଆମ ସହ ଚମ୍ପତି ମୁଣ୍ଡାରେ ଅଧ୍ୟୟନ କରୁଥିବାରୁ ବେଳେବେଳେ ନବକୃଷ୍ଣ ଚୌଧୁରୀ ଯାଇ ଆମର ପଢ଼ାପଢ଼ି ବିଷୟରେ ତଦାରଖ କରୁଥିଲେ । ମାଳତୀ ଦେବୀଙ୍କ ଦ୍ୱାରା ଚମ୍ପତିମୁଣ୍ଡାର ୮୦ ଏକର ଜମିରେ ଜୀବନ ବିଦ୍ୟାଳୟଟି ପ୍ରତିଷ୍ଠା ହୋଇଥିଲା । ତା'ପରେ ଓଡ଼ିଶାରୁ ବିଭିନ୍ନ ସ୍ଥାନରୁ ପିଲା ଆସିଲେ ।

ସେଥିରୁ କିଛି ପିଲା ଚାଲିଗଲା ପରେ ଆମେ କୋଡ଼ିଏ ଜଣ ଥିଲୁ । ବାକି ରାଉତ ଛାତ୍ରାବାସରେ କ୍ଲାସ ହେବା ସଂଗେ ସଂଗେ ଚମ୍ପତି ମୁଣ୍ଡାରେ ଘର ତିଆରି ଚାଲିଥାଏ । ଦୁଇଟି ନଡ଼ାଚାଳ ଛପର ବଡ଼ ଘର ଗୋଟିଏ କନ୍ୟାଶ୍ରମ ଓ ରୋଷେଇ ଏବଂ ଭଣ୍ଡାର ଘର ଥାଏ । ସେହିଠିଁ ଆମେ ଛାତ୍ର ଓ ଶିକ୍ଷକମାନେ ମିଶି ଗୋଟିଏ ବଣ୍ୟଝରଣାକୁ ବନ୍ଧାଇ ତାକୁ ସୁଶୀତଳ ପାଣିରେ ଗାଧୋଇବା, କୃଷି କାମରେ ପାଣି ଦେଇ ବଗିଚା ପ୍ରସ୍ତୁତ କରିବା ସହ ଆମର ଯାବତୀୟ ରୋଷେଇ କାମ ଓ ପିଇବା ପାଇଁ ପାଣି ସଂଗ୍ରହ କରି ଖୁବ୍ ଖୁସିରେ ପାଠ ପଢୁଥିଲୁ । ସେଇ ଝରଣା ଉପରେ ନିର୍ମିତ ପୋଲଟିକୁ ଆମର ବିଜ୍ଞାନ ଗୁରୁଜୀ (Science teacher) ଅନ୍ତର୍ଯ୍ୟାମୀଙ୍କ ନାମରେ ନାମିତ କରାଗଲା । କାରଣ ତାଙ୍କ ପ୍ରଚେଷ୍ଟାରେ ଏଇ କ୍ଷୁଦ୍ର ସେତୁଟି ହୋଇଥିଲା । ଏହି ବନ୍ଧରେ ଆମେ ସୁରୁଖୁରୁରେ ଯିବାଆସିବା, ଗାଧୁଆ ଇତ୍ୟାଦି କାମ କରି ପାରୁଥିଲୁ । ସେହି ସ୍ଥାନରେ କୂଅ ଦୁଇଟି ଖୋଳା ହୋଇଥାଏ ପାଣି ପାଇଁ । ତାକୁ ଉଝାଳିବା କାମ ଆମ୍ଭେମାନେ

କରିଥାଉ। ଆମ ବିଦ୍ୟାଳୟର ଧାନ, କପା, ବାଦାମ ଇତ୍ୟାଦି ଫସଲ ଜଂଗଲ ଦାଢ଼ରେ ହୋଇଥିବାରୁ ବଣ୍ୟଜନ୍ତୁଙ୍କ ଦାଉରୁ ତାକୁ ରକ୍ଷା କରିବା ଲାଗି ସେଇ ବିଲମାନଙ୍କରେ ମଂଚ଼ା କରି ଆମେ ସବୁ ପୁଅ ପିଲା ରାତିରେ ମଂଚ଼ାରେ ରହି ଟିଣ ବାଡ଼େଇ ଗୀତ ବୋଲି ଫସଲ ଜଗୁଁ।

ଚଂପତିମୁଣ୍ଡା ଜୀବନ ବିଦ୍ୟାଳୟରେ ଶୀତ, ବର୍ଷା ଓ ବସଂତ କାଳଗୁଡ଼ିକ ବଣ୍ୟ ପ୍ରକୃତିଟିକୁ ଅତି ମନୋରମ କରି ତୋଳିଥା'ନ୍ତି। ଆମେ ଉଭୟ ଛାତ୍ର ଓ ଶିକ୍ଷକ ସେଇ ରମଣୀୟ ପରିବେଶଟିରେ ବିଦ୍ୟାଧ୍ୟୟନରେ ସଦାସର୍ବଦା ଆନନ୍ଦ ମନରେ ନିମଜ୍ଜିତ ରହିଥାଉ। ବର୍ଷାଦିନେ ଚିତ୍ତଭାଇ (ପ୍ରଫେସର ଚିତ୍ତରଂଜନ ଦାସ)- ଓଡ଼ିଶାର ସୁବିଖ୍ୟାତ ଶିକ୍ଷାବିତ୍ ସାହିତ୍ୟିକ ଓ ଦାର୍ଶନିକ)ଙ୍କ ସହିତ ବର୍ଷାରେ ଭିଜି ଖେଳିବା ଭିତରେ ପରସ୍ପରକୁ କାଦୁଅ ଫିଙ୍ଗା ଫିଙ୍ଗି ହୋଇ ଖୁବ୍ ଖୁସୀ ହୋଇଥାଉ।

ଆମ ଜୀବନ ବିଦ୍ୟାଳୟରେ ଯେ କେବଳ ପାଠପଢ଼ା ହୁଏ- ତାହା ନୁହେଁ। ପାଠପଢ଼ା ସହ ଆମେ ଆମ ଅବସର ସମୟରେ ସାହିତ୍ୟ, ସଂସ୍କୃତି, ରାଜନୀତି ଓ ଦେଶ ବିଦେଶର ସାଂପ୍ରତିକ ସମସ୍ୟା ଉପରେ ଆଲୋଚ଼ନା, ସମାଲୋଚ଼ନା, ସଂଗୀତ ଚ଼ର୍ଚ୍ଚା ତଥା କବି ଗୁରୁ ରବୀନ୍ଦ୍ରନାଥ ଠାକୁରଙ୍କ "ଗୀତାଞ୍ଜଳି" ଉପରେ ଚ଼ିତ୍ତଭାଇଙ୍କ ସହ ଆଲୋଚ଼ନା କରିଥାଉଁ। ଆମ ଦ୍ୱାରା ସେଠି 'ବିକାଶ' ନାମରେ ଏକ ହାତଲେଖା ପତ୍ରିକା ପ୍ରକାଶିତ ହେଉଥିଲା। ତାହାପ୍ରତି ମାସରେ ଆମ ଦ୍ୱାରା ସଂପାଦିତ ହେଉଥିଲା। ଏଥିରେ ଛାତ୍ରଛାତ୍ରୀ ଶିକ୍ଷକମାନଙ୍କ ଲେଖା ସହ ବେଳେବେଳେ ଡ଼ଃ ମାୟାଧର ମାନସିଂହ, କବି ଗଡ଼ନାୟକ ଓ କାଳିନ୍ଦୀ ଚ଼ରଣ ପାଣିଗ୍ରାହୀଙ୍କ ଲେଖାମଧ୍ୟ ପ୍ରକାଶତ ହେଉଥିଲା।

ଆମ ଜୀବନ ବିଦ୍ୟାଳୟରେ ଆମ୍ଭେମାନେ ଗଣେଶ ପୂଜା, ସରସ୍ୱତୀ ପୂଜା, ଗହ୍ମାପୂର୍ଣ୍ଣମୀ, ବଡ଼ ଦିନପର୍ବ ଇତ୍ୟାଦି ବଡ଼ ଖୁସିବାସିରେ ସମସ୍ତେ ଏକତ୍ର ହୋଇ ପାଳନ କରୁଥିଲୁ। ଏଇ ବିଭିନ୍ନ ପର୍ବ ପର୍ବାଣୀରେ ଆମେ ସମସ୍ତେ ଏକାଠି ବସି ନିଜ ନିଜର ଅଧ୍ୟୟନପ୍ରସ୍ତୁତ ପ୍ରବନ୍ଧମାନ ପାଠ କରି ତାହା ଆଲୋଚ଼ନା କରୁଥିଲୁ। ଚ଼ିତ୍ତଭାଇ ଆମ ବିଦ୍ୟାଳୟର ପ୍ରତିଟି ଦୈନନ୍ଦିନ କର୍ମ ଯୋଜନାଗୁଡ଼ିକ କିପରି ବାସ୍ତବ ଜୀବନାଭିମୁଖୀ ହେଉଛି ତାହା ସବୁ ଲେଖି ସେତେବେଳର 'ଗ୍ରାମସେବକ' ପତ୍ରିକାରେ ପ୍ରକାଶ କରୁଥିଲେ। ସେଇ ଲେଖା ଗୁଡ଼ିକ ପରବର୍ତ୍ତି କାଳରେ 'ଜଂଗଲ ଚ଼ିଠି' ବହି ହୋଇ ପ୍ରକାଶିତ ହୋଇଅଛି।

ମୋ ଜାଣିବାରେ ଚ଼ିତ୍ତଭାଇଙ୍କର ବିଭିନ୍ନ ଏଗାର ଗୋଟି ଭାଷାରେ ପାଣ୍ଡିତ୍ୟ ଥିଲା। ଏକଥା ସେ କେବେ ପ୍ରକାଶ ଯଦିଓ କରୁନଥିଲେ, ତାହା କିନ୍ତୁ ଆମେ ତାଙ୍କର ବିଭିନ୍ନ ଚ଼ିଠି ଓ ଲେଖାରୁ ଜାଣି ପାରୁଥିଲୁ। ତାଙ୍କର ବହୁଦିଗଦର୍ଶୀ ପାଣ୍ଡିତ୍ୟକୁ ଯିଏ

ତାଙ୍କ ସହ ମିଶିଛି ସେଇ ହିଁ ଅନୁଭବ କରିପାରିବ । ଶାନ୍ତି ନିକେତନରୁ ଉଚ୍ଚଶିକ୍ଷା ସମାପ୍ତ ପରେ ଅଧିକ ଗବେଷଣାତ୍ମକ ଶିକ୍ଷା ଲାଗି ସେ ବିଦେଶ ଯାଇ ଡ଼େନ୍‌ମାର୍କର କୋପେନ୍ ହେଗେନ୍ ଇଉନିଭରସିଟିରୁ ମନୋବିଜ୍ଞାନରେ ଡ଼କ୍ଟରେଟ୍ ଡ଼ିଗ୍ରୀ ଲାଭ କରିଥିଲେ ମଧ୍ୟ ତାହା କେବେ ଆମ ଆଗରେ ପ୍ରକାଶ କରି ନଥିଲେ । ସେ କଥା ଦିନେ ହଠାତ୍ ତାଙ୍କ ଜିନିଷପତ୍ର ବନ୍ଧାବନ୍ଧି କରିଲାବେଳେ ଆମେ ସବୁ ଜାଣିବାକୁ ପାଇଥିଲୁ ।

ଓଡ଼ିଶା ତଥା ଭାରତ ବର୍ଷରେ ଯଦି ହାତ ଗଣତି ଅତି ଉଚ୍ଚ ଜ୍ଞାନୀ ଗୁଣୀଙ୍କର କେତୋଟି ନାମ ନିଆଯାଏ, ତେବେ ସେମାନଙ୍କ ଭିତରେ ଆମେ ଜୀବନ ବିଦ୍ୟାଳୟରେ ପଢୁଥିବା କାଳରେ ଚିତ୍ତଭାଇଙ୍କ ନାମ ଯେ ସେଥିରେ ନିଶ୍ଚୟ ସ୍ଥାନ ପାଇବ ଏଥିରେ ସନ୍ଦେହ କରିବାର ଅବକାଶ ନ ଥିଲା । ଏତେ କମ୍ ବୟସରେ ଏତେ ଭାଷାରେ ପାଣ୍ଡିତ୍ୟ ଓ ଏତେ ବିଷୟ ଯଥାः- ଦର୍ଶନ, ସମାଜଶାସ୍ତ୍ର, ମନୋବିଜ୍ଞାନ ଇତ୍ୟାଦି ବିଷୟ ଗୁଡ଼ିକରେ ଏତେ ଗଭୀର ଜ୍ଞାନ ଖୁବ୍ କମ୍ ଲୋକଙ୍କ ଠାରେ ଦେଖିବାକୁ ମିଳିବ ।

ସେତେବେଳେ ଆସାମରେ ବିନୋବାଜୀ ପଦଯାତ୍ରା କରୁଥିଲେ । ଚିତ୍ତଭାଇ ବିନୋବାଜୀଙ୍କୁ ଓଡ଼ିଆ ଶିଖାଉଥିଲେ । ଚଂପତିମୁଣ୍ଡାରେ ଏପରି ଏକ ଅଭିନବ ବିଦ୍ୟାଳୟ ଗଢ଼ିଉଠି ଛାତ୍ରଛାତ୍ରୀମାନଙ୍କୁ ଉଦ୍ୟୋଗମୂଳକ ଶିକ୍ଷା ସହ ଯାବତୀୟ ଜୀବନାଭିମୁଖୀ ଶିକ୍ଷା ଦିଆଯାଉଥିବାର କଥା ବିନୋବା ସେତେବେଳେ ଜାଣି ଭାରି ଖୁସୀ ହୋଇଥିଲେ । ଜୀବନ ବିଦ୍ୟାଳୟରେ ଚିତ୍ତଭାଇ ଥିବା ଯାଏ ସେଠାରେ ନବମ ସୋପାନରୁ ବିଦ୍ୟାଳୟର ଶିକ୍ଷା ଯୋଜନା ଅନୁଯାୟୀ ଦ୍ୱାଦଶ ସୋପାନ ପର୍ଯ୍ୟନ୍ତ ଶିକ୍ଷାଦାନ କରା ଯାଉଥିଲା । ଆମ ବେଳରେ ଓଡ଼ିଶା ତଥା ଭାରତର ବିଶିଷ୍ଟ ଚିତ୍ରଶିଳ୍ପୀ ଓ କବି ଶ୍ରୀଯୁକ୍ତ ବିନୋଦ ରାଉତରାୟ ଆମ୍ଭମାନଙ୍କୁ ସାହିତ୍ୟ ପଢ଼ାଉଥିଲେ । ପରବର୍ତ୍ତୀ କାଳରେ ବିନୋଦ ଭାଇ ଖଲିକୋଟସ୍ଥିତ କଳା(Art)ମହାବିଦ୍ୟାଳୟର ଅଧ୍ୟକ୍ଷ (Principal)ଭାବେ ଅବସ୍ଥାପିତ ହୋଇଥିଲେ ।

ଜୀବନ ବିଦ୍ୟାଳୟରେ ମୁଁ ୧୯୫୪ରୁ ୧୯୫୮ ପର୍ଯ୍ୟନ୍ତ ଛାତ୍ରଥିଲି ଏବଂ ସେଠାରୁ ଶେଷ ପରୀକ୍ଷା ଦେଇ ତହିଁରେ ପାସ୍ କରି ବିଭିନ୍ନ ସଂସ୍ଥାରେ ଚାକିରି କରିବା ପରେ ଖଦୀ କମିଶନର କାର୍ଯ୍ୟାଳୟରେ Developement Officer, Khadi, KVIC ଭାବେ ୧୯୯୭ରେ ଚାକିରିରୁ ଅବସର ନେଇ ବର୍ତ୍ତମାନ ନିଜ ଘରେ ଅବସ୍ଥାନ କରୁଅଛି । ଲେଖା ଲେଖିରେ ମୋର ଆଉ ଅଭ୍ୟାସ ନାହିଁ । ବ୍ରେନ୍ ମ୍ୟାଲେରିଆ ହେବା ଦ୍ୱାରା ମୁଁ ଅନେକ କଥା ମନେ ପକାଇ ପାରୁ ନାହିଁ ବୋଲି ଏଠି ଅନେକ କଥା ଯଥାକ୍ରମେ ଲେଖି ହୋଇନାହିଁ ।

ଗ୍ରାः-ଆନନ୍ଦନଗର, ମାଟିଆସାହି, ପୋः-ହାକିମପଡ଼ା, ଜିः-ଅନୁଗୋଳ

●

# ଆଜିର ଆମ ଶିକ୍ଷା ଓ ଜୀବନ ବିଦ୍ୟାଳୟ

ଶ୍ରୀ ଚୈତନ୍ୟ ଚରଣ ମଲ୍ଲିକ

ଦ୍ରୁତଗାମୀ ଠେକୁଆମାନେ ଦୌଡ଼ି ଯିବାପରେ ଏକ ଛୋଟ କଇଁଚ ଶିଶୁ ଚାଲିଲା ପରି ଖୁଣ୍ଟି ଖାଉଁଟି ଶିକ୍ଷା ବିଷୟରେ ଦୁଇପଦ କହିବି । ଆମ ଜୀବନ ବିଦ୍ୟାଳୟ ଗାନ୍ଧିଜୀଙ୍କ ତାଲିମର ବହୁ ଉପାଦେୟ ତତ୍ତ୍ୱରେ ଋଦ୍ଧିମନ୍ତ ଥିଲା ।

ଭାରତର ମହାନ୍ ଜନନାୟକ ମହାତ୍ମାଗାନ୍ଧିଙ୍କ ଭାଷାରେ ଶିକ୍ଷା ତ ଗୋଟିଏ ସାଧନ ମାତ୍ର । ଶିକ୍ଷାର ଉଦ୍ଦେଶ୍ୟ କେବଳ ପଇସା ଉପାର୍ଜନ କରିବା ନୁହେଁ, ସତ୍ ଶିକ୍ଷା ଲାଭ କରି ସେବା ମନୋଭାବରେ ଅନୁପ୍ରାଣିତ ହେବା ।

ସର୍ବୋଦୟ ଆନ୍ଦୋଳନର ସ୍ରଷ୍ଟା ସନ୍ଥ ବିନୋବାଜୀ ଶାସ୍ତ୍ରକୁ ଉଦ୍ଧାର କରି କହନ୍ତି, ସା ଶିକ୍ଷା ଯା ବିମୁକ୍ତୟେ ।

ମହାତ୍ମାଗାନ୍ଧିଙ୍କ ପ୍ରବର୍ତ୍ତିତ ମୌଳିକ ଶିକ୍ଷାକୁ ଉପଯୁକ୍ତ କାଳଜୟୀ ଶିକ୍ଷା କହିଲେ ଅତ୍ୟୁକ୍ତି ହେବ ନାହିଁ । ଉକ୍ତ ଶିକ୍ଷା ମାନବ ଜାତିର ସର୍ବାଙ୍ଗୀନ ବିକାଶ କରିବା ସଂଗେ ସଂଗେ ମନୁଷ୍ୟ ରହିବା ପାଇଁ ତା'ର ମୁଖ୍ୟତଃ ତିନୋଟି ମୌଳିକ ଜିନିଷ ଖାଦ୍ୟ, ବସ୍ତ୍ର ଓ ବାସଗୃହ ଯୋଗାଇ ଦେବାରେ ସମର୍ଥ ହୋଇଥାଏ । ଏହା ବ୍ୟତୀତ ମାନସିକ, ଶାରୀରିକ ଓ ଆଧ୍ୟାତ୍ମିକ ଏହି ତ୍ରିବିଧ ବିଭାବର ସମ୍ୟକ ବିକାଶ ବା ଉତ୍କର୍ଷ ସାଧନ ସର୍ବତୋଭାବେ ସମ୍ପନ୍ନ କରିଥାଏ ।

ଉର୍ବର ମାଟିରେ ବୀଜ ବପନ କରିବା, ଏହାର ଅଙ୍କୁରୋଦ୍‌ଗମ ପାଇଁ ପାଣି, ସାର, ଉତ୍ତାପ ଯୋଗାଇଦେବା, ଗଛକୁ ସୁରକ୍ଷିତ ରଖିବା ପାଇଁ ଚାରିଆଡ଼େ ବାଡ଼ ଦେବା- ଏସବୁ ମିଶିଗଲେ ଯାଇ କ୍ଷୁଦ୍ର ମଂକି ସମୟ କ୍ରମେ ମହାଦ୍ରୁମରେ ପରିଣତ ହୁଏ । ଯଦି ପଥର ଉପରେ ମଂଜି ବୁଣାଯାଏ ତାହାହେଲେ କ'ଣ ବୃକ୍ଷ ହେବ ?

ସର୍ବଦା ବିଦ୍ୟାଳୟକୁ ହିଁ ପଣ୍ଡିତ ଓ ବିଦ୍ୱାନ୍‌ମାନେ ଛାତ୍ରମାନଙ୍କର ଉତ୍ତମ ତପସ୍ୟା କ୍ଷେତ୍ର ବୋଲି କହି ଥାଆନ୍ତି, ସେହି ତପସ୍ୟା ଦ୍ୱାରା ଇହକାଳରେ ଯେପରି ମଂଗଳ ହୁଏ, ପରକାଳରେ ମଧ୍ୟ ସେହିପରି ମଂଗଳ ହୋଇଥାଏ ।

ଯଦି ପିଲାଟିକୁ ଆଦର୍ଶ ମଣିଷ ଭାବରେ ଗଢ଼ାନଗଲା, ତେବେ ସେ ଦୁଷ୍ଟ ହିଂସ୍ର ଅସାମାଜିକ ହେବାରେ ବିଚିତ୍ର କ'ଣ ?

ପ୍ରତ୍ୟେକ ଶିଶୁ ଭିତରେ ଦିବ୍ୟ ଗୁଣ ରହିଛି। ଉପଯୁକ୍ତ ଶିକ୍ଷକଙ୍କ ଅଭାବରୁ ବିକଶିତ ହୋଇ ପାରୁନାହିଁ କିମ୍ବା ସୌରଭ ବିତରତା କରିବାର ସାମର୍ଥ୍ୟ ହରାଇ ବସୁଛି।

ଗୁରୁଙ୍କ ଚ଼ରିତ୍ର ଆଦର୍ଶ। ସେ ଯାହା ଶିକ୍ଷା ଦିଅନ୍ତି, ତାକୁ ନିଜେ ପାଳନ କରି ଦେଖାଇ ଦିଅନ୍ତି ଯେ, ଜଗତରେ କୌଣସି ଜିନିଷ ଅପ୍ରାପ୍ୟ ଓ ଅସାଧ୍ୟ ନୁହେଁ।

ଗାନ୍ଧିଜୀଙ୍କ ଆଶ୍ରମରେ ତିନୋଟି ମାଙ୍କଡ଼ ଥିଲେ। ସେମାନଙ୍କ ନାମ : ମିଜାରୁ, ମାକାର ଓ ମାକାଜାରୁ। ତାଙ୍କର ଉଚ୍ଚକୋଟୀର ଚ଼ିନ୍ତା ଏବଂ ମାନବ ଜାତିକୁ ସତତ ଶିକ୍ଷାଦେବା। ଗୋଟିଏ ମାଙ୍କଡ଼ କହେ ଖରାପ କଥା କହିବି ନାହିଁ, ଅନ୍ୟ ମାଙ୍କଡ଼ଟି କହେ ଖରାପ କଥା ଦେଖିବି ନାହିଁ। ଶେଷ ମାଙ୍କଡ଼ଟି କହେ ଖରାପ କଥା ଶୁଣିବିନାହିଁ। ପ୍ରାଚ଼ୀନ ଯୁଗର ଋଷିମାନେ ଘୋଷଣା କରିଛନ୍ତି ମନୁଷ୍ୟ 'ଅମୃତସ୍ୟ ପୁତ୍ରାଃ'। କିନ୍ତୁ ମନୁଷ୍ୟ ପଶୁଠାରୁ ନୀଚ଼ କର୍ମ କରି କୃତ୍ୟ କୃତ୍ୟ ହେବାରେ ପରମ ଗୌରବ ଓ ପରମ ସୌଭାଗ୍ୟ ମନେ କରୁଛି। କର୍ପୂର ନ ଥିବା କନାକୁ ନାକରେ ଗେଞ୍ଜି ଲାଙ୍ଗୁଳବିହୀନ ପଶୁ ସାଜି ନିଜକୁ ଶ୍ରେଷ୍ଠଜୀବ କହି- ଡିଣ୍ଡିମ ବଜାଉଛି।

ଗାନ୍ଧିଜୀଙ୍କ ଆଶ୍ରମର ମର୍କଟ ତିନୋଟିର ମହତ୍ ଉଦ୍ଦେଶ୍ୟ ଆଜିର ଛାତ୍ର ସମାଜର ଶିକ୍ଷଣୀୟ଼ ଏବଂ ପ୍ରଣିଧାନର ବିଷୟ଼ ନୁହେଁ କି ?

ଇତର ଜୀବ ଇତର ପ୍ରାଣୀ ଗୁଣ ଦ୍ୱାରା ସମ୍ମାନ ପାଇଥାଏ। ପଙ୍କରୁ ଜାତ ହୋଇ ସୁଗୁଣ ବଳରେ ପଦ୍ମ, ଭଗବାନଙ୍କ ନେତ୍ର, ହସ୍ତ ଓ ପାଦ ସହ ଯୁକ୍ତ ହୋଇ ପାରିଛି।

ପ୍ରାଚ଼ୀନ ଶିକ୍ଷା (ଚ଼ିରାଚ଼ରିତ) ପିଲାମାନଙ୍କୁ ଶିକ୍ଷା ପ୍ରାପ୍ତି ପରେ ମୁଖ୍ୟତଃ ପଙ୍ଗୁ, ଅଥର୍ବ ସ୍ଥାଣୁ ଓ କର୍ମକୁଣ୍ଠ କରି ଗଢ଼ିବାରେ ସହାୟ଼କ ହୋଇଅଛି। ପାଶ୍ଚାତ୍ୟ ଶିକ୍ଷା ସମଗ୍ର ସମାଜକୁ ଗ୍ରାସ କରିବାରେ ସଂକଳ୍ପବଦ୍ଧ। ପିଲାମାନେ ଓଡ଼ିଆ ପରିବର୍ତ୍ତେ ଇଂରାଜୀରେ ଦି'ପଦ କଥାବାର୍ତ୍ତା କରିବାକୁ ଅଧିକ ଆଗ୍ରହ ପ୍ରକାଶ କରୁଛନ୍ତି। ନିଜର ମା'କୁ ମା' କହିବାରେ ହୀନ, ନୀଚ଼ ଓ ଘୃଣା ଭାବ ପ୍ରକାଶ କରିବାରେ ତ୍ରୁଟି କରୁନାହାନ୍ତି। ଭାରତୀୟ଼ ସଭ୍ୟତା ଏବଂ ସଂସ୍କୃତି କ୍ରମଶଃ ଲୋପ ପାଇବାରେ ଲାଗିଛି। ଚ଼ାରିକାନ୍ଥ ଭିତରେ ଅଟ୍ଟାଳିକା ମଧ୍ୟରେ ଶୁଆ ହରିନାମ ଜପିଲା ଭଳି ବିଦ୍ୟାଧ୍ୟୟ଼ନ କରିବାକୁ ଭଲ ଏବଂ ଉଚ଼ିତ ମନେ କରାଯାଉଛି। ଛାତ୍ରଛାତ୍ରୀମାନେ ପୂରାପୂରି ପୁସ୍ତକ କୀଟ ହୋଇ ଗଲେଣି କହିଲେ ଆଦୌ ଭୁଲ ହେବ ନାହିଁ। ଏବେ ଚ଼ାକିରି ବଞ୍ଚିବାର ଏକମାତ୍ର ଅବଲମ୍ବନ କିମ୍ବା ସର୍ବସ୍ୱ ହୋଇଯାଇଛି ବୋଲି କୁହାଗଲେ ମୋଟେ ଅପଳାପ ହେବ ନାହିଁ। କିନ୍ତୁ ମୌଳିକ ଶିକ୍ଷା ପିଲାମାନଙ୍କୁ ଉପଯୁକ୍ତ ଭାବେ ଗଠନ କରିବାରେ

ବ୍ରତୀ । ମାନସିକ, ଶାରୀରିକ ଓ ଆଧ୍ୟାତ୍ମିକ ଏହି ତ୍ରିବଧ ଦିଗରେ ସମ୍ୟକ୍ ବିକାଶ କରିବାରେ ଦୃଢ଼ ସଂକଳ୍ପବଦ୍ଧ । ଏହା ଆତ୍ମନିର୍ଭରଶୀଳ ହେବା ନିମିତ୍ତ ସତତ ପ୍ରେରଣା, ଉତ୍ସାହ ଓ ଉଦ୍ଦୀପନା ଯୋଗାଇବା ସଂଗେ ସଂଗେ ମଣିଷ ତିଆରି କରୁଅଛି । ଗୁରୁଛାତ୍ରଙ୍କ ମଧ୍ୟରେ ପବିତ୍ର ସୁସଂପର୍କର ରଜ୍ଜୁ ଅତୁଟ ଓ ଅଚ୍ଛିନ୍ନ । ସେମାନଙ୍କ ମଧ୍ୟରେ ସ୍ନେହ ଶ୍ରଦ୍ଧା ଓ ବାତ୍ସଲ୍ୟ ପ୍ରେମ ଅଧିକ ପ୍ରକାଶ ପାଇଥାଏ, ଯାହା ଜୀବନ ବିଦ୍ୟାଳୟରେ ପରିଦୃଷ୍ଟ ହେଉଥିବାର ପ୍ରତ୍ୟେକ ଛାତ୍ର ଅନୁଭବ କରିଥିଲେ ।

ଗୁରୁ ସେହି ବ୍ୟକ୍ତି ଯିଏ ଅଜ୍ଞାନ ଅନ୍ଧକାର ଦୂର କରି ପାରିବେ । ଟର୍ଚ୍ଚରେ ଯଦି ବେଟାରୀ ନାହିଁ ତାହାକୁ ଟର୍ଚ୍ଚ କି ଯଥାର୍ଥତା ଅଛି ? ଦୂରବୀକ୍ଷଣ ଯନ୍ତ୍ରରେ ଦୂରର ଜିନିଷ ନିକଟତର ହୋଇ ଦେଖାଯାଏ । ସେହିପରି ଯଥାର୍ଥ ଶିକ୍ଷକ ଜୀବନ ମାର୍ଗ ଦେଖାଇ ଦେଇ ପାରନ୍ତି । ପ୍ରାଚୀନ କାଳରେ ସତ୍ୟାନୁସନ୍ଧିତ୍ସୁ ଋଷିମାନେ ଛାତ୍ରଙ୍କୁ ସତ୍ୟ ଦେଖାଇ ଦେଇ ପାରୁଥିଲେ ।

ସ୍ୱର ଉଠିଲାଣି ଓଡ଼ିଆ ଭାଷା ଓ ସଂସ୍କୃତିର ସୁରକ୍ଷା କରାଯାଉ । ଏବେ ଇଂରାଜୀ ଭାଷାପ୍ରତି ଅତ୍ୟଧିକ ମୋହ ପ୍ରକାଶ ପାଉଛି । ଇଂରାଜୀ ଶିକ୍ଷା ଓ ଇଂରାଜୀ ମାଧ୍ୟମ ଶିକ୍ଷା ପିଲାକୁ ତିନି ଚାରିବର୍ଷ ହେଲାଠାରୁ ଆରମ୍ଭ କରାଯାଉଛି । ଆମେ ଇଂରାଜୀ ପଢୁଆଙ୍କୁ ଯେତିକି ସମ୍ମାନ ଦେଉଛୁ ମାତୃଭାଷା ମାଧ୍ୟମରେ ପଢୁଥିବା ପିଲାଙ୍କୁ ସେତିକି ସମ୍ମାନ କରିବାକୁ ଶିଖିବା ଉଚିତ ।

ଆଗାମୀ ଭାରତର ଭବିଷ୍ୟତ ଆମ ଉପରେ ହିଁ ନିର୍ଭର କରୁଛି । ଭାରତ ମା' ଆମରି ପ୍ରତୀକ୍ଷାରେ ଅଛି । ଉଠ, ଜାଗ ଏବଂ ଭାରତ ମା'କୁ ତା'ର ଚିରନ୍ତନ ସିଂହାସନରେ ଗୌରବର ସହିତ ଅଧିଷ୍ଠିତ ହେବା ପାଇଁ ସମସ୍ତ ସୁବ୍ୟବସ୍ଥା କର ।



ସଂକଳକଙ୍କ ହଷ୍ଟେଲ ଭଗ୍ନାବଶେଷ ଛବି

# ଜୀବନ ବିଦ୍ୟାଳୟ-ଚ଼ଂପତିମୁଣ୍ଡା

## ନନିଗୋପାଲ୍ ପାଲିତ୍ (ପ୍ରାକ୍ତନ ଛାତ୍ର)

ଚ଼ଂପତିମୁଣ୍ଡା ଜୀବନ ବିଦ୍ୟାଳୟର ଜନ୍ମ ୧୯୫୪ ମସିହା ଅଗଷ୍ଟ ମାସ ଛବିଶ ତାରିଖ ଏକ ବର୍ଷଣମୁଖର ଦିବସରେ। ତତ୍‌କାଳୀନ ଅବିଭକ୍ତ ଢ଼େଙ୍କାନାଳ ଜିଲ୍ଲା (ବର୍ତ୍ତମାନ ଅନଗୁଳ ଜିଲ୍ଲା)ର ସଦର ମହକୁମା ଅନଗୁଳ ଟାଉନ୍‌ଠାରୁ ଏହି ସ୍ଥାନର ଦୂରତା ପ୍ରାୟ ଆଠ ମାଇଲ୍ ବା ବାର କିଲୋମିଟର ମଧ୍ୟରେ। ଏକ ନିବିଡ଼ ବନ ପର୍ବତ ଘେରା ଅଞ୍ଚଳରେ ଏହା ଅବସ୍ଥିତ।

ସେଦିନ ଯେଉଁମାନେ ଆମ ରାଜ୍ୟରେ ଏକ ଆଦର୍ଶ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିବାର ପରିକଳ୍ପନା କରିଥିଲେ ଓ ସ୍ୱପ୍ନ ଦେଖିଥିଲେ ସେମାନେ ସମସ୍ତେ ଥିଲେ ମହାମାନବ ମହାତ୍ମାଗାନ୍ଧି, ବିଶ୍ୱକବି ରବୀନ୍ଦ୍ରନାଥଙ୍କର ଅନୁଗତ ଶିଷ୍ୟ ଆଉ ଶିଷ୍ୟା। ସେମାନେ ପ୍ରତ୍ୟେକେ ଥିଲେ ଭାରତ ସ୍ୱାଧୀନତା ସଂଗ୍ରାମର ତ୍ୟାଗନିଷ୍ଠ ସଂଗ୍ରାମୀ ସୈନିକ। ସେମାନେ ପ୍ରତ୍ୟେକ ଗାନ୍ଧିଜୀଙ୍କ ମୌଳିକ ଶିକ୍ଷା, ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଶାନ୍ତି ନିକେତନ ଶିକ୍ଷାପଦ୍ଧତି ସହିତ ଅତି ଓତଃପ୍ରୋତଃ ଭାବେ ଜଡ଼ିତ ଥିଲେ।

ପ୍ରଫେସର ୰ ଶତ୍ରୁଘ୍ନ ନାଥଙ୍କ ଭାଷାରେ ପୂଜ୍ୟ ବାପି (ନବକୃଷ୍ଣ ଚୌଧୁରୀ)ଙ୍କ କଳ୍ପନା, ପୂଜ୍ୟା ନୁମା (ମାଳତୀ ଚୌଧୁରୀ)ଙ୍କର ପ୍ରେରଣା ଓ ଯୁବକ ଶିକ୍ଷାବିତ୍ ଚିତ୍ତଭାଇ (ଚିତ୍ତରଞ୍ଜନ ଦାସ)ଙ୍କର ସାଧନା ଫଳରେ ଗଢ଼ିଉଠିଥିଲା ଚ଼ଂପତିମୁଣ୍ଡା ଜୀବନ ବିଦ୍ୟାଳୟ। ଚିତ୍ତରଞ୍ଜନ ଦାସ ବିଶ୍ୱଭାରତୀ ଶାନ୍ତି ନିକେତନ ଶିକ୍ଷା ସମାପ୍ତି ପରେ ପାଶ୍ଚାତ୍ୟ ଦେଶମାନଙ୍କରେ ଉଚ୍ଚଶିକ୍ଷା ଲାଭ କରି ନିଜ ରାଜ୍ୟକୁ ଫେରି ଆସିଥିଲେ ଶିକ୍ଷାକ୍ଷେତ୍ରରେ ନୂତନ କିଛି କରିବା ଉଦ୍ଦେଶ୍ୟ ନେଇ।

ଗାନ୍ଧିଜୀଙ୍କର ନୈତାଲିମ୍ ବା ମୌଳିକ ଶିକ୍ଷାପଦ୍ଧତି, ରବୀନ୍ଦ୍ରନାଥଙ୍କ ଶାନ୍ତି ନିକେତନ ଶିକ୍ଷାପଦ୍ଧତି ଓ ସତ୍ୟବାଦୀ ବନ ବିଦ୍ୟାଳୟର ଶିକ୍ଷା ପଦ୍ଧତିକୁ ଏକତ୍ର ମିଶାଇ ମନ୍ଥନ କରିବା ସହିତ ପାଶ୍ଚାତ୍ୟ ଶିକ୍ଷାନୀତିର କିଛି ଆଦର୍ଶକୁ ମିଳାଇ ଏକ ସ୍ୱତନ୍ତ୍ର ନୂତନ ଧରଣର ଶିକ୍ଷାନୀତି ପରିବେଷଣ କରିବା ଥିଲା ଚ଼ଂପତିମୁଣ୍ଡା ଜୀବନ ବିଦ୍ୟାଳୟର ଅସଲ ଲକ୍ଷ୍ୟ।

ଯେଉଁମାନେ ଶ୍ରୀ ଚିତ୍ତରଞ୍ଜନ ଦାସଙ୍କର "ଶିଳା ଓ ଶାଳଗ୍ରାମ" ପୁସ୍ତକସ୍ଥ "ଓଡ଼ିଶାରେ ଆସ୍ଥାନ କାହିଁ ?" ଶୀର୍ଷକ ପ୍ରବନ୍ଧଟି ପାଠ କରିଥିବେ ବା କରିବେ ସେମାନଙ୍କ ନିକଟରେ ଚଂପତିମୁଣ୍ଡା ଜୀବନ ବିଦ୍ୟାଳୟର ଅସଲ ଉଦ୍ଦେଶ୍ୟ ଅଜଣା ହୋଇ ରହିନଥିବ ବା ରହିବ ନାହିଁ । ଏହାକୁ ଅଧିକ ସ୍ପଷ୍ଟ କରିବା ଉଦ୍ଦେଶ୍ୟରେ ଲେଖକ ଶ୍ରୀଦାସଙ୍କ ସଂଶିତ ପ୍ରବନ୍ଧ ମଧ୍ୟରୁ କେତେକାଂଶ ଉଦ୍ଧାର କରିବା ଉଚିତ ମନେ କରୁଅଛି ।

"ସତ୍ୟବାଦୀ ବକୁଳ ବନ ଦିନେ ଓଡ଼ିଆ ଜାତୀୟତା ଓ ସଂସ୍କୃତିର କେନ୍ଦ୍ରପୀଠ ଥିଲା । ସେଠାରେ ଦଳେ ଯୁବକ ଆଦର୍ଶ ଶିକ୍ଷା ଓ ଜାତୀୟତାର ସ୍ୱପ୍ନ ଦେଖୁଥିଲେ । ପ୍ରତିଦିନର ସାଧନାମୟ ଜୀବନରେ ସେହି ସବୁ ସ୍ୱପ୍ନରେ ଜୀବନ ପ୍ରତିଷ୍ଠା କରିବାର ଉଦ୍ୟମ କରିଥିଲେ ।"

x x x x x

"ଜାତୀୟତା, ଦେଶସେବା, ଶିକ୍ଷା, ସାହିତ୍ୟ ଓ ସଂସ୍କୃତି ସବୁ କ୍ଷେତ୍ରରେ ସତ୍ୟବାଦୀ ବନ ବିଦ୍ୟାଳୟ ଥିଲା ଆଦର୍ଶ ।"

x x x x x

"ଶିକ୍ଷା, ସାହିତ୍ୟ ଓ ସଂସ୍କୃତି ପ୍ରଧାନତଃ ଏହି ତିନୋଟି କ୍ଷେତ୍ରକୁ ନେଇ ଏକ ଆସ୍ଥାନ ତିଆରି ହେବ ।"

x x x x x

ପ୍ରାଚୀନ ଭାରତର ଉପବନରୁ ଆଜିଯାଏ ଏକ ସ୍ୱତନ୍ତ୍ର ଶିକ୍ଷା ପରମ୍ପରା ରହି ଆସିଛି, ସଂସାରର ନାନା ଦେଶରେ ନାନା ଶିକ୍ଷାବିତ୍ ନୂତନ ଶିକ୍ଷା ଉଦ୍‌ଭାବନ କରି ମଣିଷ ଗଢ଼ିବାର ନବନବ ସମ୍ଭାବନାର ସୂଚନା ଦେଇ ଆସିଛନ୍ତି । ଏ ସମସ୍ତ ଉଦ୍ୟମରୁ ସାର ନେଇ ଆମକୁ ଆମର ପଦ୍ଧତିଟିଏ ବାହାର କରିବାକୁ ପଡ଼ିବ ।"

x x x x x

"ଆମ ବିଦ୍ୟାଳୟରୁ ଯେଉଁମାନେ ବାହାରିବେ ସେମାନେ ଆମ ସଂସ୍କୃତିର ଦାୟାଦ ହୋଇ ବାହାରିବେ । ଖାଲି ଭୋଗ କରିବାର ଦାୟାଦ ନୁହେଁ । ସବୁ ପ୍ରକାର ତ୍ୟାଗ ସ୍ୱୀକାର କରି ନୂଆ ସୃଷ୍ଟି କରିବାର ଶକ୍ତି-ମନ୍ତ୍ର ଦାୟାଦ ହୋଇ ବାହାରିବେ । ସେମାନେ ସେବାକୁ ଜୀବନର ଆଦର୍ଶ କରିବେ ।"

[ ପୁସ୍ତକ-ଶିଳା ଓ ଶାଳଗ୍ରାମ- ପ୍ରବନ୍ଧ-ଓଡ଼ିଶାରେ ଆସ୍ଥାନ କାହିଁ ?]

ମୋଟାମୋଟି ଭାବେ କହିବାକୁ ଗଲେ ଚଂପତିମୁଣ୍ଡା ଜୀବନ ବିଦ୍ୟାଳୟରେ ଏକ ନୂତନ ଧରଣର ମଣିଷ ଗଢ଼ିବା ପାଇଁ ଏକ ଉତ୍ତମ ମଣିଷ ତିଆରି କାରଖାନା ଗଢ଼ି ତୋଳିବାର ଉଦ୍ଦାମ ଉଦ୍ୟମ ଆରମ୍ଭ ହୋଇଥିଲା ମାତ୍ର, ଯେଉଁମାନଙ୍କ ମଧ୍ୟରେ ଶ୍ରଦ୍ଧା, ସ୍ୱାଭିମାନ, ଦେଶାତ୍ମବୋଧ, ତ୍ୟାଗନିଷ୍ଠ ସାଧନାମୟ, ସଂସ୍କୃତିସଂପନ୍ନ ଓ ମାନବିକତାର ପରିପ୍ରକାଶ ହେବ।

ଜୀବନ ବିଦ୍ୟାଳୟରେ ଅଧ୍ୟୟନ, ଅଧ୍ୟବସାୟ, କର୍ତ୍ତବ୍ୟ ନିଷ୍ଠା ଉଚ୍ଚ ମନନଶୀଳତା ଓ ବିଚାର ସ୍ୱାବଲମ୍ବନ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଥିଲା। ଚଂପତିମୁଣ୍ଡା ଜୀବନ ବିଦ୍ୟାଳୟର ଛାତ୍ର ଛାତ୍ରୀମାନେ ନିର୍ଭୀକ, ସ୍ପଷ୍ଟବାଦୀ ଓ ସ୍ୱାଧୀନଚେତା ହେବାକୁ ଯଥେଷ୍ଟ ସୁଯୋଗ ପାଉଥିଲେ।

କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ ବର୍ତ୍ତମାନ ମଧ୍ୟ ଚଂପତିମୁଣ୍ଡା ଜୀବନ ବିଦ୍ୟାଳୟର ଛାତ୍ର ଛାତ୍ରୀମାନେ ଯିଏ ଯେଉଁ କ୍ଷେତ୍ରରେ ରହିଛନ୍ତି ବା ଆଗରୁ ଥିଲେ ସେମାନଙ୍କ ମଧ୍ୟରେ ଏକ ସ୍ୱାତଂତ୍ର୍ୟ ପରିଲକ୍ଷିତ ହେଉଛି ନିଶ୍ଚୟ।

ପାଶ୍ଚାତ୍ୟ ଶିକ୍ଷାବିତ୍ ଗ୍ରୋଣ୍ଟ୍ ଉଇଚ୍ ତାଙ୍କ ଦେଶର ବିଦ୍ୟାଳୟ ଗୁଡ଼ିକୁ ଡ଼େଡ୍ ସ୍କୁଲ ବା ମୃତ ବିଦ୍ୟାଳୟ ବୋଲି ଘୋଷଣା କରିବା ସହିତ ଏକ ଜୀବନ ବିଦ୍ୟାଳୟର ପରିକଳ୍ପନା କରିଥିଲେ। ବୋଧହୁଏ ସେହି କଥାକୁ ଲକ୍ଷ୍ୟ ରଖି ଚଂପତିମୁଣ୍ଡା ଉତ୍ତର ମୌଳିକ ବିଦ୍ୟାଳୟ ବା ପୋଷ୍ଟ୍ ବେସିକ୍ ସ୍କୁଲ ବୋଲି ନାମ ନ ଦେଇ ଏହାର ନାମକରଣ ହେଲା ଜୀବନ ବିଦ୍ୟାଳୟ। ଏକ ନୂତନ ଜୀବନ ଗଠନର ସ୍ୱପ୍ନ ନେଇ ଏହା ରୂପ ପରିଗ୍ରହଣ କଲା।

## ସଫଳ ରୂପାୟନରେ ପ୍ରତିବନ୍ଧକ

ଅତ୍ୟନ୍ତ ସନ୍ତର୍ପଣର ସହିତ ସ୍ୱୀକାର କରିବାକୁ ପଡ଼ିବ ଯେ ଚଂପତିମୁଣ୍ଡା ଜୀବନ ବିଦ୍ୟାଳୟଟି ଯେଉଁ ଲକ୍ଷ୍ୟ ନେଇ ପ୍ରତିଷ୍ଠିତ ହୋଇଥିଲା, ତାହା ସଂପୂର୍ଣ୍ଣ ରୂପାୟିତ ହୋଇ ପାରିଲା ନାହିଁ। ଏହା ସଂପୂର୍ଣ୍ଣ ବିକଶିତ ହେବା ବହୁ ପୂର୍ବରୁ ଏକ ଦର ବିକଶିତ ଅବସ୍ଥାରେ କାଳଚକ୍ରର କରାଳ ଝଞ୍ଜିରେ ଅକାଳରେ ମଉଳି ଗଲା।

ଜୀବନ ବିଦ୍ୟାଳୟର ଯେଉଁ ସୁଚିନ୍ତିତ ଓ ଉନ୍ନତ ପାଠ୍ୟକ୍ରମ ପ୍ରସ୍ତୁତ କରାଯାଇଥିଲା, ତାହାକୁ କାର୍ଯ୍ୟକାରୀ କରାଯାଇ ପାରିଲା ନାହିଁ। ସଫଳ ରୂପାୟନରେ ଦେଖା ଦେଇଥିବା କେତେଗୁଡ଼ିଏ ମୁଖ୍ୟ ପ୍ରତିବନ୍ଧକ ସଂପର୍କରେ ଏଠାରେ ଉଲ୍ଲେଖ କରିବା ଅସମୀଚିନ ହେବ ନାହିଁ।

**ଅବସ୍ଥିତି :-** ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ଚଂପତିମୁଣ୍ଡା ଜୀବନ ବିଦ୍ୟାଳୟ ଅନଗୁଳ ଟାଉନ୍‌ଠାରୁ ପ୍ରାୟ ଆଠ ମାଇଲ୍ ବା ବାର କିଲୋମିଟର ଦୂରରେ ପୁରୁଣା କଟକ-ସମ୍ବଲପୁର ରାସ୍ତାକଡ଼ରେ ଅବସ୍ଥିତ । ସେହି ଅଚଳ ରାସ୍ତାରେ ଚଂପତିମୁଣ୍ଡାର ପ୍ରାୟ ଏକ କିଲୋମିଟର ପୂର୍ବରୁ ତୁମୁଣୀ, ରଗୁଡ଼ିଆ ପଡ଼ା ନିକଟରେ "ମାଟିଳିଆ" ନାମକ ଏକ ପାହାଡ଼ିଆ ନଦୀ ପ୍ରବାହିତ ହେଉଅଛି । ଏହି ନଦୀରେ କୌଣସି ସେତୁ ବା ପୋଲ ନିର୍ମିତ ହୋଇ ପାରି ନଥିବାରୁ ବର୍ଷା କାଳରେ ଯାତାୟତରେ ବହୁ ଅସୁବିଧା ଦେଖା ଦେଉଥିଲା । ନିକଟରେ କୌଣସି ହାଟ, ବଜାର, ଡ଼ାକ୍ତରଖାନା, ଇତ୍ୟାଦି ନ ଥିଲା ।

**ଶିକ୍ଷକ ସମସ୍ୟା :-** ଏହିପରି ଏକ ଯୋଗା ଯୋଗହୀନ, ସହରଠାରୁ ଦୂର ସ୍ଥାନ ହୋଇଥିବାରୁ ସେଠାରେ ରହିବାକୁ ବିଦ୍ୟାଳୟ ନିମିତ୍ତ ଆବଶ୍ୟକ ଶିକ୍ଷକ ମିଳୁନଥିଲେ । ଯେଉଁମାନେ ବା ପ୍ରଭାବିତ ହୋଇ ଚାଲି ଆସୁଥିଲେ ସେମାନେ ଗୋଟିଏ ବର୍ଷ ବା ତାହା ପୂର୍ବରୁ ସେଠାରୁ ବିଦାୟ ନେଇ ଅନ୍ୟତ୍ର ସରକାରୀ କ୍ଷେତ୍ରକୁ ଚାଲି ଯାଉଥିଲେ । ଆଜିକାଲି ପରି ସେତେବେଳେ ବେକାରୀ ସମସ୍ୟା ଏତେ ଉତ୍କଟ ହୋଇନଥିଲା । ତେଣୁ ତାଲିମପ୍ରାପ୍ତ ଉଚ୍ଚ ଡ଼ିଗ୍ରୀଧାରୀ ଶିକ୍ଷକମାନେ ଏପରି ଏକ ବେସରକାରୀ ଅନୁଷ୍ଠାନରେ ପଡ଼ି ରହିବାକୁ ପସନ୍ଦ କରୁନଥିଲେ । ସେଠାରେ ତ ଟିଉସନ କରିବାର ପ୍ରଶ୍ନ ନଥିଲା ।

**ଗୃହ ସମସ୍ୟା:-** ଜୀବନ ବିଦ୍ୟାଳୟ ଏକ ବେସରକାରୀ ଶିକ୍ଷାନୁଷ୍ଠାନ ହୋଇଥିବାରୁ ଏହାର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିଲା । ତେଣୁ ଆବଶ୍ୟକ ଶ୍ରେଣୀଗୃହ, ଛାତ୍ରାବାସ, ଉନ୍ନତ ବିଜ୍ଞାନଗାର ଓ ଉନ୍ନତ ପାଠାଗାର ଗୃହ ନ ଥିଲା । ବିଦ୍ୟାଳୟରେ ଅବଶ୍ୟ ଅନେକ ଉନ୍ନତ ଧରଣର ବିଜ୍ଞାନ ଉପକରଣ ଥିଲେ ମଧ୍ୟ ତାହାର ପ୍ରଦର୍ଶନ ନିମିତ୍ତ ପ୍ରକୃଷ୍ଟ ବିଜ୍ଞାନାଗାର ଗୃହଟିଏ ନଥିଲା । ସେହିପରି ପାଠାଗାରରେ ସାଢ଼େ ତିନି ହଜାରରୁ ଅଧିକ ସଂଖ୍ୟାରେ ଥିବା ଓଡ଼ିଆ, ବଙ୍ଗଳା, ହିନ୍ଦୀ, ସଂସ୍କୃତ ଓ ଇଂରାଜୀ ଭାଷାରେ ବହୁ ଉପାଦେୟ ପୁସ୍ତକ ରହିଥିଲେ ମଧ୍ୟ ବସି ଅଧ୍ୟୟନ କରିବା ନିମିତ୍ତ ପ୍ରଶସ୍ତ ପଠନାଗାର ବା ରିଡ଼ିଙ୍ଗ୍ ରୁମ୍‌ର ଅଭାବ ରହିଥିଲା ।

ଏହିସବୁ ଅଭାବ ଅସୁବିଧା ସହିତ ସରକାରୀ କର୍ମକର୍ତ୍ତାମାନଙ୍କର ଚରମ ଉଦାସୀନତା ଓ ବୈମାତୃକ ମନୋଭାବ ବିଶେଷ କରି ତତ୍କାଳୀନ ଶିକ୍ଷା ବିଭାଗ ନିର୍ଦ୍ଦେଶକ ବାମାଚରଣ ଦାସଙ୍କର କ୍ରୁର ପ୍ରତିକ୍ରିୟାଶୀଳତାହିଁ ବିଦ୍ୟାଳୟର ସ୍ୱଚ୍ଛଳ ବିକାଶରେ ଅନ୍ତରାୟ ହେଲା ।

ଅପ୍ରିୟ ସତ୍ୟ ହେଲେ ମଧ୍ୟ ସ୍ୱୀକାର କରିବାକୁ ପଡ଼ିବ ଯେ ପରିଚାଳକ

ମାନଙ୍କର ଆନ୍ତରିକ ନିଷ୍ଠାର ଅଭାବ ମଧ୍ୟ ଅନୁଷ୍ଠାନ ଅଧୋପତନର ଅନ୍ୟତମ କାରଣ ହେଲା ।

ବିଦ୍ୟାଳୟର ଜନ୍ମ ୧୯୫୪ ମସିହାରେ ୧୯୫୮ ମସିହା ପର୍ଯ୍ୟନ୍ତ ଏହାର ଶୈଶବାବସ୍ଥାରେ ଯାହା କିଛି ହୋଇ ଆସୁଥିଲା ୧୯୫୯ ମସିହାରୁ ଏହାର ଦ୍ରୁତ ଅବକ୍ଷୟ ଆରମ୍ଭ ହୋଇଯାଇଥିଲା । ୧୯୫୮ ମସିହା ଗ୍ରୀଷ୍ମାବକାଶ ମଧ୍ୟରେ ପ୍ରଧାନ ଶିକ୍ଷକ ଶ୍ରୀ ଚିତ୍ତରଞ୍ଜନ ଦାସ ବିଦାୟ ନେବାପରେ ଅନୁଷ୍ଠାନ ତାହାର ପୂର୍ବ ଗୌରବ ହରାଇ ବସିଲା ।

ଦାସେ ଆପଣେ ଓ ସତ୍ୟବାଦୀ ବନ ବିଦ୍ୟାଳୟର ପଞ୍ଚସଖା ଅନ୍ୟତ୍ର କାର୍ଯ୍ୟରେ ବ୍ୟାପୃତ ରହିବା ଫଳରେ ସତ୍ୟବାଦୀ ବନ ବିଦ୍ୟାଳୟର ଯେଉଁ ଅବସ୍ଥା ହେଲା । ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଦେହାବସାନ ପରେ ବିଶ୍ୱ-ଭାରତୀ ଶାନ୍ତି ନିକେତନର ଯେଉଁ ଅବସ୍ଥା ହେଲା ଚିତ୍ତରଞ୍ଜନ ଦାସଙ୍କ ବିଦାୟ ପରେ ଚଂପତିମୁଣ୍ଡା ଜୀବନ ବିଦ୍ୟାଳୟର ଅବସ୍ଥା ମଧ୍ୟ ତଦନୁରୂପ ହେଲା କହିଲେ ଭୁଲ ହେବ ନାହିଁ ।

ମାନବ ଜୀବନରେ ଉତ୍‌ଥାନ ପତନ ପରି ଅନୁଷ୍ଠାନ ଜୀବନରେ ମଧ୍ୟ ଉତ୍‌ଥାନ ପତନ ବିଧିର ବିଧାନ, ତାକୁ ଲଂଘିବ କିଏ ?

## ବର୍ତ୍ତମାନ ସମୟରେ ଜୀବନ ବିଦ୍ୟାଳୟ ଆଦର୍ଶର ଆବଶ୍ୟକତା

ମନରେ ସ୍ୱତଃ ପ୍ରଶ୍ନ ଉଠେ ଯେ ବର୍ତ୍ତମାନ ଯୁଗରେ ଚଂପତିମୁଣ୍ଡା ଜୀବନ ବିଦ୍ୟାଳୟ ଶକ୍ଷାନୀତିର ଆବଶ୍ୟକତା ଅଛି କି ? କିମ୍ବା ଏହାକୁ ବର୍ତ୍ତମାନ ସମୟରେ କାର୍ଯ୍ୟକାରୀ କରାଯାଇ ପାରିବ କି ?

ଚଂପତିମୁଣ୍ଡା ଜୀବନ ବିଦ୍ୟାଳୟର ଯେଉଁ ମହନୀୟ ଉଦ୍ଦେଶ୍ୟ ବା ଉନ୍ନତ ଲକ୍ଷ୍ୟ ଥିଲା ତାହା ସର୍ବକାଳୀନ ଓ ସର୍ବବାଦୀ ସମ୍ମତ । ତାହାର ଆବଶ୍ୟକତା ସେତେବେଳେ ଥିଲା, ବର୍ତ୍ତମାନ ରହିଛି ଓ ଆଗାମୀ ଦିନ ପାଇଁ ରହିଥିବ ମଧ୍ୟ । ତାହାର ମୂଲ୍ୟ-ଚିରନ୍ତନ ।

କିନ୍ତୁ ବର୍ତ୍ତମାନ ସମୟରେ ସେହିପରି ବିଦ୍ୟାଳୟଟିଏ ପ୍ରତିଷ୍ଠା କରିବା ବା ପରିଚାଳନା କରିବା ଅତ୍ୟନ୍ତ କ୍ଲେଶସାଧ୍ୟ ବ୍ୟାପାର । ସେତେବେଳେ ଚଂପତିମୁଣ୍ଡାକୁ ଆସୁଥିବା ଛାତ୍ର ଛାତ୍ରୀମାନଙ୍କ ମଧ୍ୟରେ ଅଧିକାଂଶ ଆମ ରାଜ୍ୟର ବିଭିନ୍ନ ଜିଲ୍ଲାରେ ଥିବା ଉଚ୍ଚ ମୌଳିକ ବିଦ୍ୟାଳୟ ମାନଙ୍କ ଅଷ୍ଟମଶ୍ରେଣୀରୁ ଉତ୍ତୀର୍ଣ୍ଣ ହୋଇ ଆସୁଥିଲେ । ସେହି ସମୟରେ ମୌଳିକ ବିଦ୍ୟାଳୟ ମାନଙ୍କରେ ମୌଳିକ ଶିକ୍ଷା ତାଲିମପ୍ରାପ୍ତ ଯେଉଁ

ଶିକ୍ଷକ ମାନେ ଶିକ୍ଷାଦାନ କରୁଥିଲେ ସେମାନଙ୍କ ମଧ୍ୟରେ ଅନେକ ଆଦର୍ଶ ରହିଥିଲା । ଆନ୍ତରିକତା ମଧ୍ୟ ଥିଲା ।

ସେତେବେଳେ ମୌଳିକ ବିଦ୍ୟାଳୟମାନଙ୍କରେ ଅଧ୍ୟୟନ କରୁଥିବା ଅଧିକାଂଶ ଛାତ୍ରଛାତ୍ରୀଙ୍କ ଅଭିଭାବକ ସ୍ୱାଧୀନତା ସଂଗ୍ରାମୀ କିମ୍ବା ଗାନ୍ଧିଜୀଙ୍କ ପରିକଳ୍ପିତ ମୌଳିକ ଶିକ୍ଷାନୀତି ପ୍ରତି ଅନୁରକ୍ତ ତଥା ଗାନ୍ଧିବାଦୀ ଥିଲେ। ସେହି ସମୟର ଶିକ୍ଷକ ଓ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠାତାମାନଙ୍କ ସମ୍ମୁଖରେ ମହାତ୍ମାଗାନ୍ଧି, ଗୋପବନ୍ଧୁ, ରବୀନ୍ଦ୍ରନାଥ, ଶ୍ରୀଅରବିନ୍ଦ ଓ ବିବେକାନନ୍ଦଙ୍କ ପରି ବହୁ ଆଦର୍ଶ ବ୍ୟକ୍ତିତ୍ୱ ଥିଲେ। ଏବେ ତ ସେ ଆଦର୍ଶ ସ୍ୱପ୍ନ ହେଲାଣି ।

ଜୀବନ ବିଦ୍ୟାଳୟ ବା ସତ୍ୟବାଦୀ ବନ ବିଦ୍ୟାଳୟ ଭଳି ଉଚ୍ଚ ବିଦ୍ୟାଳୟ ଗୁଡ଼ିକରେ ଶିକ୍ଷାଦାନ କରିବା ନିମିତ୍ତ ଯେଉଁ ଆଦର୍ଶ ସ୍ଥାନୀୟ, କର୍ତ୍ତବ୍ୟନିଷ୍ଠ ଶିକ୍ଷକ ମାନଙ୍କର ଆବଶ୍ୟକତା ରହିଅଛି ସେପରି ଶିକ୍ଷକ ବର୍ତ୍ତମାନ ମିଳିବେ ତ ? ଯଦି ମିଳନ୍ତି ତେବେ ସେମାନଙ୍କର ସଂଖ୍ୟା କେତେ ହେବ ?

ବର୍ତ୍ତମାନ ଆମ ଦେଶ ଓ ଆମ ରାଜ୍ୟର ଶିକ୍ଷା ବ୍ୟବସ୍ଥା ଯେପରି ବିପର୍ଯ୍ୟସ୍ତ ଅବସ୍ଥାରେ ପଡ଼ି ଧ୍ୱଂସମୁଖୀ ହେବାକୁ ଯାଉଛି ସେଥିରେ ଆମେ ଅଧିକ କ'ଣ ଆଶା କରି ପାରିବା ?

ଆମ ରାଜ୍ୟର ଅଧିକାଂଶ ବିଦ୍ୟାଳୟରେ ଆବଶ୍ୟକ ସଂଖ୍ୟକ ଯୋଗ୍ୟ ଶିକ୍ଷକ ନାହାନ୍ତି । ଆଉ ଅଳ୍ପ କେତେ ବର୍ଷପରେ ସମ୍ଭବତଃ ୨୦୧୦ ବା ୨୦୧୨ ମସିହା ବେଳକୁ କୌଣସି ଉଚ୍ଚ ବିଦ୍ୟାଳୟରେ ସ୍ଥାୟୀ ଶିକ୍ଷକ ନ ଥିବେ ।

ଏବେ ତ ରାତାରାତି ଧନୀ ହେବାର ଯେଉଁ ନିଶା ଆମ ସମସ୍ତଙ୍କୁ ଗ୍ରାସ କରି ସାରିଲାଣି ସେଥିରେ ଯେନତେନ ପ୍ରକାରେଣ ଅଧିକ ଉପାର୍ଜନ ନିମିତ୍ତ ସମସ୍ତେ ବ୍ୟସ୍ତ ଓ ଅଣନିଶ୍ୱାସୀ ହୋଇଛନ୍ତି । ତେଣୁ ଭଲ ଶିକ୍ଷକ ହେବାକୁ ମେଧାବୀ ଛାତ୍ର ମିଳି ପାରିବେ ନାହିଁ । ମେଧାବୀ ଛାତ୍ର ଛାତ୍ରୀମାନେ ଅଧିକ ଅର୍ଥ ଉପାର୍ଜନ କରିବା ଆଶାରେ ଡ଼ାକ୍ତରୀ, ଇଞ୍ଜିନିୟରିଙ୍ଗ, ଚ଼ାର୍ଟାର୍ଡ ଆକାଉଣ୍ଟାନ୍‌ସି, ଏମ.ବି.ଏ. ଇତ୍ୟାଦି ଇତ୍ୟାଦି ପଢ଼ିବାରେ ପ୍ରଲୁବ୍ଧ ହୋଇ ଧାଉଁଛନ୍ତି । ପିଲାର ଇଚ୍ଛା ନଥିଲେ ମଧ୍ୟ ଅଭିଭାବକମାନେ ସେଥିପାଇଁ ପିଲାମାନଙ୍କୁ ବାଧ୍ୟ କରୁଛନ୍ତି । ଆଉ ଆଦର୍ଶ ଶିକ୍ଷକଟିଏ ହେବାକୁ କେତେ ଜଣ ମେଧାବୀ ଛାତ୍ର ଛାତ୍ରୀ ଆଗ୍ରହ ପ୍ରକାଶ କରୁଛନ୍ତି ? ସେଥିପାଇଁ ତ ଆଜି ଶିକ୍ଷା ବ୍ୟବସ୍ଥା ଅତ୍ୟନ୍ତ ବ୍ୟୟ ବହୁଳ ହୋଇ ଉଠିଛି । ବହୁ ବେସରକାରୀ ଉଚ୍ଚ ଶିକ୍ଷାନୁଷ୍ଠାନ ପରିଚ଼ାଳକ ମାନେ ସଂପୂର୍ଣ୍ଣ ବ୍ୟବସାୟ ଢ଼ଙ୍ଗରେ ଚ଼ଳାଉଛନ୍ତି ।

ଶିକ୍ଷକ ନାମଧାରୀ ବହୁ ଶିକ୍ଷା-ବ୍ୟବସାୟୀ ଗଣ୍ଡାଗଣ୍ଡା ପାଠି ବହି ଓ ପରୀକ୍ଷା ପାଠି ଲେଖି ଯେପରି ଗୋବର ଗଣେଶ ଗଢ଼ିବାକୁ ପ୍ରୟାସ କରୁଛନ୍ତି ତାହା ଆଦୌ ହିତକର ନୁହେଁ । ଛାତ୍ର ଛାତ୍ରୀମାନଙ୍କର ଅଧ୍ୟୟନରେ ଆଗ୍ରହଟା ଶ୍ରଦ୍ଧା ନାହିଁ । ଶିକ୍ଷକମାନଙ୍କର ମଧ୍ୟ ଶିକ୍ଷାଦାନରେ ଆନ୍ତରିକ ନିଷ୍ଠା ନାହିଁ । ଅଭିଭାବକ ମାନେ ତ କେବଳ ଆର୍ଥିକ ଲାଭ କ୍ଷତି ନେଇ ସର୍ବଦା ବ୍ୟସ୍ତ ।

ସହଜ କଥାରେ କହିଲେ ଆଜି ବିଦ୍ୟାଦାୟିନୀ ବାଗ୍‌ଦେବୀ, ଲକ୍ଷ୍ମୀଙ୍କ ଘର ଚାକରାଣୀ ସାଜିଛନ୍ତି ତେଣୁ ଲକ୍ଷ୍ମୀଙ୍କ ବାହନ ପେଚା ସରସ୍ୱତୀଙ୍କ ମୁଣ୍ଡ ଉପରେ ସଦର୍ପେ ବସୁଛି ।

•



ବର୍ତ୍ତମାନ ସ୍କୁଲ୍ ଶିକ୍ଷକ ଓ ଛବିଗୁଡ଼ିକ ସଂଗ୍ରହ କରିଥିବା ସାଇଶ୍ରୀ ଲୋକନାଥ ପ୍ରସାଦ ସେଠୀ

# ଜୀବନ ବିଦ୍ୟାଳୟ ଓ ଚିତ୍ତଭାଇ

ଶ୍ରୀ ଶାନ୍ତି କୁମାର ପାଣିଗ୍ରାହୀ

ଚିତ୍ତଭାଇଙ୍କ ଭଳି ମହାନ୍ ବ୍ୟକ୍ତିଙ୍କ ବିଷୟରେ ଯେତେ ଲେଖିଲେ ମଧ୍ୟ ତାହା ଅଯଥେଷ୍ଟ ହେବ ଛୋଟ ହୋଇଯିବ। ସିଏ ପାଣିରେ ଭାସୁଥିବା ବରଫ ଖଣ୍ଡ ଭଳି। ଯେତିକି ଉପରକୁ ତାଠୁଁ ଅଧିକ ପାଣି ଭିତରେ। ସାମଗ୍ରୀକ ଭାବରେ କଳନା କରିବା ମୋ ପକ୍ଷେ ଅସମ୍ଭବ। ଆଉ ବଡ଼କଥା ଭାଷା। ମୋ ପାଖରେ ସମୁଚିତ ଭାଷା ନାହିଁ। ବର୍ଷେ ବାଜୀ ରାଉତ ଛାତ୍ରାବାସରେ ଆଂଶିକ ଭାବରେ ଏବଂ ତିନିବର୍ଷ ସଂପୂର୍ଣ୍ଣ ଭାବରେ ଛାତ୍ର ହୋଇ ଚଂପତିମୁଣ୍ଡାରେ । ଏପରି ଚାରିବର୍ଷର ନିଗୁଢ଼ ସଂପର୍କ ତାଙ୍କ ସହିତ। ତା' ଭିତରେ ତାଙ୍କୁ ଯେତିକି ଜାଣିଛି। କେତୋଟି ଘଟଣା ଯାହାକି ମୋତେ ବିସ୍ମିତ କରିଛି ଲେଖିବି।

ଚିତ୍ତଭାଇ କାହାକୁ ତୁଚ୍ଛଜ୍ଞାନ କରନ୍ତି ନାହିଁ। ତା' ସହିତ କାହାକୁ ଅଧିକ କ୍ଷମତାଶାଳୀ ବା ଉଚ୍ଚପଦସ୍ଥ ବୋଲି ଅଯଥା ଗୁରୁତ୍ୱ ଦିଅନ୍ତି ନାହିଁ। ଆମ ସ୍କୁଲର ହଳିଆ ଦୁତିଆ ଭାଇକୁ ନମସ୍କାର କରନ୍ତି। ତା'ର ଦୁଃଖ ସୁଖ କଥାବାର୍ତ୍ତା କରି ବୁଝନ୍ତି। ଏହିଭଳି ଚଂପତିମୁଣ୍ଡା ଗାଆଁର ଦୁତିଆ ଭାଇ ଭଳି ସାଧାରଣ ଲୋକକୁ, ପରିଚୟ ଥିଲେ ନମସ୍କାର କରି ସମ୍ମାନ ଜଣାନ୍ତି। ଏଥିରେ ବୟସର ମଧ୍ୟ ତାରତମ୍ୟ ନଥାଏ। ଦିନକର କଥା- ଏସ୍.ଡ଼ି.ଓ. ଆସିଥାନ୍ତି ଅନୁଗୁଳରୁ ତଦନ୍ତ କାମରେ। ଜଣେ ଭାଇ ଚିତ୍ତଭାଇଙ୍କୁ ଡ଼ାକିବାକୁ ଗଲେ ଏସ୍.ଡ଼ି.ଓ. ଆସିଛନ୍ତି ଚାଲନ୍ତୁ ବୋଲି। ଚିତ୍ତଭାଇଙ୍କ ଉତ୍ତର, "ମୁଁ କଅଣ କରିବି କିରାଣୀବାବୁ ଅଛନ୍ତି। ସେ ତାଙ୍କ କାମ କରିବେ। ଖାତା ପତ୍ର ଦେଖାଇବେ।" ଶିକ୍ଷିତ ସମାଜ ସାଧାରଣତଃ ମଳିମୁଣ୍ଡିଆ ସାଧାରଣ ଲୋକଙ୍କୁ ହେୟଜ୍ଞାନ କରି ଅଫିସରଙ୍କୁ ଅଯଥା ସମ୍ମାନ ଦିଏ। ଅଫିସରଙ୍କୁ ନମସ୍କାର ଭୟ ବା ତୋଷାମଦ ହୋଇପାରେ। ଅଫିସରଙ୍କ ଯୋଗ୍ୟତା ଅଧିକ। ତେଣୁ ତାଙ୍କୁ ଅଧିକା ଦରମା ମିଳେ।

ଆମ ସ୍କୁଲରେ ସକାଳ ୯.୩୦ରୁ ୧୧ଟା୩୦ ଏବଂ ଉପରଓଳି ଦୁଇଟାରୁ ଚାରିଟା ପର୍ଯ୍ୟନ୍ତ କ୍ଲାସ ହୁଏ। କ୍ଲାସ ପରେ ପିଲାମାନେ ନିଜ ଇଚ୍ଛାରେ ଲାଇବ୍ରେରୀ

ବ୍ୟବହାର କରନ୍ତି । ବହିଧରି କିଏ ଜଙ୍ଗଲ ଆଡ଼କୁ ଚାଲିଯାଏ ତ କିଏ ବଡ଼ ପଥର ଉପରକୁ ଉଠିଯାଇ ପୁସ୍ତକ ପଢ଼ିବାରେ ମନ ଦିଏ । ପ୍ରଥମ ବ୍ୟାଚ୍‌ର ପିଲା ବୈଦ୍ୟନାଥ ଭାଇ ଏବଂ ଗୋପୀନାଥ ଭାଇଙ୍କ ମଧ୍ୟରେ ଭଲ ଦୋସ୍ତୀ ଥାଏ । ପରସ୍ପରକୁ ବଡ଼ କୌତୁକପୂର୍ଣ୍ଣ ବ୍ୟବହାରରେ ଆପ୍ୟାୟିତ କରନ୍ତି । ଦିନେ ଚିତ୍ତଭାଇ ଉପରଓଳି କ୍ଲାସପରେ ଗୋଟିଏ ପଥର ଉପରେ ବସି ବହି ପଢୁଥାନ୍ତି । ମୁଣ୍ଡରେ ତଉଲିଆକୁ ପକାଇ ମୁହଁକୁ ଢ଼ାଙ୍କି ଦେଇଥାନ୍ତି । ପଛପଟୁ ଗୋପୀନାଥ ଭାଇ ଜାଣି ପାରିଲେ ନାହିଁ । ଭାବିଲେ ବୈଦ୍ୟନାଥ ଭାଇ ମୁଣ୍ଡରେ ଓଢ଼ଣା ଦେଇ ପଢୁଛି । କିରେ ବଇଦା କ'ଣ କରୁଛୁ କିରେ ? ବୋଲି କହି ଚିତ୍ତଭାଇଙ୍କ ପିଠିରେ ଦୁଲ୍ କରି ଗୋଟିଏ ବିଧା କଷିଦେଇ କୌଣସି ପ୍ରତିକ୍ରିୟା ନ ହେବାରୁ ଓଢ଼ଣାକୁ କାଢ଼ିଦେଇ ଯେତେବେଳେ ଜାଣିଲେ ବଇଦା ନୁହେଁ ଚିତ୍ତଭାଇ ପଢୁଛନ୍ତି- ଅତର୍କ୍କାରେ ଦୌଡ଼ି କରି ଛାତ୍ରାବାସକୁ ପଳାଇଲେ । ତା' ପରଦିନ ଗୋପୀନାଥ ଭାଇଙ୍କ ମନରୁ ଭୟ ଦୂର କରିବାପାଇଁ ଚିତ୍ତଭାଇ ତାଙ୍କୁ କହିଲେ "କିଓ ଗୋପୀନାଥ ବଇଦା କିଛି କହିଲେ ନାହିଁ ? ଏତିକି କହି ହସିଦେଲେ । ଗୋପୀନାଥ ଭାଇର ପିଣ୍ଡରେ ପ୍ରାଣ ରହିଲା- ସେ ଅଭୟ ପାଇଗଲା । ଚିତ୍ତଭାଇ ଶିକ୍ଷକ ଏବଂ ଛାତ୍ର ଭିତରେ ବ୍ୟବଧାନ ରଖନ୍ତି ନାହିଁ । ପାଠ ପଢ଼ାଇବା ବେଳେ ଶ୍ରେଣୀକୁ ଏକକ ଭାବରେ ନ ଦେଖି ଛାତ୍ରକୁ ଏକକ ଭାବରେ ଦେଖୁଥିଲେ । ସେଥିପାଇଁ ବ୍ୟକ୍ତିଗତ ଭାବରେ ଛାତ୍ର ସହିତ ସଂପର୍କ ରଖିଥିଲେ । ମନୋବିଜ୍ଞାନରେ ତାଙ୍କ କ୍ଲାସ ଚାଲିଥିଲା ବେଳେ ସେ ସମସ୍ତଙ୍କୁ ସଙ୍ଗରେ ନେଇ ଚାଲିଥିଲେ । କ୍ଲାସ ମଝିରେ କିଏ ଅନ୍ୟମନସ୍କ ହୋଇ ପଡ଼ିଲେ ଜାଣିବାମାତ୍ରେ ହଠାତ୍ ତାଙ୍କ ତୁଣ୍ଡରୁ ଲେକ୍‌ଚର ବନ୍ଦ ହୋଇ ଯାଉଥିଲା- ଅନ୍ୟମନସ୍କ ପିଲା ଆଡ଼କୁ ଅନାଇ ରହୁଥିଲେ ମୁରୁକି ହସ ସହିତ । ଲେକ୍‌ଚର ବନ୍ଦ ହୋଇଯିବା ଜାଣି ଚିତ୍ତଭାଇଙ୍କ ଚାହିଁବା ଆଡ଼କୁ ଅନ୍ୟ ସମସ୍ତ ପିଲାଙ୍କ ଦୃଷ୍ଟି ମଧ୍ୟ ପଡ଼ିଯାଉଥିଲା । ଏଥିରେ ପିଲାଟି ଲଜ୍ଜିତ ହେଉଥିଲା ଏବଂ ତା'ର ପରିବର୍ତ୍ତନ ଘଟୁଥିଲା । ସେ ସଚେତନ ହୋଇ ଯାଉଥିଲା । କ୍ଲାସରେ ଅଧିକ ପିଲା ଅନ୍ୟମନସ୍କ ହୋଇ ପଡ଼ିଛନ୍ତି ଜାଣିଲେ ମୂଳ ପ୍ରସଙ୍ଗକୁ ସେଇଠି ରଖି ପିଲାଙ୍କ ମନ ଖୁସି କରିବା ପାଇଁ ଏକ କୌତୁହଳ ପ୍ରସଙ୍ଗ ଆଣି ଉପସ୍ଥାପନ କରୁଥିଲେ । ଆମେ ସମସ୍ତେ ହସି ହସି ବେଦମ ହୋଇ ଯାଉଥିଲୁ । ତା'ପରେ ପୁଣି ମୂଳ ବିଷୟ ଉପରକୁ ଯିବା ବୋଲି କହିବା ପରେ ଲେକ୍‌ଚର ଦେଉଥିଲେ ।

କାହାରି ପ୍ରତି ବିଦ୍ୱେଷଭାବ ଚିତ୍ତଭାଇଙ୍କ ପାଖରେ ନାହିଁ । ଯେତେବେଳେ ଚିତ୍ତଭାଇ ଚଂପତିମୁଣ୍ଡା ସ୍କୁଲ ଛାଡ଼ିଲେ ଆମେ ସମସ୍ତେ ଭାବିଲୁ ତାଙ୍କ ପ୍ରତି ଅସନ୍ତୁଷ୍ଟ ହୋଇ ନୁମା (ମାଳତୀ ଚୌଧୁରୀ) ଚାଲି ଯିବାକୁ କହିଛନ୍ତି । ତା' ସତ୍ତ୍ୱେ ନୁମାଙ୍କ ପ୍ରତି

ତାଙ୍କର ଶ୍ରଦ୍ଧାରେ ଊଣା ହେବାର ମୁଁ ଲକ୍ଷ୍ୟ କରି ନାହିଁ । ସ୍କୁଲ ଛାଡ଼ିବାପରେ ସେ ପ୍ରାୟ ସମସ୍ତ ଛାତ୍ର ଛାତ୍ରୀଙ୍କ ଗାଁକୁ ଯାଇଛନ୍ତି । ପରିବାରରେ ସମୟ କଟାଇଛନ୍ତି । ସାଇକଲ ଖଣ୍ଡେ ଧରି ସାରା ଓଡ଼ିଶା ବୁଲିଛନ୍ତି । ଆମଗାଁକୁ ମଧ୍ୟ ସାଇକେଲରେ ଆସିଥିଲେ । ଖବର ପାଇ ଅଧ୍ୟାପକ ପ୍ରଫୁଲ୍ଲ ତ୍ରିପାଠୀ ପଡ଼ୋଶୀ ଗାଁରୁ ତାଙ୍କୁ ଦେଖା କରିବାକୁ ଆସିଥାନ୍ତି ସେ ପ୍ରସଙ୍ଗକ୍ରମେ ମାୟାଧର ମାନସିଂଙ୍କର ସମାଲୋଚନା କଲେ । ଚିତ୍ତଭାଇ ସଙ୍ଗେ ସଙ୍ଗେ ତାଙ୍କ ଯୁକ୍ତିକୁ ଖଣ୍ଡନ କରି କହିଲେ "ଓଡ଼ିଶାରେ ମାୟାଧର ମାନସିଂହହିଁ ଜଣେ ଲୋକ ଯିଏକି ନିର୍ଭୟରେ କହିପାରେ, ଲେଖିପାରେ"। ମୋର ମନେ ପଡ଼ିଲା ଚିତ୍ତଭାଇଙ୍କ "ସାଗର ଯାତ୍ରୀ" ପୁସ୍ତକ ଉପରେ ମାନସିଂହ କଟୁ ସମାଲୋଚନା କରିଥିଲେ। ମୁଁ ଭାବୁଥିଲି ଚିତ୍ତଭାଇ ପ୍ରଫୁଲ୍ଲ ବାବୁଙ୍କ ସମାଲୋଚନାକୁ ସମର୍ଥନ କରିବେ- ମାତ୍ର ଆଶ୍ଚର୍ଯ୍ୟ ହେଲି ଏ କିପରି ଲୋକ ? ଯାହାକୁ ମାନସିଂହ ସମାଲୋଚନା କରନ୍ତି ସେ ପୁଣି ଏତେ ଉଚ୍ଚରେ ମାନସିଂହଙ୍କୁ ଥୋଇଛନ୍ତି ।

ଚିତ୍ତଭାଇ ମନସ୍ତତ୍ତ୍ୱ ଜାଣନ୍ତି । ଛାତ୍ର ଏବଂ ଶିକ୍ଷକ ଭିତରେ ବ୍ୟବଧାନ ଯେତିକି କମିବ ଛାତ୍ରର ମନ ଭିତରକୁ ପ୍ରବେଶ କରିବା ଶିକ୍ଷକ ପାଇଁ ସେତିକି ସହଜ ହେବ ଏକଥା ସେ ଜାଣନ୍ତି । ସେଥିପାଇଁ ସେ ଆମ ପାଖେ ପାଖେ ରହୁଥିଲେ । ଛାତ୍ର ମନରୁ ଭୟ ଏବଂ ସଂକୋଚ ଦୂର କରିବାକୁ ସେ ସର୍ବଦା ଯତ୍ନଶୀଳ ଥାନ୍ତି ମୁଁ ତହିଁର କେତେଟା ଦୃଷ୍ଟାନ୍ତ ଦେବି । ଖାଇବାବେଳେ ପିଲାଙ୍କ ସଙ୍ଗେ ଧାଡ଼ିରେ ବସି ଖାଉଥିଲେ । ଲାଉ ମଂଜି, କଖାରୁ ମଂଜି ବା ପାଣିକଖାରୁ ମଂଜି ତରକାରୀ ଭିତରୁ କାଢ଼ିଆଣି ପିଲାଙ୍କ ଉପରକୁ ଲକ୍ଷ୍ୟକରି କାଣ୍ଡ ବାନ୍ଧିଲାଭଳି ହାତରେ ଚିପି ପିଚ୍‌କାଇ ଦେଉଥିଲେ । ଅପର ଦିଗରୁ ଛାତ୍ର ଆଡୁ ମଧ୍ୟ ପ୍ରତିଶର ନିକ୍ଷିପ୍ତ ହେଉଥିଲା । ଏପରି କୌତୁକିଆ ପରିବେଶ ସୃଷ୍ଟି କରି ସୂଚାଇ ଦେଉଥିଲେ । ଆମ ଭିତରେ ବ୍ୟବଧାନ ନାହିଁ । ଗାଧୋଇବା ବେଳେ ଯାକୁ ତାକୁ ଟାଣି ନେଇ ଯାଉଥିବେ ନାଳ ଭିତରକୁ । ପିଲାଙ୍କ ସଙ୍ଗେ ଖେଳିବା ଜଂଗଲକୁ ଜାଳକାଠ ସଂଗ୍ରହ ପାଇଁ ଯିବା । ବଗିଚା କାମ କରିବା, ଖୁଣ୍ଟ ତାଡ଼ିବା, ଜଂଗଲ ସଫା କରିବା, ବାସନ ମାଜିବା ଆଦି ସାମୂହିକ କାମ ସେ ଏକାଠି ମିଶି କରୁଥିଲେ । ଶିକ୍ଷକ ମାନେ ଛାତ୍ରଙ୍କ କାମକୁ ଯେପରି ତଦାରଖ କରନ୍ତି, ସେପରି ନୁହେଁ । ଛାତ୍ର ସହିତ ଛାତ୍ର ଭାବରେ କାମ କରୁଥିଲେ । ପିଲାଙ୍କ ମନକୁ ପଢ଼ିବାପାଇଁ ତଥା ପିଲାମାନେ କିପରି ନିଜକୁ ଖୋଲି ଦେଇ ପାରିବେ ସେଥିପାଇଁ ଆଉ ଏକ ପଦକ୍ଷେପ ଥିଲା 'ଡ଼ାଏରୀ ଲେଖା'। ଆମେ ମାନେ ସମସ୍ତେ ଡ଼ାଏରୀ ଲେଖୁଥିଲୁଁ। ତହିଁରେ ବିଭିନ୍ନ ଅଭିଯୋଗ ଅସୁବିଧା କଥା ମଧ୍ୟ ଲେଖୁଥିଲୁଁ। ଯାହା କହିବାକୁ ସହଜ ହୁଏ ନାହିଁ ଲେଖିଦେଇ

ହୁଏ ସହଜରେ । ଶିକ୍ଷକ ମାନଙ୍କ ବିରୁଦ୍ଧରେ ମଧ୍ୟ ଲେଖୁଥିଲୁଁ । ଚିତ୍ତଭାଇଙ୍କ ବିରୁଦ୍ଧରେ ମଧ୍ୟ । ଡ଼ାଏରୀ ଗୁଡ଼ିକ ଚିତ୍ତଭାଇ ପଢୁଥିଲେ ।

ସପ୍ତାହରେ ଥରେ ରାତିରେ ଆଲୋଚନା ସଭା ହେଉଥିଲା । ସାଧାରଣତଃ ସ୍କୁଲ ମାନଙ୍କରେ ଯେପରି ତର୍କସଭା ହେଉଥିଲା ଏହା ସେପରି ନୁହେଁ । ବ୍ୟତିକ୍ରମ ଥିଲା, ଆଲୋଚ୍ୟ ବିଷୟ ପୂର୍ବରୁ ଘୋଷଣା କରାଯାଉ ନଥିଲା । ଆଲୋଚନା ସଭାର ଅବ୍ୟବହିତ ପୂର୍ବରୁ ଦୁଇଜଣ ଶିକ୍ଷକ ଏବଂ ଜଣେ ଛାତ୍ର ପ୍ରତିନିଧି ଏପରି ତିନିଜଣିଆ କମିଟି (ବିଷୟ ନିର୍ବାଚନ କମିଟି) ଆଲୋଚନା ପାଇଁ ଦଶଟି ବିଷୟ ସ୍ଥିର କରୁଥିଲେ । ଚିଠା ଗୁଡ଼ିକ ପୁଡ଼ିଆ ଆକାରରେ ବନ୍ଦ କରି ରଖା ଯାଉଥିଲା । ଯେଉଁମାନେ ସେହି ଆଲୋଚନାରେ ମୁଖ୍ୟ ଅଂଶ ଗ୍ରହଣ କରିବେ ସେମାନେ ଜଣେ ଜଣକ ପରେ ଆସି ଗୋଟିଏ ଗୋଟିଏ ଚିଠା ନେଇଯିବେ । ତହିଁରେ ନିୟମ ଥିଲା ଚିଠାଖୋଲି ସଭାରେ ପଢ଼ିବେ ଏବଂ ଅନ୍ତରାଳକୁ ଚାଲିଯିବେ ଚିନ୍ତା କରିବାକୁ ତାଙ୍କୁ ୫ ମିନିଟ୍ ସମୟ ଦିଆଯାଇଥିଲା । ୫ ମିନିଟ୍ ପରେ ଘଣ୍ଟି ବାଜୁଥିଲା ଏବଂ ବକ୍ତାଙ୍କୁ କହିବାକୁ ୫ ମିନିଟ୍ ସମୟ ଦିଆଯାଇଥିଲା । ତାଙ୍କ ଭାଷଣ ପରେ ତା' ଉପରେ ଅନ୍ୟମାନେ ଆଲୋଚନା କରୁଥିଲେ । ଏହି କାର୍ଯ୍ୟକ୍ରମରେ ସଙ୍ଗେ ସଙ୍ଗେ ପ୍ରସ୍ତୁତ ହୋଇ କହିବାକୁ ପଡୁଥିଲା । ଏହା ଅଧିକରୁ ଅଧିକ ପିଲାଙ୍କୁ ଆଲୋଚନାରେ ଭାଗ ନେବାକୁ ସୁଯୋଗ ଦେଉଥିଲା । ପିଲା ମନରୁ ଭୟ ଦୂର କରି ନିର୍ଭିକ ଭାବରେ ବକ୍ତବ୍ୟ ପ୍ରଦାନ ପାଇଁ ଏହା ଏକ ମଂଚ ଥିଲା । ଏହା ଏକ ସଫଳ ପ୍ରୟୋଗ ଥିଲା । ସେ ସମୟରେ ହାଇସ୍କୁଲରେ ହେଉଥିବା ତର୍କ ପ୍ରତିଯୋଗିତାରେ ଆମ ପିଲାଏ ଶୀର୍ଷସ୍ଥାନ ଲାଭ କରୁଥିଲେ ।

ବିଭିନ୍ନ ସମୟରେ ସେ ଆମକୁ ଶିକ୍ଷଣୀୟ ଚଳଚ୍ଚିତ୍ର ଦେଖାଉଥିଲେ । 'ଦୋ ବିଘା ଜମିନ' ଏବଂ 'ଜାଗୃତୀ' ଚଳଚ୍ଚିତ୍ର ଦେଖିବାପାଇଁ ଅନୁଗୁଳକୁ ଆସିଥିଲୁଁ । 'ଜାଗୃତି' ଉପରେ ଆଲୋଚନା କରି ତାହାର ମନସ୍ତାତ୍ତ୍ୱିକ ଦିଗ ଉପରେ ସେ ଆଲୋକପାତ କରିଥିଲେ । ଚଂପତିମୁଣ୍ଡାରୁ ଅନୁଗୁଳ ଆଠମାଇଲ ବାଟ । ଆମେ ଚାଲି କରି ଆସୁଥିଲୁଁ । ଥରେ ଅନୁଗୁଳ ଟ୍ରେନିଂ କଲେଜରେ ଦଳ ବେହେରା ନାଟକ ମଂଚସ୍ଥ ହୋଇଥିଲା ଆମେ ସମସ୍ତେ ଦେଖିବାକୁ ଆସିଥିଲୁଁ । ନାଟକର ସଫଳ ଅଭିନୟ ଯୋଗୁଁ ଆମେ ସମସ୍ତେ ଆନନ୍ଦିତ ହୋଇଥାଉ । ଫେରିଲା ବାଟରେ ଚିତ୍ତଭାଇ ଅଭିନୟ କିପରି ହେଲା ବୋଲି ପଚାରିଲେ । ଆମେ ସମସ୍ତେ ଉତ୍ସାହିତ ହୋଇ ସୁନ୍ଦର ବୋଲି କହିଲୁ । ଏଥର ସେ ଦଳ ବେହେରାର ଚରିତ୍ର ଚିତ୍ରଣ କର ବୋଲି ବଂଶୀଧର ଭାଇ, ଦୁର୍ଗାମାଧବ ଭାଇ, ହରଭାଇ ଆଦି ଉପର ଶ୍ରେଣୀର ପିଲାମାନଙ୍କୁ କହିଲେ । ଦଳ ବେହେରାର ଭୂରି ଭୂରି

ପ୍ରଶଂସା ସହ ସେମାନେ ଆଲୋଚ଼ନାକୁ ଆଗେଇ ନେଉଥାନ୍ତି । ସବା ଶେଷରେ ଚ଼ିତ୍ତଭାଇ ସେମାନଙ୍କ ମତକୁ ଖଣ୍ଡନ କରି ଏକା ଥରକେ ସମସ୍ତଙ୍କୁ ସ୍ତବ୍ଧ କରି ଦେଲେ । ତାଙ୍କ ଭାଷାରେ ଲେଖକ ଦଳ ବେହେରାଙ୍କୁ ଏକ ବୋକା ଓଡ଼ିଆ ପାଇକ ସର୍ଦ୍ଦାର ଭାବରେ ଚ଼ିତ୍ରିତ କରିଛନ୍ତି । ପାଇକ ସର୍ଦ୍ଦାର ଦଳ ବେହେରା ଇଂରେଜ ବିରୁଦ୍ଧରେ ଗରିଲା ଯୁଦ୍ଧ ଚ଼ଳାଇଥିଲେ । ସେ ଛଦ୍ମବେଶରେ ଥାଇ ଗୁପ୍ତଚ଼ର ପାଖରୁ ଖବର ପାଇଲେ ଯେତିକି ତାଙ୍କର ଖାଦ୍ୟ ମହଜୁଦ ଅଛି ତହିଁରେ ପାଇକମାନେ ବାରବର୍ଷ ପର୍ଯ୍ୟନ୍ତ ଚ଼ଳିଯିବେ । ଅଥଚ଼ ସେ ନାଉରୀଆକୁ ଆର୍ଥିକ ସହାୟତା ଦେବା ପରିବର୍ତ୍ତେ ଇଂରେଜ ପାଖରେ ଧରା ଦେଇଛନ୍ତି ଏବଂ ପୁରସ୍କାର ବାବଦ ଘୋଷିତ ୫୦୦ ଟଙ୍କା ନାଉରୀକୁ ଦେବାକୁ ଅନୁରୋଧ କରିଛନ୍ତି । ମହାଭାରତରେ ଦ୍ରୋଣଗୁରୁ ଏକ ବଳିଷ୍ଠ ଚ଼ରିତ୍ର । ତାଙ୍କ ସମ ଯୋଦ୍ଧା କେହି ନାହିଁ । ନାରାୟଣ ମଧ୍ୟ ତାଙ୍କ ସହ ଯୁଝିବାକୁ ପଛଘୁଞ୍ଚା ଦିଅନ୍ତି । ଏଭଳି ଯୋଦ୍ଧାଙ୍କ ଚ଼ରିତ୍ରରେ କିପରି ଏପରି ଦୁର୍ବଳତା ଆସିଲା ଯେ ସେ ପରଶ୍ରୀକାତର ଭାବରେ ଏକଲବ୍ୟର ଦକ୍ଷିଣ ବୃଦ୍ଧାଙ୍ଗୁଷ୍ଠି ମାଗିଛନ୍ତି ଭାରତୀୟ ଆଚ଼ାର୍ଯ୍ୟର ମର୍ଯ୍ୟାଦାକ୍ଷୁର୍ଣ୍ଣ କରିଛନ୍ତି । ଏଥିପାଇଁ ବ୍ୟାସଦେବଙ୍କୁ ଚ଼ିତ୍ତଭାଇ ସମାଲୋଚ଼ନା କରିଛନ୍ତି । ତାଙ୍କ ଭାଷାରେ "ଆମେ ଆମ ପିଲାଙ୍କୁ ଏପରି ଶିକ୍ଷା ଦେବୁ ସେମାନେ ଏପରି ପକ୍ଷପାତୀ ଏବଂ ପରଶ୍ରୀକାତର ଗୁରୁଙ୍କୁ ଆଙ୍ଗୁଠି ଦେଖାଇ ନାହିଁ କରି ଦେବେ । ଉପରୋକ୍ତ ଉଭୟ ଦୃଷ୍ଟାନ୍ତରେ ଚ଼ିତ୍ତଭାଇ ନିର୍ଭିକ ଭାବରେ ସମାଲୋଚ଼ନା କରିଛନ୍ତି ଏଥିରୁ ଆମେ ତାଙ୍କର ସ୍ୱାଭିମାନୀ ଓଡ଼ିଆ ଏବଂ ସ୍ୱାଭିମାନୀ ଭାରତୀୟ ସ୍ୱଭାବର ପରିଚ଼ୟ ପାଇ ପାରିବା ।

ଚ଼ିତ୍ତଭାଇ ରାଗିବା ମୁଁ ଜାଣି ନାହିଁ । ତାଙ୍କ ଭିତରେ ଅପାର ସ୍ନେହ ସତେ ଯେପରି ସାଇତା ହୋଇ ରହିଛି । କିଛି ଭୁଲ କଲେ ଭୁଲେଇ ଦିଅନ୍ତି ଅଧିକ ଭୁଲ କଲେ ଅସନ୍ତୁଷ୍ଟ ହୁଅନ୍ତି ହେଲେ ରାଗନ୍ତି ନାହିଁ । ସେଥିପାଇଁ ଆମେ ସବୁ ସ୍ନେହ କାଙ୍ଗାଳ ପିଲାଏ ତାଙ୍କ ପ୍ରତି ମୁଗ୍ଧ ହୋଇ ରହିଥାଉଁ । ତାଙ୍କର ଶିକ୍ଷାଦାନ ପଦ୍ଧତି ବ୍ୟବହାର କୁଶଳତାରେ ଆମେ ଏତେ ମୁଗ୍ଧ ଥାଉଁ ଯେ ଅନ୍ୟ ଶିକ୍ଷକମାନଙ୍କର କ୍ଲାସ ଆମକୁ ରୁଚ଼େ ନାହିଁ । ଅନ୍ୟ ଶିକ୍ଷକମାନଙ୍କର ଶିକ୍ଷାଦାନ ପଦ୍ଧତିରେ ତୃଟୀ ଦେଖାଇ ଡ଼ାଏରୀରେ ଅଭିଯୋଗଭରା ଲେଖା ସବୁ ଭର୍ତ୍ତି ହୋଇଯାଏ । ଚ଼ିତ୍ତଭାଇ ସେହି କ୍ଲାସ ନିଅନ୍ତି ବୋଲି ପିଲାଏ ଚ଼ାହାଁନ୍ତି । ମାତ୍ର ତାହା ସଂଭବ ହୁଏ ନାହିଁ । ସେ ଅବା ଏକୁଟିଆ କେତୋଟି କ୍ଲାସ ନେଇ ପାରିବେ ? ଚ଼ିତ୍ତଭାଇ କ୍ଲାସକୁ ଆସିବା ପୂର୍ବରୁ ପ୍ରସ୍ତୁତ ହୋଇଥାନ୍ତି ପୁସ୍ତକ ହାତରେ ଧରି ସେ ପଢ଼ାନ୍ତି ନାହିଁ । ଲେକ୍‌ଚ଼ର ଦିଅନ୍ତି । ଆମେ ସବୁ ନୋଟ୍ ବହି ଧରି ଟିପି ଆଣୁ । କେତୋଟି ବହି ପଢ଼ି ସେ ପ୍ରସ୍ତୁତ ହୋଇଥାନ୍ତି କେଜାଣି ଆମେ ଖାଲି ମୁଗ୍ଧ ହୋଇ ଟିପି ଚ଼ାଲିଥାଉଁ । ଏହା ଅନ୍ୟ ଶିକ୍ଷକମାନଙ୍କ ଦ୍ୱାରା ହୁଏ ନାହିଁ । ସେମାନେ ଖଣ୍ଡେ ବହି

ହାତରେ ଧରି ପଢ଼ନ୍ତି ଓ ତାକୁ ପଢ଼ାନ୍ତି । ଆମମାନଙ୍କ ଅସନ୍ତୋଷର ଫଳ ହୁଏ ଗୁରୁତର । ଶିକ୍ଷକମାନେ ଅଭିମାନ କରି ସ୍କୁଲ ଛାଡ଼ି ଚାଲିଯାନ୍ତି । ଏକେତ ଜଂଗଲ ଭିତରେ ଆମ ସ୍କୁଲ ଥିବାରୁ ସହଜେ କେହି ଶିକ୍ଷକ ଆସିବାକୁ ମଙ୍ଗନ୍ତି ନାହିଁ । ଯେଉଁମାନେ ଆସନ୍ତି ଛାତ୍ରମାନେ ତାଙ୍କୁ ତୁଚ୍ଛଜ୍ଞାନ କରୁଛନ୍ତି ଭାବି ସ୍କୁଲ ଛାଡ଼ି ଚାଲିଯାନ୍ତି । ନୂତନ ଶିକ୍ଷକ ଯୋଗାଡ଼ କରିବାକୁ ଚିତ୍ତଭାଇଙ୍କୁ ବହୁ ହଇରାଣ ହେବାକୁ ପଡ଼େ । ତଥାପି ଚିତ୍ତଭାଇ ପିଲାଙ୍କ ଉପରେ କଠୋର ହୁଅନ୍ତି ନାହିଁ, ବିରକ୍ତ ହୁଅନ୍ତି ନାହିଁ ।

ଜ୍ଞାନ ଆହରଣ ତଥା ଭାଷାର ବହୁଳ ବ୍ୟବହାର ପାଇଁ ଲାଇବ୍ରେରୀ ଏକ ମୁଖ୍ୟ ସାଧନ । ଚିତ୍ତଭାଇ ଲାଇବ୍ରେରୀ ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ । ଲାଇବ୍ରେରୀକୁ କିପରି ଅଧିକରୁ ଅଧିକ ଭାବରେ ପିଲାମାନେ ବ୍ୟବହାର କରିପାରିବେ ସେଥିପାଇଁ ସେ ଯତ୍ନଶୀଳ ଥିଲେ ଅଧିକ ପଢ଼ିବାପାଇଁ ଉତ୍ସାହିତ କରୁଥିଲେ । ଭ୍ରମଣ କାହାଣୀ ଏବଂ ଉପନ୍ୟାସ ପଢ଼ିବା ପାଇଁ ସୁପାରିଶ କରନ୍ତି । ଏହା ଅଧିକ ଗତିରେ ପଢ଼ି ହୁଏ । ତାଙ୍କ ମତରେ ଗଳ୍ପ ଉପନ୍ୟାସ ଅଧ୍ୟୟନ ଦ୍ୱାରା ଛାତ୍ରର ଭାଷାଜ୍ଞାନ ମାର୍ଜିତ ହୋଇଥାଏ ଅତି ସହଜରେ । ମୁଖ୍ୟତଃ ଓଡ଼ିଆ, ହିନ୍ଦୀ ଏବଂ ବଙ୍ଗଳା ଭାଷାର ପୁସ୍ତକ ଅଧିକ ସଂଖ୍ୟାରେ ଲାଇବ୍ରେରୀରେ ରହିଥିଲା । ଆମେମାନେ ସମସ୍ତେ ଏହି ତିନିଟିଯାକ ଭାଷା ଜାଣିଥିଲୁଁ । ସ୍ୱାଧ୍ୟାୟ ଫଳରେ ଏହା ହୋଇଥିଲା । କ୍ଲାସ ସମୟକୁ ଛାଡ଼ି ଅନ୍ୟ ସମୟରେ ଲାଇବ୍ରେରୀ ପ୍ରାୟ ଖୋଲା ରହୁଥିଲା । କେଉଁ ବହିରେ ବିଷୟଟି ଅଛି ଏବଂ କେଉଁ ଲେଖକଙ୍କର ବହି ସାହାଯ୍ୟ କରିବ ତାହା କ୍ଲାସରେ ପଢ଼ାଇଲା ବେଳେ ଚିତ୍ତଭାଇ କହି ଦେଉଥିଲେ ଏବଂ ତାହା ଆମେ ଲାଇବ୍ରେରୀକୁ ଆହରଣ କରୁଥିଲୁଁ । ସଂସ୍କୃତ ଏବଂ ଇଂରାଜୀ ଭାଷାକୁ ବିଶେଷ ଭାବେ ଏକ ସ୍ୱତନ୍ତ୍ର କ୍ଲାସରେ ଚିତ୍ତଭାଇ ଶିକ୍ଷା ଦେଉଥିଲେ । ଏହା ନିର୍ଦ୍ଧାରିତ କ୍ଲାସ ସମୟର ବାହାରେ ଅଧଘଣ୍ଟାର କ୍ଲାସ ଏଥିପାଇଁ ଗାଧୋଇବା ପାଇଁ ଉଦ୍ଦିଷ୍ଟ ସମୟ ସକାଳ ୯.୦୦ରୁ ୯.୩୦ ପର୍ଯ୍ୟନ୍ତ ଚାଲୁଥିଲା । ଯେଉଁମାନେ ଆଗ୍ରହୀ ଥିଲେ ସେମାନେ ଗାଧୋଇବା କାମ ସକାଳୁ ଶେଷ କରି ଦେଉଥିଲେ ଓ କ୍ଲାସରେ ଯୋଗ ଦେଉଥିଲେ ।

ଚିତ୍ତଭାଇ ଲାଇବ୍ରେରୀକୁ ଅଧିକ ଗୁରୁତ୍ୱ ଦେଇଥିଲେ । ତେଣୁ ବହୁ ମୂଲ୍ୟ ତଥା ଉଚ୍ଚକୋଟୀର ପୁସ୍ତକରେ ଲାଇବ୍ରେରୀ ଭରିଥିଲା । ଏପରି ଏକ ଗ୍ରନ୍ଥାଗାର ତତ୍କାଳୀନ କଲେଜ ମାନଙ୍କରେ ମଧ୍ୟ ଦୁର୍ଲଭ ଥିଲା । ଗୃହ ନିର୍ମାଣ ପାଇଁ ଆସିଥିବା ଅନୁଦାନ ଅର୍ଥକୁ ଚିତ୍ତଭାଇ ବିଜ୍ଞାନ ସାମଗ୍ରୀ ଏବଂ ଲାଇବ୍ରେରୀ ପାଇଁ ପୁସ୍ତକ କିଣାରେ ଖର୍ଚ୍ଚ କରି ଦେଲେ ଫଳରେ ଉପର ମହଲରୁ କୈଫିୟତ ଦେବାପାଇଁ ନୋଟିସ ଆସିଲା । ଏହାର

ଜବାବରେ ଚିତ୍ତଭାଇ ସମଗ୍ର ଓଡ଼ିଶାର ହାଇସ୍କୁଲ ହେଡ୍‌ମାଷ୍ଟରମାନଙ୍କ ସମାବେଶରେ ଅନୁଷ୍ଠିତ ସଭାରେ ଭାଷଣ ଦେଇ ଶିକ୍ଷା ବ୍ୟବସ୍ଥାରେ ସରକାରୀ ହସ୍ତକ୍ଷେପରେ ସମାଲୋଚନା କରି କହିଲେ ଆମେ ଏଭଳି ବୋମା ନିର୍ମାଣ କରୁଛୁ ଯେଉଁ ଗୁଡ଼ିକ କି ଓଡ଼ିଶାରେ ସର୍ବତ୍ର ବିଛାଡ଼ି ହୋଇ ବିସ୍ଫୋରଣ ଘଟାଇବ । ସେତେବେଳେ ଡ଼ି.ପି.ଆଇଙ୍କ ତାଗିଦ କାମ କରିବ ନାହିଁ । ସଭାରେ ଡ଼ି.ପି.ଆଇ ଉପସ୍ଥିତ ଥିଲେ । କ୍ରୁଦ୍ଧ ହୋଇ ସ୍କୁଲକୁ ଅନୁଦାନ ବନ୍ଦ କରି ଦେଲେ । ଚିତ୍ତଭାଇ ଆଶାବାଦୀ । ତାଙ୍କର ଦୃଢ଼ଆଶା ନିଶ୍ଚୟ ଦିନେ ଅନ୍ୟାୟ ଅତ୍ୟାଚାର ଦୂର ହେବ । ଅନ୍ଧକାର ଦୂର ହେବ ଓ ସୂର୍ଯ୍ୟଉଦୟ ହେବ । ବିଦେଶରେ ସେ ଶିକ୍ଷାନୁଷ୍ଠାନଗୁଡ଼ିକୁ ଦେଖି ତହିଁରୁ ସାର ସଂଗ୍ରହ କରି ନୂଆ କରି ଏକ ପ୍ରୟୋଗ କରିଥିଲେ । ଆମମାନଙ୍କୁ ଯୋଗ୍ୟ କରିବାକୁ ସେ ସବୁ ରକମର ପ୍ରୟାସ କରିଛନ୍ତି । ଛାତ୍ରମାନେ ନିର୍ଭିକ ହୋଇ ବାହାରିବେ ଏବଂ ସମାଜ ପରିବର୍ତ୍ତନରେ ସହାୟକ ହେବେ ବୋଲି ତାଙ୍କର ଦୃଢ଼ ଆଶା ଥିଲା । ସେହି ଆଶା ଯୋଗୁ ସେ ଡ଼ି.ପି.ଆଇଙ୍କୁ ଶୁଣାଇଥିଲେ ଚେ଼ତାବନୀ । ମାତ୍ର ବିଧିର ବିଡ଼ମ୍ବନା ଏଭଳି ଶିକ୍ଷାନୁଷ୍ଠାନକୁ ସରକାର ସ୍ୱୀକାର କଲେ ନାହିଁ । ପ୍ରାୟ ଠିକ୍ ଏହି ସମୟରେ ଭସିଲି ସୁଖୋମିଲନ୍‌ସ୍କି ରୁଷିଆ ଦେଶରେ ୧୯୫୧ରେ ଏକ ସ୍କୁଲ ଆରମ୍ଭ କରି ପାରମ୍ପରିକତାକୁ ଭାଙ୍ଗି ନୂତନ ପ୍ରୟୋଗ ମାନ କରିଥିଲେ । ସାମ୍ୟବାଦୀ ରାଷ୍ଟ୍ର ହେଲେ ମଧ୍ୟ ରୁଷିଆ ଦେଶ ସରକାର ତାଙ୍କୁ ସୁଯୋଗ ଦେଲେ । ଏପରିକି ତାଙ୍କର ଅନୁଭବ ଗୁଡ଼ିକୁ ବହି ଆକାରରେ ଛପାଇଲେ ମଧ୍ୟ । ଅଥଚ଼ ଆମର ଗଣତାନ୍ତ୍ରିକ ରାଷ୍ଟ୍ରରେ ତାହା ସମ୍ଭବ ହେଲା ନାହିଁ । ଯେଉଁଠି ସରକାର ଉଚ୍ଚଶିକ୍ଷାପାଇଁ ବିଦେଶକୁ ଛାତ୍ର ପଠାନ୍ତି ଅଥଚ଼ ସେମାନଙ୍କର ଅନୁଭବ ସିଦ୍ଧ ଜ୍ଞାନ କୌଶଳକୁ ପ୍ରୟୋଗ କରିବାକୁ ସୁଯୋଗ ଦିଅନ୍ତି ନାହିଁ- ଏହା ଦୁଃଖଦାୟକ ଘଟଣା । ଏଥିପାଇଁ ଚି଼ତ୍ତଭାଇ ମ୍ରିୟମାଣ ହୋଇଛନ୍ତି । ଯେଉଁ କାରଣରୁ ସେ ଜୀବନ ବିଦ୍ୟାଳୟ ଛାଡ଼ିଲେ ତଥା ଯେଉଁମାନଙ୍କ ଯୋଗୁ ଅନୁଷ୍ଠାନ ଭାଙ୍ଗିଲା ସେସବୁ ପ୍ରତି ତାଙ୍କର ଅସନ୍ତୋଷ ତାଙ୍କ ଲେଖାରେ ଏକାଧିକ ସ୍ଥାନରେ ଦେଖିବାକୁ ପାଇବା । ବିଦେଶରୁ ଉଚ୍ଚଶିକ୍ଷା ଲାଭ କରି ବାବୁ ହେବା, ଅଧିକ କ୍ଷମତା ଅଧିକ ସମ୍ପତ୍ତିର ଅଧିକାରୀ ହେବା ଇତ୍ୟାଦି ମାନସିକତା ରଖି ଅନେକେ ବିଦେଶ ଯାଆନ୍ତି । ବିଦେଶରୁ ଫେରି ତଦନୁରୂପ ଆଚ଼ରଣ କରନ୍ତି । ସାଧାରଣଙ୍କ ଠାରୁ ସ୍ୱତନ୍ତ୍ର ଏକ ଜୀବନ ବଞ୍ଚନ୍ତି ମାତ୍ର ଚି଼ତ୍ତଭାଇଙ୍କ ସେଭଳି ମହତ୍ୱାକାଂକ୍ଷା ନାହିଁ । ଦେଶରୁ ଦୁଃଖ ଦାରିଦ୍ର୍ୟ ଦୂର କରିବାର ଚିନ୍ତା ତାଙ୍କୁ ଘାରିଛି । ୬-୩-୫୧ର ତାଙ୍କ ଡ଼ାଏରୀରୁ "ଦୁଃଖ ଦାରିଦ୍ର୍ୟ ଓ କିଇଁବାର ଦୀନତା ଉପରେ ମୋ ଦେଶରେ ଯେଉଁ ଦାରୁଣ ଦହନ ମଣିଷକୁ ମାରି ମାରି ପକାଉଛି ସେହି ଦହନର ନିଆଁର ଜୀବନକୁ ଉଭାସିତ କରି ପାରିବାର

ଜ୍ୟୋତିଟିକୁ ପାଇବାର କୌଶଳ ମୁଁ ଯେପରି ଲାଭ କରିପାରେ ମୋର ଏହାହିଁ ପ୍ରାର୍ଥନା । ମୁଁ କ'ଣ ସତେ ପାରିବି ? ଏଠିକାର ନାନା ବିଳାସ ଏବଂ ପ୍ରଲୋଭନକୁ ଭେଦକରି ଏ ଦେଶରୁ ସାର ନେଇ ମୁଁ ସତେ ମୋ ଦେଶରେ ମଂଜି ପକାଇ ଫଳ ଫଳାଇ ପାରିବି ?"

ଚିତ୍ତଭାଇ ୧୯୫୮ରେ ଚଂପତିମୁଣ୍ଡା (ଜୀବନ ବିଦ୍ୟାଳୟ) ଛାଡ଼ିଲେ । ତାଙ୍କ ସ୍ନେହ ମୋତେ ଆକୃଷ୍ଟ କରିଥିଲା । ତାହା ଏତେ ନିବିଡ଼ ଥିଲା ଯେ ତାଙ୍କ ବିନା ଜୀବନ ବିଦ୍ୟାଳୟର ଜୀବନ, ଅସ୍ତିତ୍ୱ ନାହିଁ ବୋଲି ମୁଁ ଭାବି ନେଇଥିଲି । ତେଣୁ ସେ ବିଦ୍ୟାଳୟ ଛାଡ଼ିବେ ବୋଲି ଶୁଣିବା ମାତ୍ରେ ହତାଶ ହୋଇ ପଡ଼ିଲି ଓ ସଠିକ ଭାବେ ଜାଣିବା ପରେ ମୁଁ ମଧ୍ୟ ସବୁଦିନ ପାଇଁ ବିଦ୍ୟାଳୟରୁ ବିଦାୟ ନେଇ ଚାଲି ଆସିଲି । ଏହା ଭାବପ୍ରବଣତା ବୋଲି କହିଲେ ମଧ୍ୟ ମୋର ଧାରଣା ସତ୍ୟରେ ପରିଣତ ହୋଇଛି । ଚିତ୍ତଭାଇଙ୍କ ପ୍ରସ୍ଥାନ ପରେ ଜୀବନ ବିଦ୍ୟାଳୟର ଜୀବନ ଦୀପ ଲିଭିଯାଇଛି । ଏବେ କେବଳ ଉଚ୍ଚ ବିଦ୍ୟାଳୟ ହୋଇ ରହିଛି । ଏହା ଭିତରେ ପଚାଶ ବର୍ଷ ଅତୀତ ହୋଇଗଲାଣି । ତାଙ୍କର ବିସ୍ମୃତି ବଢ଼ି ସବୁ ଦିଗକୁ ଆଚ୍ଛାଦିତ କରିଛି । ସେତେବେଳେ ମାତ୍ର କେତେ ଜଣ ପିଲାଙ୍କର ଚିତ୍ତଭାଇ ଥିଲେ ଏବେ ସାରା ଓଡ଼ିଶାରେ ଚିତ୍ତଭାଇ ନାମରେ ପରିଚୟ ପାଇ ସାରିଲେଣି । ଲେଖା ଲେଖିରେ ଓଡ଼ିଶାର ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ସବୁ ବିଭାଗର ଲେଖାରେ ତାଙ୍କର ସାହିତ୍ୟକୃତି ବିଶାଳକାୟ ହୋଇଛି । ସେ ବିଷୟରେ ଆଲୋଚନା କରିବାକୁ ମୋର କ୍ଷମତା ନାହିଁ । ତାଙ୍କର ଲେଖାରୁ ଯେତିକି ପଢ଼ିଛି ତା' ଭିତରୁ ଯେଉଁଟା ମୋତେ ବିସ୍ମିତ ଓ ଆକୃଷ୍ଟ କରିଛି ସେଭଳି ଗୋଟାଏ ଦୁଇଟା କଥା ଲେଖୁଛି ।

ଚିତ୍ତଭାଇ ଭାରତଛାଡ଼ ଆନ୍ଦୋଳନରେ ଯୋଗ ଦେଇଥିଲେ । ୧୯୪୨-୪୫ ତିନିବର୍ଷ ଥରକୁ ଥର ଜେଲ୍ ଯାଇଛନ୍ତି । ତା'ପୂର୍ବରୁ ମଧ୍ୟ ହାଇସ୍କୁଲରେ ପଢ଼ିବାବେଳୁ ସେ ବ୍ରିଟିଶ ସରକାର ବିରୁଦ୍ଧରେ ବିଦ୍ରୋହ ଭାବନା ରଖିଥିଲେ । ଦଶମଶ୍ରେଣୀରେ ପଢୁଥିବା ବେଳେ ଛାତ୍ର ଧର୍ମଘଟ ବେଳେ ଧାରଣା ସତ୍ୟାଗ୍ରହରେ ଯୋଗଦେଇ ଜେଲ୍ ଯାଇଥିଲେ । ଏହି ସ୍କୁଲ ଜୀବନରୁହିଁ ସାମ୍ୟବାଦୀ ବିଚାର ଧାରା ପ୍ରତି ଆକୃଷ୍ଟ ହୋଇଛନ୍ତି । ମାତ୍ର ତାହା ମୁଖ୍ୟ ଧାରା ହୋଇନାହିଁ । ତା' ଉପରେ ପୁଟ ଦେଇ ଗାନ୍ଧି ବିଚାରଧାରା ତାଙ୍କ ଉପରକୁ ମାଡ଼ି ଆସିଛି । ତହିଁରେ ସେ ବିଶେଷ ପ୍ରଭାବିତ ହୋଇ ଜେଲ୍ ଭିତରେ ଥିଲାବେଳେ ଗାନ୍ଧି ରଚନାବଳୀର ଓଡ଼ିଆ ଅନୁବାଦ କରିଛନ୍ତି । ଜେଲ୍‌ରୁ ମୁକୁଳିବା ପରେ ସେ ଶାନ୍ତି ନିକେତନକୁ ପଢ଼ିବାକୁ ଗଲେ । ୧୯୪୫ରୁ ୧୯୫୦ ଏହି

ପାଞ୍ଚ ବର୍ଷ ଭିତରେ ରବୀନ୍ଦ୍ର ସାହିତ୍ୟ ତଥା ଦର୍ଶନ ସହିତ ତାଙ୍କର ନିଗୁଢ଼ ସଂପର୍କ ସ୍ଥାପିତ ହୋଇଛି । ରବୀନ୍ଦ୍ରନାଥ ତାଙ୍କ ହୃଦୟ ଭିତରେ ମୁଖ୍ୟ ସ୍ଥାନ ପାଇଛନ୍ତି । ଜୀବନ ବିଦ୍ୟାଳୟରେ ତାଙ୍କର ରହଣିଯାକ ଭିତରେ ପ୍ରାର୍ଥନା ଗୁଡ଼ିକ ପ୍ରାୟ ବଙ୍ଗଳା ଭାଷାରେ ତାଙ୍କରି ମୁହଁରୁ ବାହାରି ଆସୁଥିଲା ସେଗୁଡ଼ିକ ରବୀନ୍ଦ୍ର ସଙ୍ଗୀତ ହିଁ ଥିଲା । ଆକାଶରେ ମୌସୁମୀ ମେଘର ଆଡ଼ମ୍ବର ସହିତ ଚିତ୍ତଭାଇଙ୍କ ମୁଖରୁ ନିଃସୃତ 'ଏ ମେଘେର କୋଲେ କୋଲେ ଯାଏରେ ଚଲେ ବକେର ପ୍ରାଥୀ'ର ଗାନ ବାତାବରଣକୁ ସରସ କରି ଦେଉଥିଲା । କ୍ଲାସ ବନ୍ଦ ହୋଇଯାଉଥିଲା । ପିଲାମାନେ ମଧ୍ୟ ସୁରରେ ସୁର ମଳାଇ ଗାଇ ଯାଉଥିଲେ । ଦିନେ ଦିନେ ବର୍ଷା ପଡ଼ିଲେ କ୍ଲାସ ବନ୍ଦ କରି ପାଣିରେ ତିନ୍ତି ଅନ୍ୟ ପିଲାଙ୍କୁ ମଧ୍ୟ ବାରଣ୍ଡାରୁ ଟାଣି ନେଇ ବର୍ଷା ଉପଭୋଗ କରୁଥିଲେ । କ୍ଲାସ ଗୁଡ଼ିକ ପ୍ରାୟ ଶ୍ରେଣୀ ଗୃହରେ ନ ହୋଇ ପ୍ରକୃତି କୋଳରେ ଗଛମୂଳେ ହେଉଥିଲା । ତାଙ୍କ ନିଜ ଲାଇବ୍ରେରୀରେ ଏତେ ବଡ଼ ବଡ଼ ବହି କି ବହି ବୋଲି ଦିନେ ମୁଁ ତାଙ୍କୁ ପଚାରିଲି । ସେ କହିଲେ ଏ ସବୁ ରବୀନ୍ଦ୍ର ଗ୍ରନ୍ଥାବଳୀ ପରା ! ସଂପୂର୍ଣ୍ଣ ସେଟ୍‌ଟି ତାଙ୍କ ପାଖରେ ଥିଲା । ଏଗୁଡ଼ିକ କ'ଣ କରିବେ ବୋଲି ମୁଁ କହିବାରୁ ବିନୋଦପୂର୍ଣ୍ଣ ଢ଼ଙ୍ଗରେ କହିଲେ ମୋର ଯେତେବେଳେ ଗୁଜରାଣ ମେଣ୍ଟାଇବାକୁ କିଛି ନ ଥିବ ସେତେବେଳେ ପରା ଏଗୁଡ଼ିକ କାମ ଦେବ । ବିକ୍ରି କରି ଚଳିବି । ଗାନ୍ଧିଜୀଙ୍କର ମୌଳିକ ଶିକ୍ଷାପଦ୍ଧତି ପଢ଼ି ଆକୃଷ୍ଟ ହୋଇ ଚଂପତିମୁଣ୍ଡା ଜୀବନ ବିଦ୍ୟାଳୟରେ ସେ ପ୍ରୟୋଗ ଆରମ୍ଭ କଲେ । ଏଠାରେ ଗାନ୍ଧି ଏବଂ ରବୀନ୍ଦ୍ର ଦର୍ଶନର ସମନ୍ୱୟ ଘଟିଛି । ଏହିପରି ମାର୍କ୍ସ, ଗାନ୍ଧି ଏବଂ ରବୀନ୍ଦ୍ରନାଥଙ୍କ ପ୍ରଭାବ ତାଙ୍କ ଉପରେ ପଡ଼ିଛି । ଏହାପରେ ସେ ଅରବିନ୍ଦଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ମାର୍କ୍ସ ଗୌଣ ହୋଇ ରହିଛନ୍ତି ଏବଂ ଗାନ୍ଧି, ରବୀନ୍ଦ୍ରନାଥ ଏବଂ ଅରବିନ୍ଦ ତିନିଜଣଙ୍କ ଦ୍ୱାରା ପ୍ରଭାବିତ ହୋଇଥିବା କଥା ସେ ଲେଖିଛନ୍ତି ମଧ୍ୟ ।

ଚିତ୍ତଭାଇ ଜଣେ ସ୍ୱାଭିମାନୀ ଓଡ଼ିଆ, ଖାଣ୍ଟି ଓଡ଼ିଆ । ଏହା ତାଙ୍କର ଶ୍ରେଷ୍ଠ ପରିଚୟ । ଅନେକ ଜ୍ଞାନୀଲୋକ ସଭାମଂଚ ଉପରେ ଓଡ଼ିଶାର ଭାଷା, ସଂସ୍କୃତି, ଐତିହ୍ୟ ସମ୍ବନ୍ଧରେ ସାରଗର୍ଭକ ଭାଷଣ ମାନ ଦିଅନ୍ତି ମାତ୍ର ଆଚରଣରେ ସେ ସବୁଥିର ବ୍ୟତିକ୍ରମ ଘଟାଇଥାନ୍ତି । ସ୍ୱୟଂ ଉତ୍କଳ ଗୌରବ ମଧୁବାବୁ ମଧ୍ୟ ଇଂରେଜୀ ଭାଷାରେ ହିଁ ତାଙ୍କର ଲେଖାଲେଖି ସମସ୍ତ କାର୍ଯ୍ୟ କରୁଥିଲେ । ଉତ୍କଳମଣି ଗୋପବଂଧୁ ଦାଶ ମଧ୍ୟ ଇଂରେଜୀ ଭାଷା ପ୍ରତି ଦୁର୍ବଳତା ରଖିଥିଲେ ମାତ୍ର ଚିତ୍ତଭାଇଙ୍କ କହିବାରେ ଏବଂ ଆଚରଣରେ କୌଣସି ପାର୍ଥକ୍ୟ ନ ଥାଏ । ସେ ସବୁବେଳେ ଓଡ଼ିଆରେ ଚିଠି ଲେଖନ୍ତି କୌଣସି ଓଡ଼ିଆ ପାଖକୁ ଇଂରାଜୀରେ ଲେଖନ୍ତି ନାହିଁ । ଓଡ଼ିଆଙ୍କ ପାଇଁ ଓଡ଼ିଆ ଭାଷାରେ ଭାଷଣ ଦିଅନ୍ତି । ଶ୍ରୋତାମାନେ ଇଂରେଜୀ ଭାଷା ଜାଣିଥିଲେ ମଧ୍ୟ ଓଡ଼ିଆରେ

ହିଁ ଭାଷଣ ଦିଅନ୍ତି । ଥରେ ସେ ଜ୍ୟୋତି ବିହାର (ସମ୍ବଲପୁର ବିଶ୍ୱବିଦ୍ୟାଳୟ)କୁ ଆସିଥାନ୍ତି ଏକ ସେମିନାରରେ ଭାଷଣ ଦେବାକୁ । ମୁଁ ଏବଂ ଶଶିଭାଇ (ଜୀବନ ବିଦ୍ୟାଳୟର ପୁରାତନ ଛାତ୍ର) ଉପସ୍ଥିତ ଥିଲୁ । ଛାତ୍ରମାନେ ଜାଣିଥାନ୍ତି ସେ ବିଦେଶ ଫେରନ୍ତା ଲୋକ । ବିଦେଶରେ ଅଧ୍ୟାପନା କରିଛନ୍ତି । ଇଂରାଜୀରେ ଭଲ କହି ପାରୁଥିବେ । ତେଣୁ ଉତ୍ସୁକତାବଶତଃ ଅନୁରୋଧ କରୁଥାନ୍ତି । ମାତ୍ର ଚିତ୍ତଭାଇ ନ ଛୋଡ଼ବନ୍ଧା, ଓଡ଼ିଆ ଭାଷାରେ ହିଁ କହିଲେ । ସେ କିପରି ଓଡ଼ିଆ ତାଙ୍କ ଡ଼ାଏରୀରୁ- "ସଂସାରରେ ସବୁ ଦେଶରେ ଓ ସବୁ ପ୍ରାନ୍ତରେ ମୋର ସ୍ନେହର ସୂତ୍ର ଲାଗି ରହିଥିଲେ ମଧ୍ୟ ତଥାପି ଓଡ଼ିଶା ସହିତ ଗୋଟିଏ ଏପରି ସମ୍ବନ୍ଧରେ ସୂତ୍ର ଲାଗି ରହିଛି ଯାହାକୁ ମୁଁ ଅନ୍ୟ କୌଣସିଠାରେ ଅନୁଭବ କରିପାରେ ନାହିଁ । ଓଡ଼ିଆ ଭାଷା ପ୍ରତି ମଧ୍ୟ ସେହିପରି ଏକ ଏକାନ୍ତ ସମ୍ବନ୍ଧ ସୂତ୍ର ଲାଗି ରହିଛି । ମୋର ଜନ୍ମଭୂମିକୁ ମୁଁ ସ୍ୱର୍ଗଠାରୁ ଗରୀୟସୀ ବୋଲି କହେ ନାହିଁ । ମୋର ମାତୃଭାଷାକୁ ମୁଁ ସବୁ ଭାଷାଠାରୁ ବଡ଼ ବୋଲି ଦେଖାଇବାରେ କୌଣସି ଆଗ୍ରହ ପ୍ରକାଶ କରିପାରେ ନାହିଁ । ତଥାପି ଆପଣାର ଜନ୍ମଭୂମି ସହିତ ମୁଁ ଅନେକ ମମତାର ସୂତ୍ରରେ ବନ୍ଧାହୋଇ ରହିଛି । ମୋର ଆପଣା ଭାଷା ସହିତ ମୋର ଅନେକ ମମତାର ସମ୍ବନ୍ଧ ରହିଛି ଯେଉଁ ମମତା ଓ ଯେଉଁ ସମ୍ବନ୍ଧକୁ କି ମୁଁ ମୋ ଜୀବନର ଅତି ମୂଲ୍ୟବାନ ଆଧାର ଓ ସତ୍ୟ ରୂପେ ଗ୍ରହଣ କରି ଶିଖିଛି । ସଂସାରର ଯେଉଁ ଭାଷାକୁ ମୁଁ ଜୀବନର ମାଧ୍ୟମରେ ଶିଖିଛି । ଯେଉଁ ଭାଷା ସାହାଯ୍ୟରେ ମୁଁ ଭାବୁଛି । ଯେଉଁ ଭାଷା ଏ ପର୍ଯ୍ୟନ୍ତ ମୋର ଅସଂଖ୍ୟ ଭାବ ଓ ଭାବନାକୁ ପ୍ରକାଶ ରୂପ ଦେଉଛି ସେହି ଭାଷା ସହିତ ମୋର ଅନେକ ମମତା ଜଡ଼ିତ ରହିଛି । ଏହା ଭଲ ଭାଷା କି ମନ୍ଦ ଭାଷା "ମୁଁ ସେ କଥା ପ୍ରମାଣ ଦେଖାଇ କହି ପାରିବି ନାହିଁ । କିନ୍ତୁ ଏହା ମୋର ଭାଷା ଓ ଏହା ମୋର ଭୂମି ଏବଂ ଏଇଥି ସକାଶେ ଏହି ଭାଷା ଓ ଏହି ଭୂମି ମୋର ଏତେ ପ୍ରିୟ" (ରୋହିତର ଡ଼ାଏରୀ ୨୬.୦୪.୧୯୬୨) ସେ ଓଡ଼ିଶାକୁ ଭଲ ପାଆନ୍ତି । ଓଡ଼ିଆ ଭାଷାକୁ ଭଲ ପାଆନ୍ତି ତେଣୁ ସେ ଓଡ଼ିଆ ଭାଷାରେ ଯେଉଁ ଅଭାବ ଅନୁଭବ କରିଛନ୍ତି ତାହା ପୂରଣ କରିବାପାଇଁ ବିଦେଶୀ ଭାଷାରୁ ଯେଉଁ ବହିଗୁଡ଼ିକ ଦିନେ ପାଶ୍ଚାତ୍ୟ ଦେଶରେ ଆଲୋଡ଼ନ ସୃଷ୍ଟି କରିଥିଲା ସେହିଭଳି ପୁସ୍ତକ, ଯାହା ସେ ଆବଶ୍ୟକ ମନେ କରିଛନ୍ତି ସେଗୁଡ଼ିକୁ ଓଡ଼ିଆରେ ଅନୁବାଦ କରିଛନ୍ତି । ଓଡ଼ିଶାରେ ଅନେକ କଥିତ ଭାଷା ରହିଛି । ପଶ୍ଚିମ ଓଡ଼ିଶାର କଥିତ ସମ୍ବଲପୁରୀ ଭାଷାର ଶବ୍ଦମାନ ତାଙ୍କ ଲେଖାରେ ଦେଖିବାକୁ ପାଇବା । ଜାତୀୟ ସଂହତି ପାଇଁ ଏହା ସହାୟକ ହୋଇଛି ଏବଂ ଭାଷାକୁ ସମୃଦ୍ଧ କରିବାରେ ମଧ୍ୟ । ତାଙ୍କ ଭାଷାରେ "ପୃଥିବୀରେ ଆଉ ଯେତେ ଭାଷା ଓ ସାହିତ୍ୟର ଘର ସହିତ କିଞ୍ଚିତ ପରିଚୟ

ହୋଇଥିଲା ସବୁ ଘରୁ ସମ୍ପଦ ବୋହିଆଣି ଏହି ଘରଟିକୁ ଭରିଦେବା ପାଇଁ ମନ ହେଲା ।''

ଚିତ୍ତଭାଇ ଭିନ୍ନ ଦୃଷ୍ଟିର ମଣିଷ । ତାଙ୍କର ଦୃଷ୍ଟି ଅନ୍ୟମାନଙ୍କଠୁ ଭିନ୍ନ ସେ ସଂସାରକୁ ଭିନ୍ନ ଦୃଷ୍ଟିରେ ଦେଖିଛନ୍ତି । ମିତ୍ର ଦୃଷ୍ଟିରେ ଦେଖିଛନ୍ତି ତେଣୁ ତାଙ୍କ ଆତ୍ମ ଜୀବନୀର ଶୀର୍ଷକ ମିତ୍ରସ୍ୟ ଚକ୍ଷୁସା ରଖିଛନ୍ତି । ମିତ୍ର ଭାବରେ ବଂଧୁ ଭାବରେ ସମଗ୍ର ଜଗତକୁ ଆପଣାର ମନେ କରିଛନ୍ତି । ପାଶ୍ଚାତ୍ୟ ଜଗତରେ ଅନେକ ଗୁଣି ବ୍ୟକ୍ତିଙ୍କ ସହିତ ବଂଧୁତା ସୂତ୍ରରେ ବାନ୍ଧି ହୋଇଛନ୍ତି । ଅନେକ ପରିବାରର ବଂଧୁ ହୋଇ ଯାଇଛନ୍ତି । ଏହି ବଂଧୁ ଅର୍ଜନ ସ୍ୱାଭାବିକ ଭାବରେ ଘଟିଛି । ଏହା ତାଙ୍କ ଚରିତ୍ରର ଏକ ବୈଶିଷ୍ଟ୍ୟ । କେବେ ହେଲେ ସେ ହୋଟେଲର ଆଶ୍ରା ନିଅନ୍ତି ନାହିଁ । ବଂଧୁଘରେ ଖାଇବେ, ବଂଧୁଘରେ ରହିବେ । ତାଙ୍କ ସହିତ ବଂଧୁତାକୁ ଆହୁରି ନିବିଡ଼ କରନ୍ତି । ଏତଦ୍‌ବ୍ୟତୀତ ତାଙ୍କର ଭିନ୍ନ ଦୃଷ୍ଟି ମଧ୍ୟ ରହିଛି । ଅନ୍ୟ ମାନଙ୍କୁ ଯେଉଁଟା ଦିଶେ ନାହିଁ ତାହା ତାଙ୍କୁ ଜଳ ଜଳ ଦିଶେ । ଉତ୍କଳ ସମ୍ମିଳନୀ ପ୍ରତି ତାଙ୍କର ଦୃଷ୍ଟି କଥା କୁହାଯାଇପାରେ । ଉତ୍କଳ ସମ୍ମିଳନୀ ଗଢ଼ାହେଲା । ତଦନାନ୍ତୀନ ଉତ୍କଳର ବରପୁତ୍ର ରାଜା ମହାରାଜା ମାନେ ତହିଁର କର୍ମକର୍ତ୍ତା ଥିଲେ । ମଧୁବାବୁଙ୍କ ଭଳି ବୁଦ୍ଧିଜୀବି ମଧ୍ୟ ଥିଲେ । ଶେଷରେ ଉତ୍କଳ ପ୍ରଦେଶ ଗଢ଼ା ହେଲା । ଆମ୍ଭେମାନେ ତହିଁର ଭୂରି ଭୂରି ପ୍ରଶଂସା କଲୁଁ । ଗୌରବ ଗାନରେ ଓଡ଼ିଶାର ମଂଚ କମ୍ପି ଉଠିଲା । ମାତ୍ର ଏହା ପଛରେ ଏ ନେତାମାନଙ୍କର ଉଦ୍ଦେଶ୍ୟ କ'ଣ ଥିଲା ? ଏହା କେହି ଜାଣିପାରି ନ ଥିଲେ । କିପରି ଓଡ଼ିଶାର ସ୍ୱପ୍ନ ସେମାନେ ଦେଖିଥିଲେ ତାହା ମଧ୍ୟ ଜାଣି ପାରିଲେ ନାହିଁ । ସ୍ୱାଧୀନତା ପରେ ଦେଶୀୟ ରାଜ୍ୟ ଗୁଡ଼ିକର ମିଶ୍ରଣ କାଳରେ ତାହା ସ୍ପଷ୍ଟ ହୋଇଗଲା । ସେମାନଙ୍କ ମନ ଭିତରର ଗୁମର ପଦାରେ ପଡ଼ିଗଲା । ଓଡ଼ିଶା ସହିତ ମିଶିବାକୁ ସେମାନେ ସମ୍ମତ ହେଲେ ନାହିଁ । ସେମାନେ ଧରାପଡ଼ିଗଲେ । କେନ୍ଦ୍ରର କଠୋର ମନୋଭାବ ଫଳରେ ସେମାନେ ନୀରବ ରହିଲେ । ସମ୍ମତ ହେଲେ । ଓଡ଼ିଶା ସହିତ ଗଡ଼ଜାତ ଗୁଡ଼ିକର ମିଶ୍ରଣ ହେଲା । ଉତ୍କଳ ସମ୍ମିଳନୀ ଭିତରେ କ'ଣ ସବୁ ଚାଲିଥିଲେ ଏ ସବୁ ରହସ୍ୟ କଥା ଚିତ୍ତଭାଇଙ୍କ ସନ୍ଧାନୀ ଦୃଷ୍ଟିରୁ ବାଦ୍ ପଡ଼ନ୍ତା କିପରି । ସେ ତହିଁର ରହସ୍ୟୋଦ୍‌ଘାଟନ କଲେ । ଉତ୍କଳ ଗୌରବଙ୍କ ଗୌରବ ଉପରେ ପ୍ରଶ୍ନ ଚିହ୍ନ ଲାଗିଗଲା । ଜୀବନୀକାର ଭାବରେ ତାଙ୍କର ଦୃଷ୍ଟିକୋଣ ମଧ୍ୟ ଅନ୍ୟମାନଙ୍କଠାରୁ ଭିନ୍ନ 'ଭିନ୍ନ କଣେ ବିବେକାନନ୍ଦ'ରେ ବିବେକାନନ୍ଦଙ୍କୁ ମହାପୁରୁଷ ଭାବରେ ସେ ଦେଖିନାହାନ୍ତି । ସାଧାରଣ ଜଣେ ମଣିଷ ଭାବରେ ତାଙ୍କର ଗୁଣ ଦୋଷର ଆଲୋଚନା କରିଛନ୍ତି । ସେହିଭଳି ନବକୃଷ୍ଣ ଚୌଧୁରୀଙ୍କ ଜୀବନୀ ଲେଖିଲା ବେଳେ ତାଙ୍କୁ ସାଧାରଣ ଲୋକର ସ୍ତରକୁ ଆଣି ଗୁଣ

ଦୋଷର ଆଲୋଚ଼ନା କରିଛନ୍ତି । ଓଡ଼ିଆ ସାହିତ୍ୟରେ ଭିନ୍ନ ସ୍ୱାଦର ପୁସ୍ତକ ଭାବରେ ସ୍ଥାନ ପାଇଥିବା ଏହି ପୁସ୍ତକ ଦୁଇଟି ଆଲୋଚ଼ନା ମୂଳକ ହୋଇଛି । ସେହିଭଳି ଗଙ୍ଗାଧର ମେହେରଙ୍କ କାବ୍ୟକୃତି ଉପରେ ତାଙ୍କର ଆଲୋଚ଼ନାରେ ମଧ୍ୟ ନୂତନତା ରହିଛି । ଅନ୍ୟମାନେ ତାଙ୍କଠାରେ ଯାହା ଦେଖିପାରି ନାହାନ୍ତି ଚ଼ିତ୍ତଭାଇ ଦେଖିପାରିଛନ୍ତି । ଭୀମଭୋଇଙ୍କ ସାରସ୍ୱତ ସାଧନା ଏବଂ ସାହସ ପାଇଁ ପ୍ରଶଂସାରେ ସେ ମୁଖର । ପ୍ରତିକୂଳ ପରିସ୍ଥିତିରେ ସମସ୍ତ ବାଧାବିଘ୍ନକୁ ଅତିକ୍ରମ କରି ସନ୍ଥ ସାହିତ୍ୟ କଥିତ ଭାଷାରେ ଯେପରି ଭାବରେ ଲୋକାଭିମୁଖି ହେଲା ସେଥିପାଇଁ ସଂପୃକ୍ତ ସନ୍ଥ ମାନଙ୍କର ପ୍ରଶଂସା କରିଛନ୍ତି । ଚ଼ିତ୍ତଭାଇ ମାଟିର ମଣିଷ । ମଣିଷକୁ ଭଲ ପାଆନ୍ତି । ଓଡ଼ିଆ କହିଲେ ସମଗ୍ର ଓଡ଼ିଶାରେ ବାସ କରୁଥିବା ଲୋକଙ୍କୁ ବୁଝନ୍ତି । ସାହିତ୍ୟ କହିଲେ ସମସ୍ତ ଲୋକଙ୍କ ପାଇ ଲିଖିତ ସାହିତ୍ୟକୁ ବୁଝନ୍ତି । ତେଣୁ ସରଳ ଭାଷାରେ ଲେଖନ୍ତି । ତାଙ୍କର ସାହିତ୍ୟ ଲୋକାଭିମୁଖୀ । ଦେଶ କହିଲେ ଦେଶରେ ବାସ କରୁଥିବା ସବୁ ମଣିଷଙ୍କୁ ବୁଝନ୍ତି । ଦେଶର ସ୍ୱାଧୀନତା ପାଇଁ ସଂଗ୍ରାମ କରିଥିଲେ । ସ୍ୱାଧୀନୋତ୍ତର ଭାରତର ଶାସନ ତଥା ସମାଜ ବ୍ୟବସ୍ଥା କିପରି ହେବାକଥା- ସ୍ୱପ୍ନ ଦେଖିଥିଲେ । ମାତ୍ର ଦେଶର ନେତୃତ୍ୱ ଆଶାନୁରୂପ ଦାୟିତ୍ୱ ତୁଲାଇଲା ନାହିଁ । ସ୍ୱାଧୀନତା ପୂର୍ବରୁ ଯେଉଁମାନେ ଦେଶକୁ ବଦଳାଇବାର କଥା କହୁଥିଲେ ସେହିମାନେ ଶାସନ ଭାର ଗ୍ରହଣ କଲାପରେ ସେ ସବୁ ସଂକଳ୍ପ କଥା ଭୁଲିଗଲେ । ସାମନ୍ତ ହେଲେ । ସାଧାରଣ ଲୋକଙ୍କ ପାଖକୁ ସ୍ୱାଧୀନତାର ଫଳ ପହଞ୍ଚିବାରେ ସେହିମାନେହିଁ ଅନ୍ତରାୟ ହେଲେ । ଯୋଜନା ସବୁ ଉପରୁ ହେଲା ଏବଂ ଏପରି ହେଲା ଯେ ଧନୀ ଅଧିକ ଧନୀ ହେଲା । ଦେଶରେ ଗରୀବଙ୍କ ସଂଖ୍ୟାବୃଦ୍ଧି ପାଇଲା । ଗୋଷ୍ଠୀ ଉନ୍ନୟନ ଯୋଜନା କିପରି ସଫଳ ହେଲା ନାହିଁ । ଆଶାନୁରୂପ ଫଳ ତହିଁରୁ ଫଳିଲା ନାହିଁ ଓ କାହିଁକି ଏପରି ହେଲା ତାହାର ବର୍ଣ୍ଣନା 'ସମାଜ ପରିବର୍ତ୍ତନ ଓ ବିକାଶ' ବହିରେ ବିସ୍ତୃତ ଭାବରେ କରାଯାଇଛି । ସେ କିପରି ମଣିଷକୁ ଭଲ ପାଆନ୍ତି, ମାନବଧର୍ମୀ ତାଙ୍କର ବିଚ଼ାରର ସୂଚ଼ନା ରୋହିତର ଡ଼ାଏରୀରୁ ନିମ୍ନ କେତୋଟି ଧାଡ଼ିରେ- (ଏ ସଂସାର ଭିତରେ ମଣିଷହିଁ ମୋତେ ସବୁଠାରୁ ଭଲ ଲାଗେ । ଦୁଷ୍ଟ-ଶିଷ୍ଟ ବା ଜ୍ୟେଷ୍ଠ-କନିଷ୍ଠ କିଛି ବାରିବାକୁ ମନ ହୁଏ ନାହିଁ । ମନୁଷ୍ୟକୁ ଭଲ ଅଥବା ଖରପ ବୋଲି ଚ଼ିହ୍ନି ସେହି ଅନୁସାରେ ତା' ସହିତ ନିଜର ସମ୍ବନ୍ଧର ନିରୂପଣ କରିବା ପୂର୍ବରୁ·ତା' ସହିତ ଏକ ନିବିଡ଼ ସମ୍ପର୍କ ଯୋଡ଼ି ହୋଇଯାଏ ଏବଂ ଭାରି ଭଲ ଲାଗେ । ସତେ ଯେପରି ଦୁହିଙ୍କ ଭିତରେ ସଙ୍ଗୀତ ଦୁଇଜଣ ପରସ୍ପର ଲାଗି ଅପେକ୍ଷା କରି ରହିଥିଲେ ଏଇ ବର୍ତ୍ତମାନ ପରସ୍ପରକୁ ସ୍ପର୍ଶ କଲେ । ସେହିପରି ଲାଗେ । ୧୩.୦୭.୧୯୮୧)

(ପୁନର୍ଜନ୍ମ ହେଲେ ଏହି ପୃଥିବୀକୁ ଫେରିବାକୁ ଚାହିଁବି, ଏତେ ଶ୍ରଦ୍ଧା, ଏତେ ଅଶ୍ରୁ ଏତେ ସହାନୁଭୂତି ଓ ଏତେ ସାହଚର୍ଯ୍ୟ ସମ୍ଭବତ ଏହି ପୃଥିବୀରେ ହିଁ କେବଳ ସମ୍ଭବ ହେଉଥିବ। ମୁଁ ଏଠି ଯେଉଁଭଳି ପରିବେଶରେ ରହିଥାଏଁ ପଛକେ ସେଠାରେ ନିଶ୍ଚୟ ବଂଧୁମାନେ ଥିବେ। ସବୁ ବଂଧୁଙ୍କର ଆଖି ଭିତରେ ଜଣେ ପରମବଂଧୁ ରହି ମୋତେ ଆକର୍ଷିତ କରିବାରେ ଲାଗିଥିବ। ମୋତେ ଅଧିକରୁ ଅଧିକ ସମର୍ପଣ ଓ ସଙ୍ଗ ଲାଭ ଲାଗି ଯୋଗ୍ୟ କରି ଆଣୁଥିବ ମୋରି ଭିତର ଦେଇ କେତେ ବଳ ଦେଉଥିବ ବିଶ୍ୱାସ ଦେଉଥିବ ଉତ୍ସାହ ଦେଉଥିବ। ୨୯.୧୦.୧୯୮୧)

ଅନ୍ୟ ପାଖରୁ ସେବା ଗ୍ରହଣ ନ କରିବା ତାଙ୍କର ବିଶିଷ୍ଟଗୁଣ। କାହାରି ଉପରେ ବୋଝ ହେବା ଚାହାନ୍ତି ନାହିଁ। ଏତେ ଜ୍ଞାନ ଏତେ ଯୋଗ୍ୟତା ଥାଇ ମଧ୍ୟ କେତେ ନମ୍ର। ତାଙ୍କର ଗୁଣ ଜଣେ ଲୋକ ବର୍ଣ୍ଣନା କରି କହି ପାରିବ ନାହିଁ। 'ଜିଜୀବିଷେତ୍ ଶତାଂସମା' ମଂତ୍ର କଥା ଆମକୁ କ୍ଲାସରେ ପଢ଼ାଇ ଥିଲେ। ଭଗବାନ ତାଙ୍କ ଇଚ୍ଛାକୁ ପୂର୍ଣ୍ଣ କରି ତାଙ୍କୁ ଶତାୟୁ କରନ୍ତୁ। ତାଙ୍କର ଅସଂପୂର୍ଣ୍ଣ କାର୍ଯ୍ୟକୁ ସଂପୂର୍ଣ୍ଣ କରନ୍ତୁ ଏହାହିଁ କାମନା।

ପୋ-ମାନପୁର
ତା.୧୬.୦୨.୨୦୦୮

•



ଚିତ୍ତଭାଇ ଯେଉଁ ଘରେ ରହୁଥିଲେ ସେହି ଭଙ୍ଗାଘରର ଛବି

# ଜୀବନ ପାଇଁ ବିଦ୍ୟାଳୟ

## ଶ୍ରୀ ସୁରେଶ ଚନ୍ଦ୍ର ସେନ୍

ଦେଶକୁ ସ୍ୱାଧୀନ କରି ରାମ ରାଜ୍ୟରେ ପରିଣତ କରିବାର ପରିକଳ୍ପନା ଜାତିର ଜନକ ମହାତ୍ମା ଗାନ୍ଧିଙ୍କର ଥିଲା । ଯେଉଁଠାରେ ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ସମସ୍ତେ ପରସ୍ପର ପରିପୂରକ ଭାବେ ବସବାସ କରି ପାରିବେ । ସମାଜର ସର୍ବନିମ୍ନ ସ୍ତରରେ ଥିବା ଲୋକଟି ମଧ୍ୟ ତା'ର ଅଧିକାରରୁ ବଞ୍ଚିତ ହେବ ନାହିଁ । ଶାସକ ଓ ଶାସିତ ଗୋଷ୍ଠୀ ରହିବ ନାହିଁ । ମନ, ପ୍ରାଣ ଓ ଶ୍ରମ ଶକ୍ତିକୁ ନିୟୋଜନ କରି ଏକ ସମୃଦ୍ଧ ଦେଶ ଗଠନ କରିବା ସମସ୍ତଙ୍କ ଲକ୍ଷ୍ୟ ହେବ । ସବୁ ଧର୍ମ ପ୍ରତି ଶ୍ରଦ୍ଧା ଓ ସମ୍ମାନ ରହିବ । ସେଇଥିପାଇଁ ଗାନ୍ଧିଜୀ ପ୍ରତ୍ୟେହ ପ୍ରାର୍ଥନା ସଭାରେ ସର୍ବଧର୍ମ ସମନ୍ୱୟ ରକ୍ଷା କରିବାରେ ପ୍ରୟାସ ଜାରି ରଖିଥିଲେ । ଦେଶବାସୀଙ୍କ ମଙ୍ଗଳ ପାଇଁ ସେ କେତୋଟି ରଚନାତ୍ମକ କାର୍ଯ୍ୟକ୍ରମ ଚାଲୁ କରିଥିଲେ । ତା' ମଧ୍ୟରୁ ବୁନିୟାଦୀ ଶିକ୍ଷା ବା ମୌଳିକ ଶିକ୍ଷା ଅନ୍ୟତମ । ସେ ଶିକ୍ଷା ପଦ୍ଧତି ପ୍ରଚଳିତ ଶିକ୍ଷା ପଦ୍ଧତିଠାରୁ ଭିନ୍ନ ଧରଣର । ପିଲାଟି ପ୍ରଥମରୁ ଧନ୍ଦାମୂଳକ କାର୍ଯ୍ୟ ମାଧ୍ୟମରେ ଶିକ୍ଷା ଲାଭ କରିବ । ପିଲାଟି ଦିନରୁ ନିର୍ଭିକ ହେବ ଓ ଶୃଙ୍ଖଳିତ ଜୀବନ ଯାପନ କରି ଶିଖିବ । କୌଣସି କାର୍ଯ୍ୟ କରିବାକୁ ସେ କୁଣ୍ଠାବୋଧ କରିବ ନାହିଁ । ନିଜକୁ, ନିଜ ସାଙ୍ଗକୁ ତଥା ବିଦ୍ୟାଳୟର ପରିବେଶକୁ ଶ୍ରଦ୍ଧାର ସହିତ ଭଲପାଇ ଶିଖିବ । ଯାହା ସାମଗ୍ରିକ ଭାବେ ଜଣେ ବ୍ୟକ୍ତିକୁ ସୁନାଗରିକ ହୋଇ ଗଢ଼ି ତୋଳିବାରେ ସହାୟକ ହେବ । ଏ ସମସ୍ତ ବିଚାରକୁ ଆଖି ଆଗରେ ରଖି ଓଡ଼ିଶାର ବିଭିନ୍ନ ସ୍ଥାନରେ ଆବାସିକ ମୌଳିକ ବିଦ୍ୟାଳୟ ଗୁଡ଼ିକ ଗଢ଼ି ଉଠିଥିଲା । ଏକ ଉତ୍ସର୍ଗୀକୃତ ମନ ନେଇ ଗୁରୁଜୀମାନେ ପ୍ରତ୍ୟେକ ପିଲାକୁ ତା'ର ଆବଶ୍ୟକତା ମତେ ଆଦର୍ଶ ଛାତ୍ରଟିଏ ଗଢ଼ି ତୋଳିବା ପାଇଁ ସହାୟକ ହେଉଥିଲେ । ପାଠ ପଢ଼ା ସହିତ ସାମୁହିକ ପ୍ରାର୍ଥନା, ସଫେଇ କାମ, ବଗିଚା କାମ, ଲୁଗାବୁଣା, କାଠକାମ, ଓ ମହୁମାଛି ପାଳନ ଶିଖାଇବାର ବ୍ୟବସ୍ଥା ବିଦ୍ୟାଳୟ ମାନଙ୍କରେ ପ୍ରଚଳନ କରାଯାଇଥିଲା । ଜାତୀୟ ପର୍ବ ପର୍ବାଣୀର ମହତ୍ତ୍ୱ ସଂବଧରେ ଅବଗତ କରାଇ ପର୍ବ ଗୁଡ଼ିକୁ ଅତ୍ୟନ୍ତ ଉଲ୍ଲାସ ସହିତ ପାଳନ କରାଯାଉ ଥିଲା । ଛାତ୍ରମାନେ ପରସ୍ପରକୁ ଭାଇ ଓ ଶିକ୍ଷକଙ୍କୁ ଗୁରୁଜୀ ବୋଲି ସଂବୋଧନ କରୁଥିଲେ । ବସ୍ତୁତଃ ଏ ଶିକ୍ଷା ପଦ୍ଧତି ଜୀବନ ଓ ସମାଜକୁ ଏକ ନୂଆ ଦିଗ୍‌ଦର୍ଶନ ଦେବାର ମୂଳଦୁଆ ପକାଉଥିଲା ।

ମୌଳିକ ଶିକ୍ଷାର ଉକ୍ତ ଦର୍ଶନ ଏବଂ ପଦ୍ଧତିକୁ ଫଳପ୍ରଦ କରାଇବା ପାଇଁ ଓଡ଼ିଶାର ତୁଡ଼ିଗଡ଼ିଆ ଗାନ୍ଧି ବିଦ୍ୟାଳୟ, ଅନୁଗୋଳ- ବାଜିରାଉତ ଛାତ୍ରାବାସ, ବରୀ-ରାମଚନ୍ଦ୍ରପୁର ଓ ରାଜ ସୁନାଖଳାଠାରେ ବିଦ୍ୟାଳୟମାନ ସ୍ଥାପନ କରାଯାଇଥିଲା ଓ ଏହା ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ସୀମିତ ଥିଲା। ଏହି ବ୍ୟବସ୍ଥାରେ ଉଚ୍ଚତର ଶିକ୍ଷାଦାନ ପାଇଁ ନାରୀ ନେତ୍ରୀ ମାଳତୀ ଚୌଧୁରୀ (ନୁମା)ଙ୍କ ଉଦ୍ୟମ ଓ ବିଶିଷ୍ଟ ଗାନ୍ଧିବାଦୀ ଦେଶସେବକ ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ (ବାପି)ଙ୍କ ଆନ୍ତରିକ ପ୍ରଚେଷ୍ଟା ଫଳରେ ୧୯୫୪ ମସିହା ଅଗଷ୍ଟ ୨୬ ତାରିଖରେ ଅନୁଗୋଳସ୍ଥ ବାଜିରାଉତ ଛାତ୍ରାବାସରେ "ଉତ୍ତର ମୌଳିକ ବିଦ୍ୟାଳୟ" (Post Basic School) ବା ଜୀବନ ବିଦ୍ୟାଳୟର ପାଠ୍ୟକ୍ରମ ଆରମ୍ଭ କରାଗଲା। ପରବର୍ତ୍ତୀ ସମୟରେ ଅନୁଗୋଳଠାରୁ ୧୨ କିଲୋମିଟର ଦୂର ଚଂପତି ମୁଣ୍ଡାକୁ ଏହି ବିଦ୍ୟାଳୟ ସ୍ଥାନାନ୍ତର ହୋଇଥିଲା।

ଚଂପତିମୁଣ୍ଡା ଗ୍ରାମଟି ଏକ ଘଞ୍ଚ ଜଂଗଲ ମଧ୍ୟରେ ଅବସ୍ଥିତ। ସ୍ଥାନଟି ଅତ୍ୟନ୍ତ ମନୋରମ। ଚାରିପଟେ ଥାକ ଥାକ ନୀଳ ପର୍ବତ ମାଳା, ଆକାଶକୁ ଛୁଇଁଲା ଭଳି ଏକ ସୁଦୃଢ଼ ପାଚେରୀ ପରି ଘେରି ରହିଛି। ଖୋଲା ଆକାଶ, ମୁକ୍ତ ଏବଂ ଶୁଦ୍ଧ ପବନ, ସବୁଜ ଅରଣ୍ୟ ବଳୟ ମଧ୍ୟରେ ପ୍ରସ୍ତର ଶଯ୍ୟା ଦେଇ କୁଳୁକୁଳୁ ହୋଇ ବୋହିଯାଉଛି ଝରଣାଟିଏ। ପରିବେଶଟି ଏପରି ଯେ ଏଠି ମଣିଷ ବାହ୍ୟ ଜଗତକୁ ଭୁଲିଯାଇ ନିଜକୁ ପ୍ରକୃତି କୋଳରେ ସମର୍ପଣ କରିବାକୁ ବାଧ୍ୟ ହେବ। ଏହା ସାଧକ ମାନଙ୍କ ପାଇଁ ଏକ ଅନୁକୂଳ ପରିବେଶ। ସ୍ଥାନଟି ଚିତ୍ତଭାଇଙ୍କ ଦ୍ୱାରା ନିରୂପିତ ହୋଇଥିଲା।

**ଚିତ୍ତଭାଇଙ୍କ ପାଇଁ ପଦେ :-**

କଟକର ରେଭେନ୍‌ସା ମହାବିଦ୍ୟାଳୟରୁ ବିଦ୍ୟାଧ୍ୟୟନ ପରେ ବିଶ୍ୱଭାରତୀ ଶାନ୍ତି ନିକେତନ ଠାରେ ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ। ସେଠାରୁ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇ ଭାରତ ସରକାରଠାରୁ ବୃତ୍ତି ପାଇ ଡ଼େନମାର୍କର କୋପେନ୍‌ହେଗେନ୍ ବିଶ୍ୱ ବିଦ୍ୟାଳୟରେ ଗବେଷଣା କରି ଡ଼କ୍ଟରେଟ୍ ଉପାଧି ପାଇଥିଲେ। ସେ ଏକାଧାରରେ ଜଣେ ମନସ୍ତତ୍ତ୍ୱବିତ୍, ସ୍ୱାଧୀନତା ସଂଗ୍ରାମୀ, ସୁସାହିତ୍ୟିକ, ପ୍ରାବଂଧିକ, ଉଚ୍ଚକୋଟୀର ତଥା ନିର୍ଭୀକ ସମାଲୋଚକ, ଶିକ୍ଷାବିତ୍ ବହୁଭାଷା ଜାଣିଥିବା ଭାଷାବିଦ୍, ସୁବକ୍ତା ଓ ଚିନ୍ତାନାୟକ ଅଟନ୍ତି। ଆମ ଦେଶର ମହାତ୍ମାଗାନ୍ଧି, ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ଓ ଶ୍ରୀଅରବିନ୍ଦଙ୍କ ଜୀବନାଦର୍ଶରେ ଅନୁପ୍ରାଣିତ। ଚିତ୍ତଭାଇ ଅତ୍ୟନ୍ତ ମେଳାପୀ ବ୍ୟକ୍ତି ଅଟନ୍ତି। ନିରାଡ଼ମ୍ବର ଜୀବନ ଯାପନ ପ୍ରଣାଳୀକୁ ଗ୍ରହଣ କରି ନେଇଛନ୍ତି ନିଜ ଜୀବନରେ। ତାଙ୍କର ଇଚ୍ଛାଶକ୍ତି ଓ ପ୍ରେରଣାରେ

ଚଂପତିମୁଣ୍ଡାର ବିଦ୍ୟାଳୟ ପରିଚାଳିତ ହେଉଥିଲା । ବିଦ୍ୟାଳୟର ଛାତ୍ରମାନେ ତାଙ୍କୁ ଭାଇ ବୋଲି ସମ୍ବୋଧନ କରୁଥିଲେ । ତାଙ୍କର ବ୍ୟକ୍ତିତ୍ୱ ଓ ବିଦ୍ୟାଳୟ ଗଢ଼ିବାର ନିଷ୍ଠା ପ୍ରତି ଆକୃଷ୍ଟ ହୋଇ ଦେଶ ବିଦେଶର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଏଠାକୁ ପରିଦର୍ଶନରେ ଆସୁଥିଲେ । ଇନ୍ଦୋର ବିଶ୍ୱ ବିଦ୍ୟାଳୟର ଜନୈକ ପ୍ରଫେସର ଏହି ବିଦ୍ୟାଳୟରେ ଚାରିମାସ ଅବସ୍ଥାନ କରି ଅନୁସନ୍ଧାନମୂଳକ ସନ୍ଦର୍ଭ ପ୍ରକାଶ କରିଥିଲେ ।

**ଶିକ୍ଷା ପଦ୍ଧତି :-**

ଓଡ଼ିଶାର ବିଭିନ୍ନ ମୌଳିକ ବିଦ୍ୟାଳୟରୁ ଅଷ୍ଟମ ଶ୍ରେଣୀ ପାସ୍ କରି ଆସିଥିବା ଛାତ୍ରମାନେ ଏଠାରେ ଅଧ୍ୟୟନ କରୁଥିଲେ । ଏତଦ୍‌ବ୍ୟତୀତ ହାଇସ୍କୁଲର ଅଷ୍ଟମ ଶ୍ରେଣୀ ପାସ୍ କରି ଆସିଥିବା ଛାତ୍ର ମଧ୍ୟ ଏଠାରେ ଅଧ୍ୟୟନ କରୁଥିଲେ । ଦ୍ୱାଦଶଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷା ଦେବାର ବ୍ୟବସ୍ଥା ଏଠାରେ ରହିଥିଲା । ଏହା ଏକ ଆବାସିକ ବିଦ୍ୟାଳୟ ହୋଇଥିବାରୁ ପ୍ରତ୍ୟେକ ପିଲାଙ୍କୁ ମାସିକ କୋଡ଼ିଏ ଟଙ୍କା ବୃତ୍ତି ମିଳୁଥିଲା । ସାଧାରଣ ପାଠ୍ୟକ୍ରମ ସହିତ ରବିବାର ଦିନ ଜଂଗଲରୁ କାଠ ସଂଗ୍ରହ କରିବା, ବଗିଚା କାମ କରିବା, ରୋଷେଇ କାର୍ଯ୍ୟ କ୍ରମାନ୍ୱୟରେ କରାଯାଉଥିଲା । ବିଦ୍ୟାଳୟର ଏକ ବିରାଟ ସମ୍ପଦ ହେଉଛି ଏଠାକାର ପାଠାଗାର । ହଜାର ହଜାର ସଂଖ୍ୟାରେ ଓଡ଼ିଆ, ବଂଗଳା, ହିନ୍ଦି ଓ ଇଂରାଜୀ ଭାଷାର ପୁସ୍ତକ ଏଠାରେ ମହଜୁଦ ଥାଏ । ପ୍ରତ୍ୟେକ ପିଲା ପାଠାଗାରରୁ ନିୟମିତ ଭାବେ ପୁସ୍ତକ ନେଇ ପଢ଼ିବା ସହିତ ସେ ସମ୍ବନ୍ଧରେ ସଂକ୍ଷିପ୍ତ ଟୀପ୍ପଣୀ ଲେଖୁଥିଲେ । ଯଦ୍ୱାରା ଛାତ୍ର ମାନଙ୍କର ସୃଜନଶୀଳତା ଓ ବୌଦ୍ଧିକ ଜ୍ଞାନର ବିକାଶ ହେଉଥିଲା । ବିଦ୍ୟାଳୟର ଶିକ୍ଷାଦାନରେ ଉକ୍ତ ବିଦ୍ୟାଳୟର ଶିକ୍ଷକ ବ୍ୟତୀତ ଅନୁଗୋଳର "ଶିକ୍ଷକ ତାଲିମ ମହାବିଦ୍ୟାଳୟ"ର ଛାତ୍ର ଏବଂ ଅଧ୍ୟାପକ ମାନେ ଶିକ୍ଷାଦାନ କରୁଥିଲେ । ବିଭିନ୍ନ ସମୟରେ ଶିକ୍ଷାବିତ୍ ପ୍ରଫେସର ଶତ୍ରୁଘ୍ନ ନାଥ ଏବଂ ବରେଣ୍ୟ ନବକୃଷ୍ଣ ଚୌଧୁରୀ (ବାପି) ମଧ୍ୟ ଏଠାକୁ ଆସି ଶିକ୍ଷାଦାନ କାର୍ଯ୍ୟରେ ନିଜକୁ ସଂପୃକ୍ତି ରଖୁଥିଲେ । ଯାହା ଛାତ୍ର ଓ ଶିକ୍ଷକଙ୍କୁ ଉତ୍ସାହ ଓ ପ୍ରେରଣା ଯୋଗାଉଥିଲା । ବିଦ୍ୟାଳୟରେ ପ୍ରତି ସପ୍ତାହରେ ଏକ ତର୍କସଭା ଅନୁଷ୍ଠିତ ହେଉଥିଲା । ଯେଉଁଥିରେ ସମସ୍ତ ଛାତ୍ର ବାଧ୍ୟତାମୂଳକ ଅଂଶ ଗ୍ରହଣ କରୁଥିଲେ । ତ୍ରୟମାସିକ ଏବଂ ଷାଣ୍ମାସିକ ପରୀକ୍ଷାର ମୂଲ୍ୟୟନ ବିଦ୍ୟାଳୟର ଶିକ୍ଷକମାନେ କରୁଥିଲାବେଳେ ବାର୍ଷିକ ପରୀକ୍ଷାର ମୂଲ୍ୟାୟନ ଅନୁଗୋଳ ଟ୍ରେନିଂ କଲେଜର ଅଧ୍ୟାପକ ମାନଙ୍କ ଦ୍ୱାରା କରାଯାଉଥିଲା । ବର୍ଷର ଏକ ନିର୍ଦ୍ଧାରିତ ଦିନରେ ବସନ୍ତ ଉତ୍ସବ ପାଳନ ଅବକାଶରେ 'ବିକାଶ' ନାମକ ଏକ ହାତଲେଖା ପତ୍ରିକା ପ୍ରକାଶିତ ହେଉଥିଲା । ଯେଉଁଥିରେ କି ଛାତ୍ର-ଶିକ୍ଷକଙ୍କ ଲେଖା ସହିତ ଓଡ଼ିଶାର ସୁନାମଧନ୍ୟ

ଲେଖକ ! ମନୋଜ ଦାସ, ପ୍ରପତ୍ତି, ବିଭୂତି ପଟ୍ଟନାୟକ, ମାୟାଧର ମାନସିଂହ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ବିନୋଦ ରାଉତ ରାୟ ଓ ରାଧାମୋହନ ଗଡ଼ନାୟକଙ୍କ ଲେଖା ମଧ୍ୟ ପ୍ରକାଶ ପାଉଥିଲା । ପତ୍ରିକାର ଶୋଭାବର୍ଦ୍ଧନ ପାଇଁ ପ୍ରଚ୍ଛଦ ପଟ୍ଟ ବିନୋଦ ରାଉତରାୟଙ୍କ ଦ୍ୱାରା ହେଉଥିବା ବିଦ୍ୟାଳୟର ଛାତ୍ରଙ୍କର ଚିତ୍ର ମଧ୍ୟ ଏଥିରେ ସ୍ଥାନିତ ହେଉଥିଲା । ଛାତ୍ରମାନେ ପ୍ରତ୍ୟେହ ଶ୍ରେଣୀ ଗୃହକୁ ପ୍ରବେଶ କରିବା ପୂର୍ବରୁ, ସାମୂହିକ ପ୍ରାର୍ଥନା ପରେ ପ୍ରଧାନ ଶିକ୍ଷକ ଚିତ୍ତଭାଇ ତାଙ୍କର ସ୍ୱଲିଖିତ କ୍ଷୁଦ୍ର ଲେଖା (ଖୋଇ) ପାଠ କରୁଥିଲେ । ଛାତ୍ରମାନେ ନୀରବରେ ଶୁଣି ସାରିବା ପରେ ଶ୍ରେଣୀଗୃହକୁ ପ୍ରବେଶ କରୁଥିଲେ । ସେହି ଲେଖା ଗୁଡ଼ିକର ସଂକଳନ ପରବର୍ତ୍ତୀ ଅବସ୍ଥାରେ "ଜୀବନ ବିଦ୍ୟାଳୟ" ପୁସ୍ତକ ରୂପରେ ପ୍ରକାଶିତ ହୋଇଛି । ଏତଦ୍‌ଭିନ୍ନ ବିଦ୍ୟାଳୟର ଅଗ୍ରଗତି, ଆଭିମୁଖ୍ୟ ଓ ସମସ୍ୟା ସମ୍ବନ୍ଧରେ ଲେଖାମାନ ନିୟମିତ "ଗ୍ରାମସେବକ" ପତ୍ରିକାରେ ପ୍ରକାଶ ପାଉଥିଲା । ପରେ ତାହା ସାଥି ନିକେତନ "ଜଂଗଲ ଚିଠି" ନାମରେ ପ୍ରକାଶ କରିଛନ୍ତି । ଜୀବନ ବିଦ୍ୟାଳୟର ଆଭିମୁଖ୍ୟ ଓ ସେଠାକାର ଜୀବନ ଯାପନ ପ୍ରଣାଳୀ ବିଷୟରେ ଜାଣିବାକୁ ହେଲେ ଉପରୋକ୍ତ ପୁସ୍ତକ ସହିତ ସେଠାକାର ଛାତ୍ର ନନୀ ଗୋପାଳ ପାଲିତ୍ (ବାଦଲ ଭାଇ)ଙ୍କ ରଚିତ "ଚାଲିଛି ନିକର" ପଢ଼ିବାକୁ ଅନୁରୋଧ । ସାମୟିକ ପ୍ରାକୃତିକ ବିପର୍ଯ୍ୟୟ ବେଳେ ଏଠାକାର ଛାତ୍ର ଓ ଶିକ୍ଷକ ମାନେ ଏକତ୍ରିତ ହୋଇ ସଂପୃକ୍ତ ଅଂଚଳକୁ ଯାଇ ସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରିଥାନ୍ତି ।

ଉତ୍ତର ମୌଳିକ ବିଦ୍ୟାଳୟ ଉତ୍ତୀର୍ଣ୍ଣ ଛାତ୍ରମାନେ ସମାଜରେ ଯିଏ ଯେଉଁଠାରେ ନିଯୁକ୍ତି ପାଇଥିଲେ ମଧ୍ୟ କେବେ କାହାର ବୋଝ ହୋଇ ନାହାନ୍ତି । ନିଜର କର୍ତ୍ତବ୍ୟନିଷ୍ଠା, ବଂଧୁ ବତ୍ସଳତା, ସାଧୁତା ଓ ସ୍ପଷ୍ଟବାଦିତା ସେମାନଙ୍କୁ ଏକ ବିରଳ ଅନୁଭୂତି ଦେବା ସହିତ ସ୍ୱକୀୟ ରାସ୍ତାରେ ଚାଲିବା ପାଇଁ ପ୍ରେରଣା ଯୋଗାଇ ଆସିଛି । ବର୍ତ୍ତମାନର ଦୁର୍ନୀତିପୂର୍ଣ୍ଣ ବାତାବରଣ ଭିତରୁ ନିଜକୁ ଅଲଗା ରଖି ପାରିଛନ୍ତି । ପରସ୍ପର ଠାରୁ ଦୂରରେ ଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ଏକ ଶ୍ରଦ୍ଧାପୂର୍ଣ୍ଣ ପାରସ୍ପରିକ ସମ୍ପର୍କ ରହିଅଛି । ନିଜ ନିଜ ପରିବେଶରେ ନିଜକୁ ନିୟୋଜିତ କରି ସମାଜକୁ ସୁଧାରିବାର ପ୍ରଚେଷ୍ଟାରେ ଅଛନ୍ତି । ଏହାହିଁ ସେ ବିଦ୍ୟାଳୟର ବିଶେଷତ୍ୱ ।

ଆଜି ଗାଆଁ ଗଣ୍ଡାଠାରୁ ଶିକ୍ଷାନୁଷ୍ଠାନ, ସରକାରୀ କାର୍ଯ୍ୟାଳୟ ଏପରିକି ବିଧାନସଭାରେ ମଧ୍ୟ ଦୁର୍ନୀତି ଛାଇ ରହିଛି ଓ ଗୁଣ୍ଡାରାଜ ଚାଲିଛି । ସରକାରୀ କର୍ମଚାରୀ, ଶ୍ରମିକ ସଂଘ, ଛାତ୍ର ସମାଜ କଥା କଥାକେ ବିକ୍ଷୋଭ ପ୍ରଦର୍ଶନ କରି ଜାତୀୟ ସଂପଦ ନଷ୍ଟ କରିବାକୁ କୁଣ୍ଠାବୋଧ କରୁ ନାହାନ୍ତି । ନକ୍ସଲ ଓ ମାଓବାଦୀ ଏହି

ଦେଶର ଯୁବକ, ସେମାନେ ନର ରକ୍ତରେ ହୋରି ଖେଳୁଛନ୍ତି । ନକଲି ଔଷଧ ପ୍ରସ୍ତୁତି, ନରହତ୍ୟା, ଧର୍ଷଣ, ସରକାରୀ କ୍ଷମତାର ଅପବ୍ୟବହାର, ରାଜନୈତିକ ନେତା ମାନଙ୍କ ମଧ୍ୟରେ ନୈତିକତାର ଅଭାବ ହେତୁ ସମାଜର ଅଧୋଗତି ହେବାକୁ ବସିଛି । ଧର୍ମ ନାମରେ ସଂକୀର୍ଣ୍ଣତା ବଢ଼ି ଚାଲିଛି । ପାରିବାରିକ ଓ ସାମାଜିକ ବ୍ୟବସ୍ଥା ଭୁଷୁଡ଼ି ପଡ଼ିଲାଣି । ରୋଜଗାରକ୍ଷମ ଯୁବକଟିଏ ଏବେ ନିଜ ପରିବାର ଭିତରେ ରହିବାକୁ ଇଚ୍ଛା କରୁନାହିଁ । ନିଜର ଏକ ସୁରକ୍ଷିତ ସୌଧ ନିର୍ମାଣ କରି ଦୁନିଆଁର ସବୁ ସୁଖକୁ ସାଉଁଟି ନିଜ ସ୍ତ୍ରୀ ଓ ପିଲାକୁ ପାଖରେ ରଖିବାକୁ ଅଧିକରୁ ଅଧିକ ଉଚିତ ମନେ କରୁଛି । ସ୍ନେହ, ଶ୍ରଦ୍ଧା, ପୂର୍ଣ୍ଣ ପାରିବାରିକ ଜୀବନ ଏବେ ଦୁଃସ୍ୱପ୍ନ ହୋଇ ଗଲାଣି । ବୃଦ୍ଧ ପିତାମାତା ନିଜକୁ ଅସହାୟ ମନେ କରି ଜରାନିବାସ ଆଡ଼କୁ ମୁହାଁଇଲେଣି । ଯୁବସମାଜ ଶାରିରୀକ ଶ୍ରମ କରିବାକୁ କୁଣ୍ଠାବୋଧ କରୁଛନ୍ତି । ଜୀବନର ମାନବିକ ମୂଲ୍ୟବୋଧ, ଧାର୍ମିକ ଚେତନା, ଶ୍ରଦ୍ଧା ଓ ସହାନୁଭୂତି ଏବଂ ସହନଶୀଳତାର ଗୁଣ ଗୁଡ଼ିକ ଅତି ଦୃତ ଗତିରେ ହ୍ରାସ ହେବାରେ ଲାଗିଛି ।

ଏସବୁ ଅଧୋଗତି ପାଇଁ ଆଜିର ଦୂରଦ୍ରଷ୍ଟା ଚିନ୍ତାନାୟକ ମାନେ ପ୍ରଚଳିତ ଶିକ୍ଷା ପଦ୍ଧତି ଆଡ଼କୁ ଆଙ୍ଗୁଳି ନିର୍ଦ୍ଦେଶ କଲେଣି । ଶିକ୍ଷା କ୍ଷେତ୍ରରେ ଏକ ଆନ୍ଦୋଳନାତ୍ମକ ପରିବର୍ତ୍ତନର ଆବଶ୍ୟକତା ରହିଛି ବୋଲି ସେମାନେ ଅନୁଭବ କଲେଣି । ଏହି ଅଧୋଗତିରୁ ଉଦ୍ଧାର ପାଇବା ପାଇଁ ଦେଶ, ସମାଜ ଓ ପରିବାରକୁ ରକ୍ଷା କରିବା ନିମିତ୍ତ ଏକ ବାସ୍ତବ ଜୀବନଧର୍ମୀ ଶିକ୍ଷାର ଆବଶ୍ୟକତା ରହିଛି । ଯାହା ଜୀବନ ବିଦ୍ୟାଳୟ ହିଁ ପୂରଣ କରି ପାରିବ ।

ଗ୍ରା:/ପୋ- ଆମ୍ବଡ଼ିହା, ଭାୟା :-ନାମ୍ପୋ,
ଜି: ବାଲେଶ୍ୱର - ୭୫୬ ୦୩୪

•

# ଜୀବନ ବିଦ୍ୟାଳୟ ଅନୁଭୂତିରୁ ଖିଏ

**ଭୀଷ୍ମଦେବ ଆଚାର୍ଯ୍ୟ**

ଶ୍ରଦ୍ଧେୟ ଶଶୀଭାଇ,

ମୋର ତଥା ତୁମର ବୋହୁର ସ୍ନେହକୁ ସପରିବାର ଅନୁଭବ କରିବ । ତମର ଏକାଧିକ ବାର କହିବା ପରେ ମୁଁ ମୋର ଚମ୍ପତିମୁଣ୍ଡାର ଦୀର୍ଘ ସାଢେ ତିନିବର୍ଷର ଅନୁଭୂତିରୁ କିଛିଟା ନେଇ ଲେଖୁଛି । ଲେଖିବାର ବିଳମ୍ବ ହେତୁ ମୁଁ ଦୁଃଖିତ । ବର୍ତ୍ତମାନର ଆମ ରାଜ୍ୟ ତଥା ଦେଶର ବିଭିନ୍ନ ସ୍ତରର ପରିସ୍ଥିତି (ସାମାଜିକ, ଅର୍ଥନୈତିକ, ପ୍ରାୟ ସବୁ ସ୍ତରରେ) ମନଟାକୁ ପାଗଳ କରିଦେଉଛି । ବଞ୍ଚି ରହିବାର ଆଗ୍ରହ ମନରୁ ଯଥେଷ୍ଟ ପରିମାଣରେ କମେଇ ଦେଉଛି । ଛାଡ଼, ଏସବୁରି ଚିନ୍ତାରେ ମନ ମରିଯିବ ।

ଲେଖୁଛି ଚମ୍ପତିମୁଣ୍ଡାର ଅନୁଭୂତିରୁ କିଛି ।

ମୋର ଛାତ୍ର ଜୀବନର ମୋଟ ୧୮ ବର୍ଷରୁ ଚମ୍ପତିମୁଣ୍ଡାର ମାତ୍ର ସାଢ଼େ ତିନିବର୍ଷର ଅନୁଭୂତି ଯାହାକି ମୁଁ ବଞ୍ଚିରହିବା ପର୍ଯ୍ୟନ୍ତ ଭୁଲି ପାରିବି ନାହିଁ । ବାକି ୧୪½ ବିଭିନ୍ନ ସ୍କୁଲ, କଲେଜ, ଶିକ୍ଷକ, ପ୍ରଫେସର ସମାଜରୁ ନାନା ବିଦ୍ୟା, ଜ୍ଞାନ କୌଶଳ ସିନା ଶିଖିଛି, କିନ୍ତୁ ସେ ସବୁରି କୌଣସି ପ୍ରଭାବ ମୋ ଜୀବନରେ ପଡ଼ିନାହିଁ । ମଣିଷ ପରି ମଣିଷଟିଏ ହୋଇ ବଞ୍ଚିରହିବାର ପ୍ରେରଣା ଦେଇଛି ଚମ୍ପତି ମୁଣ୍ଡା Post Basic School ର ଶିକ୍ଷା ପରିବେଶଟି । ମୁରୁମକେଲ ସିନିଅର୍ ବେସିକ୍ ସ୍କୁଲରୁ ୮ମ ଶ୍ରେଣୀ ଉତ୍ତୀର୍ଣ୍ଣ ହୋଇ ଏକ କୃତି ଛାତ୍ରର ମନ ନେଇ ଚମ୍ପତି ମୁଣ୍ଡା Post Basic ଆବାସିକ ବିଦ୍ୟାଳୟରେ ନାମ ଲେଖାଇଲା ପରେ ପରେ ପାଇଲି ଏକ ଅଦ୍ଭୁତ ଜୀବନଗଢ଼ା ପରିବେଶ, କେବଳ କେତେକ ବ୍ୟକ୍ତି ବିଶେଷଙ୍କର ଉପସ୍ଥିତିରେ ପରିବେଶଟି ହୋଇପାରିଥିଲା ସ୍ୱର୍ଗୀୟ ଶ୍ରେଣୀର । ତା'ର ନିର୍ମାତା ଥିଲେ ସ୍ୱର୍ଗୀୟା ମାଳତୀ ଚୌଧୁରୀ, ତତ୍କାଳୀନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ସ୍ୱର୍ଗତଃ ନବକୃଷ୍ଣ ଚୌଧୁରୀଙ୍କ ଧର୍ମପତ୍ନୀ । ଆମ ଦରିଦ୍ର ଶିଶୁ ଛାତ୍ର ସମାଜର ସେ ଥିଲେ ମା' । ତାଙ୍କୁ ଆମେ 'ନୁ ମାଁ' ବୋଲି ଡାକୁଥିଲୁ । ଦରିଦ୍ର ଶିଶୁଛାତ୍ର ସମାଜର ସେ ଥିଲେ ପରମ ହିତୈଷୀ ମାଁ । ରହୁଥିଲେ ଶତାଧିକ ଶିଶୁଙ୍କ ସହିତ ତାଙ୍କରି ଗଢ଼ା ଅନୁଗୁଳର ବାଜିରାଉତ ଛାତ୍ରାବାସରେ ଶତାଧିକ ଶିଶୁ ଗହଣରେ । ଏହା ପ୍ରାରମ୍ଭରୁ ୮ମ ଶ୍ରେଣୀ ଯାଏ ଏକ ପୂର୍ଣ୍ଣାଙ୍ଗ ବିଦ୍ୟାଳୟ ।

ଚମ୍ପତିମୁଣ୍ଡା ଶିକ୍ଷାନୁଷ୍ଠାନଟି ଶ୍ରେଣୀ ୯ମରୁ ଦ୍ୱାଦଶ ଶ୍ରେଣୀ ପର୍ଯ୍ୟନ୍ତ । ମୁଖ୍ୟ ଶିଶୁ ନିର୍ମାତା ଥିଲେ ପରମପୂଜ୍ୟ ଚିରସ୍ମରଣୀୟ଼ ଶ୍ରୀଯୁକ୍ତ ଚିତ୍ତରଞ୍ଜନ୍ ଦାସ । ଆମ ଛାତ୍ର ସମାଜରେ ତାଙ୍କର ପରିଚୟ଼ ଥିଲା 'ଚିତ୍ତ ଭାଇ' । ମୁଁ ତାଙ୍କୁ Mind Music ବୋଲି ନାଁ ଦେଇଥିଲି । ଭଗବାନ ଶ୍ରୀକୃଷ୍ଣଙ୍କର ବଂଶୀର ପ୍ରଭାବ ଠୁ (ଗୋପୀମାନଙ୍କ ପାଇଁ) ତାଙ୍କର ଉପସ୍ଥିତିର ପ୍ରଭାବ ଆମ ଜୀବନରେ କିଛି କମ୍ ନୁହେଁ ।

ତାଙ୍କ ବ୍ୟତୀତ ଆହୁରି ତାଙ୍କର ସହଯୋଗୀ ମାନେ ଥିଲେ, ଜ୍ଞାନ ବିତରଣ କରିବାରେ ଧୁରନ୍ଧର ବିଭିନ୍ନ ବିଷୟ଼ରେ ଯଥା, Science, Math, History, Geography etc. ଉପରେ ।

**ଚମ୍ପତିମୁଣ୍ଡା ଛାତ୍ର ସମାଜର ଜୀବନଯାପନ ପଦ୍ଧତି-**

ବିଦ୍ୟାଳୟ଼ ତ ନୂଆ ହୋଇ ବସିଥାଏ । ସବୁ ଶିକ୍ଷକ, ଛାତ୍ର ଝାଟିମାଟିର ନିର୍ମିତ ଛାତ୍ରାବାସରେ ଏକାଠି ରହୁଥାଉ । ଛାତ୍ରୀମାନଙ୍କ ପାଇଁ ସ୍ୱତନ୍ତ୍ର ରହିବା ଘର ଥାଏ । ଦୈନନ୍ଦିନ ଜୀବନଯାତ୍ରା ଆରମ୍ଭ ହୁଏ ସକାଳର ବଡ଼ି ଭୋରରୁ । ସାମୁହିକ ପ୍ରାର୍ଥନା ପରେ ପରେ ଚିତ୍ତ ଭାଇଙ୍କର ଖୋଇପାଠରୁ ।

**ଖୋଇପାଠ:-** ଏହା ଚିତ୍ତଭାଇଙ୍କର ଦୈନିକ ଜୀବନର ବିଭିନ୍ନ ସମସ୍ୟା ଉପରେ ଆଧାରିତ ଆତ୍ମିକ ଚିନ୍ତାବଳୀର ପରିପ୍ରକାଶ । କିଛିଦିନ ଶୁଣିଲା ପରେ ଏଇ 'ଖୋଇପାଠ' ମୋ ମନରେ ଆଣିଲା ଅଦ୍ଭୁତ ପରିବର୍ତ୍ତନ । ଯଥା-

(୧) ଜୀବନର ଘଟୁଥିବା ବିଭିନ୍ନ ଘଟଣାକୁ ଚିରାଚ଼ରିତ ଶିକ୍ଷା ପ୍ରଣାଳୀରେ ଶିକ୍ଷକର ଶିକ୍ଷାଦାନକୁ ଅନ୍ଧଭାବେ ଗ୍ରହଣ କରୁଥିବାର ଅଭ୍ୟାସ ପରି ଗ୍ରହଣ ନକରିବା ଉପରେ ନିଜେ ଚିନ୍ତା କରିବି । I shall be the maker of my own destiny.

(୨) ଆପଣା ଚିନ୍ତାକୁ ବ୍ୟକ୍ତିଗତ ଓ ସମାଜିକ ଦୃଷ୍ଟିରୁ ଚିନ୍ତା କରିବାର ପରିପ୍ରକାଶ ମଧ୍ୟ ଗ୍ରହଣ କରିବି । ପରିଣାମ ମୁଁ ମୋର ପ୍ରତିଦିନର ଅନୁଭୂତି ଅର୍ଥାତ୍ Diary ଲେଖିବା ସଙ୍ଗେ ସଙ୍ଗେ ମୁଁ ବିଭିନ୍ନ ଜିନିଷ ଜାଣିବା ପାଇଁ ପ୍ରସ୍ତୁତ କଲି । ଫଳତଃ ବହୁସମୟ଼ ପଢ଼ାରେ ମନୋନିବେଶ କରି ନିଜେ ନିଜେ ବହୁ କଥା ଜାଣିବାରେ ଇଚ୍ଛା ପ୍ରକାଶ କଲି । ଏଥିରେ ମତେ ଆପଣା ସ୍କୁଲର ପ୍ରଶସ୍ତ Liabray ଅତିମାତ୍ରାରେ ସହାୟ଼କ ହେଲା ଏବଂ କ୍ଲାସ୍ ମୋ ପାଇଁ Liabrary ପରି ଏକ ସହାୟ଼କ ସ୍ତର ହୋଇଗଲା । ଏପ୍ରକାର ଜ୍ଞାନ ଆହରଣର spirit ମୋର ବହୁ ଛାତ୍ରବନ୍ଧୁଙ୍କ ଜୀବନରେ ଆସିଥିବାର ଲକ୍ଷ୍ୟ କରିଛି । ଜ୍ଞାନ ଆହରଣ କ୍ଷେତ୍ରରେ ଚିତ୍ତଭାଇଙ୍କର ଦୈନିକ 'ଖୋଇପାଠ' ମୋ ଜୀବନରେ ଭରିଛି ଆନ୍ତରିକ ଆଗ୍ରହ ।

**ଚମ୍ପତିମୁଣ୍ଡା Post Basic School ଜୀବନରେ ଶାରୀରିକ ପରିଶ୍ରମ ତଥା ସାମାଜିକ ଦାୟୀତ୍ୱବୋଧଃ-** ବିଦ୍ୟାଳୟର ଛାତ୍ରାବାସରେ ଓଡ଼ିଶାର ବିଭିନ୍ନ ଦୂରଦୂରାନ୍ତରୁ ଛାତ୍ରଛାତ୍ରୀମାନେ ଆସି ରହୁଥିଲେ, ଅଧିକନ୍ତୁ ଛାତ୍ରାବାସ ଥିଲା ସ୍ୱୟଂଚାଳିତ ପଦ୍ଧତିରେ। ତେଣୁ ତା'ର ସୁପରିଚାଳନା ପାଇଁ ଗଣତାନ୍ତ୍ରିକ ପଦ୍ଧତିରେ ଛାତ୍ରମାନେ ଏକ ମନ୍ତ୍ରୀମଣ୍ଡଳ କରି ଆପଣା ଆପଣାର କର୍ତ୍ତବ୍ୟ ତୁଲାଉ ଥିଲେ। ଯଥାଃ- ଶିକ୍ଷାମନ୍ତ୍ରୀ- ଲାଇବ୍ରେରୀର ପୂର୍ଣ୍ଣଦାୟିତ୍ୱ ତଥା ଶ୍ରେଣୀ

ସଫେଇ ମନ୍ତ୍ରୀ- ସ୍କୁଲ, ଛାତ୍ରାବାସ, ରାସ୍ତାଘାଟ, ପାଇଖାନା ଇତ୍ୟାଦିର ସଫାସୁତୁରା ଚିନ୍ତା ରଖୁଥିଲେ।

କୃଷି ମନ୍ତ୍ରୀ- ବଗିଚାର (ଉଭୟ ଫଳ ଓ ଫୁଲ ବଗିଚାର) ପରିଚାଳନା

ଖାଦ୍ୟ ମନ୍ତ୍ରୀ- ଛାତ୍ରାବାସର ରୋଷେଇ, ଖାଦ୍ୟ ପରିବେଷଣର ଚିନ୍ତା ଇତ୍ୟାଦି ଇତ୍ୟାଦି।

ଦୈନିକ ପ୍ରାୟ ପ୍ରତ୍ୟେକ ଛାତ୍ରଛାତ୍ରୀ ଦୁଇଘଣ୍ଟାର ଶାରୀରିକ ପରିଶ୍ରମ କରୁଥିଲେ। ଏହା ପ୍ରତ୍ୟେକ ସହଯୋଗୀର ସ୍ୱାସ୍ଥ୍ୟ ଉପରେ ସୁପ୍ରଭାବ ପକାଉଥିବା ସଙ୍ଗେ ସଙ୍ଗେ ଜୀବନକୁ ଆବଶ୍ୟକ ମାତ୍ରାରେ ସ୍ୱାଭିମାନୀ କରି ରଖୁଥିଲା। ଅନ୍ୟ ପରିଶ୍ରମରେ ଚୋର ପରି ଜିଇଁ ରହିବାକୁ କୌଣସି ଛାତ୍ର ପସନ୍ଦ କରୁନଥିଲେ।

**ଅନୁଷ୍ଠାନର ଶିକ୍ଷାପଦ୍ଧତି-**

ଚମ୍ପତିମୁଣ୍ଡା ସ୍କୁଲର ପ୍ରାରମ୍ଭରେ ଅର୍ଥାତ୍ ଆମେ ପଢ଼ିବା ସମୟରେ ଅନ୍ୟ ସ୍କୁଲ, କଲେଜ ପରି କୋଠାଘରେ ସିନା ପାଠ ପଢ଼ା ହେଉନଥିଲା କିନ୍ତୁ ସେଇ ସମୟର ଗଛତଳର ପାଠବି ହୃଦୟସ୍ପର୍ଶୀ ହୋଇଥିଲା। ବୋଧହୁଏ ଏହାର ମୁଖ୍ୟ କାରଣ ହେଉଛି, ଛାତ୍ର ଗଛତଳ କ୍ଲାସ୍‌କୁ ଶିକ୍ଷକଙ୍କୁ ନେଇ ଯାଉଥିଲେ। ଅନ୍ୟ ସ୍କୁଲ କଲେଜ ପରି ଶିକ୍ଷକ ଛାତ୍ରଙ୍କୁ ପଢ଼ାଇବାକୁ ନେଉ ନଥିଲେ। ବେଳେବେଳେ ଭାବେ ଏହା ମନୋବିଜ୍ଞାନୀ ଚିତ୍ତଭାଇଙ୍କର ଆପଣାର ମନ୍ତ୍ର ଫଳତଃ ଛାତ୍ର ଅଧିକ ଜ୍ଞାନ ଗ୍ରହଣର ସୁଯୋଗ ପାଉଥିଲେ।

**ଚମ୍ପତିମୁଣ୍ଡାର ଛାତ୍ରସମାଜ-**

ଆଶ୍ଚର୍ଯ୍ୟ କଥା ହେଲା ବିଭିନ୍ନ ପରିବେଶରୁ ଆସି ଏଠି ଛାତ୍ରଛାତ୍ରୀ ଏମିତି ରହୁଥିଲେ, ଯେପରି ଏକ ପରିବାରରେ ଜନ୍ମିତ ଭାଇଭଉଣୀ ଘରେ ଏକା ସାଙ୍ଗରେ ରହନ୍ତି। ତାଙ୍କ ମଧ୍ୟରେ ବେଳେବେଳେ ହୁଏତ କୌଣସି ବିଷୟରେ କ୍ୱଚିତ୍ ଭାବେ ମତଭେଦ ହୁଏ, ହେଲେ ସେମାନେ ପରସ୍ପରକୁ ଆପଣେଇ ସବୁବେଳେ ନିଜର ପରିଚୟ

ଦେଉଥିଲେ ଆମେ ଭାରତବାସୀ, ଆମେ ଭାରତର ଛାତ୍ରଛାତ୍ରୀ, ଆମେ ଭାଇଭଉଣୀ, ଏହା ଲେଖିବାବେଳେ ମନେପଡ଼େ ଛାତ୍ରାବାସରେ ଆମର ଅନ୍ୟ ଭାଇଭଉଣୀମାନଙ୍କ ମଧ୍ୟରେ କେତେଟା ଅସ୍ୱାଭାବିକ ମାନବ ଚରିତ୍ର ଯଥା, ସ୍ୱର୍ଗତଃ ଧ୍ରୁବ ଭାଇ, ସ୍ୱର୍ଗତଃ ଦିବାକର ଶତପଥୀ, ମୀରା ଅପା, ସରୋଜିନୀ ଅପା, ସର୍ବୋପରି ତନୁ ଅପା (ସ୍ୱର୍ଗତଃ ମାଳତୀ ଚୌଧୁରୀ-ଆମ 'ନୁମାଁ'ଙ୍କର ଝିଅ)। ସେ ତ ଥିଲେ ବାପା ମାଁଙ୍କୁ ନ ଦେଖିଲେ ତାଙ୍କ ଝିଅକୁ ଦେଖ-ପଦ୍ଧତିର। ଏପରି ସ୍ୱର୍ଗୀୟଚରିତ୍ର ଗୁଡ଼ିକ ପୃଥିବୀରେ ଖୁବ୍ କ୍ୱଚିତ୍ ମାତ୍ରାରେ ଦେଖିବାକୁ ମିଳେ। ଅନୁଷ୍ଠାନ ସତେ ଯେମିତି ଛାତ୍ର ସମାଜ ନିଜ ଯିବା ପର୍ଯ୍ୟନ୍ତ କର୍ମରତ ଥାଏ। ସାମୂହିକ ସଂଧ୍ୟା ପ୍ରାର୍ଥନା ପରେ ପରେ ପ୍ରତ୍ୟେକ ଛାତ୍ରଛାତ୍ରୀ ନିଜ ନିଜର ଅନୁଭୁତିରୁ ଯଦି ଚାହିଁବ, କିଛିଟା କହିବା ହେଲେ ପରିବେଶର ବିଶେଷତ୍ୱ ଥିଲା ଅନ୍ୟମାନେ ସେଥିରେ ଆଗ୍ରହର ସହ ଶୁଣୁଥିଲେ ଓ ସହଯୋଗ କରୁଥିଲେ। ପରସ୍ପରକୁ ସହଯୋଗ କରିବା ଥିଲା ଛାତ୍ରର ଧର୍ମ।

ରାତିର ପାଠପଢ଼ାରେ ଗୋଟିଏ ଲଣ୍ଠନରେ ଜଣେ/ଦୁଇଜଣ ଛାତ୍ର ମିଳିମିଶି ପଢୁଥିଲେ। କାହାରି ପାଖରେ ଅନ୍ୟକୁ Disturb କରିବାପାଇଁ ସମୟ କିମ୍ବା ମନ ନଥାଏ। ଏଇ ଅଦ୍‌ଭୁତ ପରିବେଶ ଭାଇ ଭଉଣୀଙ୍କର ଜ୍ଞାନ ସଂଗ୍ରହର ପିପାସା ବଢ଼ାଇଥାଏ।

**ଚିତ୍ତଭାଇଙ୍କର ବିଷୟରେ ପଦେ-**

ମୋର ଚମ୍ପତିମୁଣ୍ଡାର ରହଣୀ କାଳରେ ମୁଁ ଚିତ୍ତଭାଇଙ୍କୁ ଏକାକୀ ଗୋଟିଏ ପ୍ଲେଟ୍‌ରେ ଖାଇବାର କେବେ ଦେଖିନାହିଁ। ଯଦିଓ ସେ ବିବାହିତ ଥିଲେ ଦୁଇଓଳି ଗୋଟିଏ ପ୍ଲେଟ୍‌ରେ ଅନ୍ୟ ଏକ ଛାତ୍ର ଭାଇ ସହିତ ଖାଇବା ଥିଲା ତାଙ୍କର ଧର୍ମ। ଯେକୌଣସି ଛାତ୍ରଛାତ୍ରୀଙ୍କୁ ଭାଇ/ଭଉଣୀ ବୋଲି ସମ୍ବୋଧନ ଥିଲା ତାଙ୍କର ଅଭ୍ୟାସ। ତେବେ ଛାତ୍ରଛାତ୍ରୀ ତାଙ୍କୁ କାହିଁକି Mind Music ବା କୃଷ୍ଣ ବଂଶୀ ବୋଲି ନ ଭାବିବ। ଏଥିରୁ ପରିବେଶଟିକୁ ଅନୁମାନ କରିହେବ।

**ଚମ୍ପତିମୁଣ୍ଡା ଶିକ୍ଷାପରିବେଶର ଦୁର୍ବଳତା-**

ଓଡ଼ିଶାର ଏହା ମୌଳିକ ଶିକ୍ଷାର ଉଚ୍ଚସ୍ତରୀୟ ଏକମାତ୍ର ବିଦ୍ୟାଳୟ ଥିଲା। ତେଣୁ ସ୍ୱାଭାବିକତଃ ଛାତ୍ରଛାତ୍ରୀ ତଥା ଗୁରୁଜୀ ସମସ୍ତଙ୍କ ପାଇଁ ଖଦି ଲୁଗାର ବ୍ୟବହାର ବାଧ୍ୟତାମୂଳକ ଥିଲା। ଏହାଥିଲା ତାଙ୍କର ସ୍ୱାଭିମାନୀ ପରିଚୟ। ଇଂରାଜୀ ଭାଷାର ବଦଳରେ ନିଜ ମାତୃଭାଷାର ବହୁଳ ବ୍ୟବହାର ଆଉ ଏକ ଅଭିମାନ ଭରା କଣ୍ଠ। ଯଦିଓ ଆଜି ୬୨ ବର୍ଷ ପରେ ମଧ୍ୟ ମୋର ଅନୁଭବ, ଆମ ସଂସ୍କୃତିରୁ ଇଂରାଜୀ

ଭାଷାର ପ୍ରଭାବ ଲୋପ ପାଇବା ତ ଦୂରରୁ କଥା, କିଛିଟା ପରିମାଣରେ କମ୍ ନାହିଁ ବରଂ ବଢ଼ିଛି ଓ ବଢ଼ିବା ବି ସ୍ୱାଭାବିକ। କେବଳ ବୈଜ୍ଞାନିକ ଗବେଷଣା କ୍ଷେତ୍ରରେ ନୁହେଁ। ସବୁ କ୍ଷେତ୍ରରେ ଆମେ ନିଜକୁ ବିଶ୍ୱସ୍ତରୀୟ ମଣିଷ ବନେଇବାକୁ ଚେଷ୍ଟିତ ରହିଛୁ। ସମସ୍ତ ପୃଥିବୀକୁ ଆମ ଗାଁ ବନେଇବା ସମଗ୍ର ମାନବ ସମାଜକୁ ଆପଣେଇ ନେବା ଆମର ଲକ୍ଷ୍ୟ। ତେଣୁ କୌଣସି ଭାଷାକୁ ଉପେକ୍ଷା କରିବା ଆମ ପାଇଁ ଉଚିତ୍ କି ?

ମୁଁ ମୋର ବ୍ୟକ୍ତିଗତ ଅନୁଭୂତିରୁ ଆଉ ପଦେ ଲେଖୁଛି। ଥରେ ସମ୍ବଲପୁର-ଅନୁଗୁଳ ବସ୍‌ରେ ଆସୁଥାଏ। ବସ୍ ଭିତରେ କୌଣସି ଏକ ଯାତ୍ରୀ ପଚାରିବାରେ ମୁଁ ନିଜକୁ ଦଶମ ଶ୍ରେଣୀର ଛାତ୍ରର ପରିଚୟ ଦେଲି। ମୋର ଇଂରାଜୀ ଭାଷାର ଦୁର୍ବଳତାକୁ ନେଇ ମୋତେ ସେ ଯାତ୍ରୀ 'ମିଛୁଆ' ଆଖ୍ୟା ଦେଇଥିଲେ। ସେଦିନଠୁ ମୁଁ ଇଂରାଜୀ ପାଠରେ ବେଶୀ ମନ ଦେଲି ଓ ତତ୍‌କାଳୀନ DPI ମହୋଦୟଙ୍କର ଅନୁମତି କ୍ରମେ Matric (HSC) ପରୀକ୍ଷାରେ କୃତକାର୍ଯ୍ୟ ହେଲି। ତା'ପରେ ଡିଗ୍ରୀ, ପି.ଜି. ଓ ଜାତୀୟ ସ୍ତରରେ Banking ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲି। ଏହାର ପ୍ରଭାବରେ ମୋର ଅନ୍ୟ କେତେକ ଭାଇ ଭଉଣୀ ମଧ୍ୟ ଦେଖାଇ ଦେଲେ ଯେ ଚମ୍ପତିମୁଣ୍ଡାର ଛାତ୍ର କୌଣସି ସଦ୍‌ଗୁଣରେ କମ୍ ନୁହେଁ। ଅବଶ୍ୟ ଚମ୍ପତିମୁଣ୍ଡା ବିଦ୍ୟାଳୟ ବି ଆମ ମାଟ୍ରିକ୍ ପରୀକ୍ଷାପାଇଁ ଅନୁମତି ମିଳିବାରେ ଚେଷ୍ଟା କରିଛି, ତେବେ ମୂଳରୁ କାହିଁକି ଛାତ୍ରଛାତ୍ରୀଙ୍କୁ ଏ ଦିଗରେ ପ୍ରସ୍ତୁତ କରା ନଯିବ ?

**ଚମ୍ପତିମୁଣ୍ଡା ଶିକ୍ଷା ପଦ୍ଧତିର ମୋଟ ଫଳାଫଳ-**

ଶିକ୍ଷା ପରିବେଶରେ ଏହା ସୁନିଶ୍ଚିତ ଯେ ଉପରୋକ୍ତ ଚମ୍ପତିମୁଣ୍ଡା ଶିକ୍ଷା ପରିବେଶଟି ତା'ର ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କୁ ତାଙ୍କ ଜୀବନରେ ଏକ ଶୁଦ୍ଧପୂତ ସାମାଜିକ ଜୀବନ ବିତାଇ ଏକ ସତ୍ ଚରିତ୍ରବାନ ଭାରତୀୟ ନାଗରିକ ହେବାକୁ ପ୍ରେରିତ କରିଛି। ସବୁ ଭାଇଭଉଣୀଙ୍କୁ ମଣିଷପରି ମଣିଷଟିଏ ହେବାକୁ ଆମ/ମୋ ଚିତ୍ତଭାଇ, ସ୍ୱର୍ଗତା ନୁମାଁ ଓ ଅନ୍ୟ ସହଯୋଗୀ ମୋର ଚମ୍ପତିମୁଣ୍ଡା ଗୁରୁମାନଙ୍କୁ ମୋର କୋଟି କୋଟି ବିନମ୍ର ନିବେଦନ। ଆଉ ଥରେ ତାଙ୍କୁ ଭେଟି ପ୍ରଣତି ବାଢ଼ିବାର ଅଭିଳାଷ ନେଇ ରହିଲି।

ଅବସରପ୍ରାପ୍ତ ଶାଖା ପରିଚାଳକ, ଷ୍ଟେଟ ବ୍ୟାଙ୍କ ଅଫ୍ ଇଣ୍ଡିଆ,
ଷ୍ଟେସନ ରୋଡ୍, ପୋ/ଜି- ବରଗଡ଼, ଓଡିଶା

□

# ଚିହ୍ନା-ଅଚିହ୍ନା ଚିତ୍ତଭାଇ

## ଭାସ୍କର ଚନ୍ଦ୍ର ସାହୁ

ଅଜଣା-ଅଚିହ୍ନା ବ୍ୟକ୍ତିବିଶେଷକୁ ଭାଇ ବୋଲି ଡ଼ାକିବା ସାଧାରଣ ଶିଷ୍ଟାଚାରର କଥା। ହେଲେ ଅସାଧାରଣ ଆଦର୍ଶମୟ ମହାନ ବ୍ୟକ୍ତିତ୍ୱର ଅଧିକାରୀ ଚିତ୍ତଭାଇଙ୍କୁ "ଚିତ୍ତଭାଇ" ସମ୍ବୋଧନ କେତେ ପ୍ରଯୁଜ୍ୟ କେତେ ସମୀଚିନ ଭାବିଲେ ମନରେ ଦ୍ୱନ୍ଦ୍ୱ ଆସେ। ପୁଣି ତାଙ୍କ ଉପରେ ଟିକା-ଟିପ୍ପଣୀ ଦେବା ଆଉରି କଷ୍ଟସାଧ୍ୟ ମନେ ହେଲେ ମଧ୍ୟ ଏଠାରେ ପ୍ରୟାସ କରୁଛି।

ଚିତ୍ତଭାଇ ଥିଲେ ଆମର ଶିକ୍ଷାଗୁରୁ। ତାଙ୍କର ପରିଚୟ ପାଇଁ ପ୍ରାୟ ପଚାଶ ବର୍ଷ ତଳର ଚଂପତିମୁଣ୍ଡା ବନ ବିଦ୍ୟାଳୟକୁ ମୋତେ ଫେରିବାକୁ ହେବ। କାରଣ ଚିତ୍ତଭାଇ ଓ ଛାତ୍ର ହିସାବରେ ମୋର ସେଇଠିହିଁ ପ୍ରଥମ ଚିହ୍ନା ପରିଚୟ। ସେଦିନ ମୋ ଅନୁଭୂତିର ଇଲାକାକୁ ଓହ୍ଲେଇ ଆସିଥିଲେ ଆମର ପ୍ରୀୟ ଚିତ୍ତଭାଇ। ସୁତରାଂ ସେଇ ଅନୁଭୁତିର କିୟଦଂଶହିଁ ତାଙ୍କର ପରିଚୟ।

ଚଂପତିମୁଣ୍ଡା ବନ ବିଦ୍ୟାଳୟ। ଅନୁଗୋଳ ସହରଠାରୁ ପ୍ରାୟ ଦଶ ବାର କିଲୋମିଟର ଦୂରରେ ଅବସ୍ଥିତ ଏଇ ପୋଷ୍ଟ ବେସିକ୍ ସ୍କୁଲ। ସ୍ୱର୍ଗତଃ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀଙ୍କ ଦ୍ୱାରା ପ୍ରତିଷ୍ଠିତ, ପରିଚାଳିତ ଓ ନିୟନ୍ତ୍ରିତ ହେଉଥିଲା। ବିଦ୍ୟାଳୟର ଚତୁଃପାର୍ଶ୍ୱରେ ବିସ୍ତୀର୍ଣ୍ଣ ପାହାଡ଼ ଝରଣା ଓ ନିଘଞ୍ଚ ଜଂଗଲ ପରିବେଷ୍ଟିତ ଶ୍ୱାପଦ ସଂକୁଳ ଘନ ଘୋର ଅଂଧକାର। ନିକଟରେ ଚଂପତିମୁଣ୍ଡା ଗାଁ ସହିତ ଆଖ ପାଖରେ ଆଉରି ଅନେକ ଜଂଗଲୀ ଗାଁ। ଶିକ୍ଷା-ସଭ୍ୟତାର ଆଲୋକ ସେତେବେଳେ ଏ ଅଞ୍ଚଳକୁ ସ୍ପର୍ଶ କରି ନଥିଲା। ବସ୍ତୁତଃ, ଉଚ୍ଚତର ମୌଳିକ ଶିକ୍ଷା ଲାଭ ଲକ୍ଷ୍ୟ ନେଇ ଅନୁଷ୍ଠାନର ଗଠନ ଦାୟିତ୍ୱ ଚିତ୍ତଭାଇଙ୍କ ଉପରେ ନ୍ୟସ୍ତ ହେଲା। ଏବଂ ପରବର୍ତ୍ତୀ ସମୟରେ ଏଇ ବନ ବିଦ୍ୟାଳୟ "ଚଂପତିମୁଣ୍ଡା ଜୀବନ ବିଦ୍ୟାଳୟ" ନାମରେ ନାମିତ ହେଲା।

ଚଂପତିମୁଣ୍ଡା ବନ ବିଦ୍ୟାଳୟରେ ଚିତ୍ତଭାଇଙ୍କ ଆବିର୍ଭାବ ଏକ ନୂତନ ସୂର୍ଯ୍ୟୋଦୟର ସମ୍ଭାବନା ଆଣି ଦେଲା। ତାଙ୍କର ଜ୍ଞାନାଲୋକର ସ୍ପର୍ଶରେ ବିଦ୍ୟାଳୟ ତଥା ଆଖପାଖ ଅଂଧାରୀ ପରିବେଶ ବେଶ୍ ଉଦ୍‌ଭାସିତ ହୋଇ ଉଠିଲା। ସେତେବେଳେ

ମୁଁ ଅଷ୍ଟମଶ୍ରେଣୀର ଛାତ୍ର । ଆମେ ୪୦/୫୦ ଜଣ ଛାତ୍ର ସ୍କୁଲ ଛାତ୍ରାବାସରେ ରହି ଅଧ୍ୟୟନ କରୁଥିଲୁ । ଆମ ସହିତ ଚିତ୍ତଭାଇ ମଧ୍ୟ ସର୍ବଦା ପାଖେ ପାଖେ ରହୁଥିଲେ । ଧାଡ଼ିରେ ବସି ଏକାଠି ଖାଉଥିଲେ। ପିଲାଙ୍କ ସହିତ କ୍ୟାରମ ଓ ଭଲି ଖେଳୁଥିଲେ ହାରିଗଲେ କଳି-କଜିଆ ବି କରୁଥିଲେ । ଆମକୁ ନେଇ ଜଂଗଲ ସଫା କରି ରାସ୍ତା ତିଆରି କରିବା, ଗଛ ଲଗାଇବା, ବଗିଚା କରିବା ସବୁଥିରେ ନିଜକୁ ନିୟୋଜିତ କରୁଥିଲେ। ପିଲାଙ୍କ ଉପରକୁ ଗୋଡ଼ି ଫୋପାଡ଼ିବା, କାହାକୁ ଚିମୁଟିବା ଇତ୍ୟାଦି ଦୁଷ୍ଟାମି ଓ ଚଗଲାମି ମଧ୍ୟ କରୁଥିଲେ। କ୍ଲାସରେ ପାଠ ପଢ଼ାଉଥିଲେ। ସ୍କୁଲ ଓ ଛାତ୍ରାବାସର ସବୁ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରୁଥିଲେ । ଫଳତଃ ନିର୍ଭୟରେ ଆମେ ତାଙ୍କର ଅତି ନିକଟବର୍ତ୍ତୀ ହେବାର ସୁଯୋଗ ପାଇଲୁ। ଶିକ୍ଷକ-ଛାତ୍ରର ସଂପର୍କ ବଡ଼ଭାଇ-ସାନଭାଇର ନିବିଡ଼ ସଂପର୍କରେ ଆପେ ଆପେ ରୂପାନ୍ତରିତ ହୋଇଗଲା । ତଥାପି ତାଙ୍କ ପ୍ରତି ଏକ ଅହେତୁକ ଭୟ ଓ ସଂକୋଚ ମୋତେ ସମୟେ ସମୟେ ତାଙ୍କଠାରୁ ଖାପଛଡ଼ା କରି ଦିଏ । ଛାତ୍ର ସୁଲଭ ଅପରିପକ୍ୱ ମୋ ମନରେ ତାଙ୍କ ନେଇ ଅନେକ ପ୍ରଶ୍ନ ଉଙ୍କିମାରେ ।

ଦେଶ-ବିଦେଶରୁ ଦର୍ଶନଶାସ୍ତ୍ର ଓ ମନୋବିଜ୍ଞାନରେ କୃତିତ୍ୱର ସହ ଶିକ୍ଷାଲାଭ କରି ପୃଥିବୀର ଅନେକ ଭାଷା ଶିଖିବାରେ ଦକ୍ଷତା ହାସଲ କରି ଫେରିଥିବା ଇଏ କ'ଣ ସେଇ ଚିତ୍ତଭାଇ ? ଆମ ପାଖରେ ଚପଳାମୀ ଓ ଚଗଲାମୀ କରନ୍ତି । ଅଥଚ ନିମନ୍ତ୍ରଣ କ୍ରମେ ବିଭିନ୍ନ ଅନୁଷ୍ଠାନ ଓ କଟକ ଆକାଶବାଣୀରେ ଦୀକ୍ଷାନ୍ତ ଭାଷଣ ବି ଦିଅନ୍ତି । ଆଜି ମଧ୍ୟ ସଭାସମିତିରେ ଓ ଦୂରଦର୍ଶନରେ ତାଙ୍କର ମୁହଁ ଦେଖିବାକୁ ମିଳେ। ମୁଖ ନିଃସୃତ ବିଜ୍ଞତାର ବାଣୀ ଶୁଣିବାକୁ ମିଳେ। ଦେଶ-ବିଦେଶର ବିଭିନ୍ନ ଭାଷାଭାଷୀ ବଂଧୁଙ୍କ ସାକ୍ଷାତ ହେଲେ ତାଙ୍କ ଭାଷାରେ କଥା ହୁଅନ୍ତି । ଜ୍ଞାନୀ-ଗୁଣୀ ପଣ୍ଡିତଙ୍କ ସହିତ ଶାସ୍ତ୍ର ଆଲୋଚନାରେ ନିଜ ପାଣ୍ଡିତ୍ୟର ପ୍ରମାଣ ଦିଅନ୍ତି। ସ୍ୱାଭିମାନୀ ଚିତ୍ତଭାଇ ଓଡ଼ିଆଙ୍କ ସହିତ କଥାବାର୍ତ୍ତା କଲାବେଳେ ଓଡ଼ିଆ ବ୍ୟତୀତ ଅନ୍ୟ ଭାଷାର ଅକ୍ଷରଟିଏ ମଧ୍ୟ ଉଚ୍ଚାରଣ କରନ୍ତି ନାହିଁ । ତାଙ୍କ ମତରେ ନିଜକୁ ପ୍ରକାଶ କରିବା ପାଇଁ ଓଡ଼ିଆ ହେଉଛି ସବୁଠାରୁ ସହଜତମ ଭାଷା ରୂପେ ସେ ବିବେଚନା କରନ୍ତି । ପ୍ରତ୍ୟହ ଗୁଡ଼ିଏ ପଢ଼ିବା ଓ ଲେଖିବା ତାଙ୍କର ଅଭ୍ୟାସଗତ। କ'ଣ ସେ ପଢ଼ନ୍ତି, କ'ଣ ଲେଖନ୍ତି ସେତେବେଳେ ମୁଁ କିଛି ବୁଝି ପାରେନା । କେବଳ ଚାହିଁ ରହେ ପୃଥିବୀର ବିଭିନ୍ନ ଭାଷାରୁ ସଂଗୃହୀତ ଦୁଃଷ୍ପ୍ରାପ୍ୟ-ବହିର ତାଙ୍କ ଛୋଟିଆ ଲାଇବ୍ରେରୀକୁ ଓ ସ୍ୱରଚିତ କେତେକ ପୁସ୍ତକକୁ ।

ସରଳ, ନିରାଡ଼ମ୍ବରପୂର୍ଣ୍ଣ ତାଙ୍କ ଜୀବନର ଚଳଣି ଥିଲା । ପିନ୍ଧନ୍ତି ଖଣ୍ଡିଏ ଖଦଡ଼ ଧୋତି ଓ ପଞ୍ଜାବୀ । କାନ୍ଧରେ ଖଦଡ଼ ମୁଗା । ଗୋଡ଼ରେ ହାତ ତିଆରି ଭୁବନ ମୋଚି

ଚପଲ ତାଙ୍କ ଚିରାଚରିତ ବେଶ ପୋଷାକ। ଉଚ୍ଚ ଶିକ୍ଷାଗତ ଯୋଗ୍ୟତା ଭିତ୍ତିରେ ଅନେକ ଉଚ୍ଚ ପଦପଦବୀରେ ଅଧିଷ୍ଠିତ ହେବାର ସମସ୍ତ ସୁଯୋଗକୁ ପ୍ରତ୍ୟାଖ୍ୟାନ କଲେ। ଅର୍ଥ ରୋଜଗାର କରି ଭୋଗ-ବିଳାସ ପୂର୍ଣ୍ଣ ଜୀବନ ଯାପନ ତାଙ୍କର ଅଭିଳାଷ ନ ଥିଲା। ତେଣୁ ଜଣେ ପ୍ରବୀଣ ଶିକ୍ଷାବିତ୍ ହୋଇ ଶିକ୍ଷକ ରୂପେ ଆସିଥିଲେ ଚଂପତିମୁଣ୍ଡାର ଏଇ କର୍ମଶାଳାକୁ।

ନୂଆ ବାଟରେ ଚାଲିଲେ ମଣିଷ ବହୁଧା ବାଧାବିଘ୍ନର ସମ୍ମୁଖୀନ ହୁଏ। ଚିତ୍ତଭାଇ ସେଥିରୁ ବାଦ ପଡ଼ନ୍ତେ ବା କେମିତି। ଯେଉଁମାନଙ୍କ ଦ୍ୱାରା ଜୀବନ ବିଦ୍ୟାଳୟ ପ୍ରତିଷ୍ଠିତ ଓ ପରିଚାଳିତ ହେଉଥିଲା ସେମାନେ ସବୁ ସ୍ୱାଧୀନତା ସଂଗ୍ରାମୀ ରାଜନୈତିକ ବ୍ୟକ୍ତି ବିଶେଷ ଥିଲେ। ଗାନ୍ଧିଙ୍କ ଆହ୍ୱାନ କ୍ରମେ ଦେଶକୁ ସ୍ୱାଧୀନ କଲେ। କିନ୍ତୁ ଗାନ୍ଧିଙ୍କ ପ୍ରଦର୍ଶିତ ମୌଳିକ ଶିକ୍ଷାକୁ ପ୍ରଚଳନ ଓ ପ୍ରସାର କରିବାରେ ଅସଫଳ ହେଲେ। ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ। ବିଦ୍ୟାଳୟରେ ଇଂରେଜୀ ପାଠକୁ ନିଷିଦ୍ଧ କରାଗଲା। ସେମାନେ କିନ୍ତୁ ଏକ ନୂତନ ଶିକ୍ଷା ପଦ୍ଧତିର ପ୍ରଚଳନ ଓ ଭବିଷ୍ୟତ ପରିଣତ ବିଷୟରେ ଅନୁମାନ କରିବାରେ ସଂପୂର୍ଣ୍ଣ ଅସମର୍ଥ ଥିଲେ। ବସ୍ତୁତଃ, ଆମେ ପାଠପଢ଼ି ପରୀକ୍ଷା ଦେବା ବଦଳରେ ଆମକୁ ନେଇ ପରୀକ୍ଷା ନିରୀକ୍ଷା କରାଗଲା। ପ୍ରଧାନଶିକ୍ଷକ ଚିତ୍ତଭାଇଙ୍କ ଉପରେ ନିୟନ୍ତ୍ରଣ ରେଖା ଟଣା ଗଲା। ପ୍ରଭୁତ୍ୱ ବିସ୍ତାର କରାଗଲା।। ମୌଳିକ ଶିକ୍ଷା ମୂଳଲକ୍ଷ୍ୟ ଠାରୁ ଦୂରେଇ ଗଲା।

ସ୍ୱାଧୀନଚେତା ଚିତ୍ତଭାଇ ଥିଲେ ସାଲିସ ବିହୀନ ମଣିଷ। ସାଲିସ କରି ପାରିଲେ ନାହିଁ। ନିରୂପାୟ ହୋଇ ଆମକୁ ଆମ ଭାଗ୍ୟ ଉପରେ ଛାଡ଼ି ଦେଲେ। ଛାତ୍ରଙ୍କ ପ୍ରତି ତାଙ୍କ ଉପଦେଶାବଳୀ ବଦଳି ଗଲା। କୁହାଗଲା ମଣିଷ ହେବାକୁ ହେଲେ ନିଜକୁ ନିଜେ ଗଢ଼ିତୋଳି, ନ ପାରିଲେ ମାଙ୍ଗଡ଼ ହୋଇ ବୁଲିବ। ନିଜ ଗୋଡ଼ରେ ଛିଡ଼ାହୋଇ ଶିଖ ସ୍ୱାବଲମ୍ବୀ ହୁଅ। ସତେ ଯେପରି ସ୍ୱାବଲମ୍ବୀ ହେବା ବ୍ୟତୀତ ଜଣେ ଛାତ୍ରର ଜୀବନ ଆଉକିଛି, ସମ୍ଭାବନା ପାଇଁ ସମର୍ଥ ନୁହେଁ। 'ଆତ୍ମ ସଚେତନ ହୁଅ' ଥିଲା ଚିତ୍ତଭାଇଙ୍କର ଆମ ପାଇଁ ମହାମନ୍ତ୍ର। ଅବଶ୍ୟ ସେଇ ଗୁରୁ ମନ୍ତ୍ରକୁ ପାଥେୟ କରି ଅନେକ ବାଟ ଅତିକ୍ରମ କରି ମୁଁ ଆଜି ଏଇଠି ପହଞ୍ଚିପାରିଛି। ଚିତ୍ତଭାଇ ଛାତ୍ରମାନଙ୍କୁ ତାଙ୍କ ପରି ଗଢ଼ି ତୋଳିବାର ଏକ ଅବାସ୍ତବ ସ୍ୱପ୍ନ ଦେଖୁଥିଲେ। ଉପାଧି ପାଇଁ ନୁହେଁ ଜ୍ଞାନ ଆହରଣ ପାଇଁ ସେ ପାଠ ପଢ଼ିଥିଲେ। ତେଣୁ ସାର୍ଟିଫିକେଟ ସର୍ବସ୍ୱ ପାଠ ପ୍ରତି ସେ ବିଶେଷ ଗୁରୁତ୍ୱ ଦେଉନଥିଲେ। ଚିହ୍ନା ବ୍ରାହ୍ମଣ ପାଇଁ ସିନା ପଇତାର ଆବଶ୍ୟକତା ନ ଥାଇ ପାରେ। ମାତ୍ର ପଇତା ଯେ ଅଚିହ୍ନା ବ୍ରାହ୍ମଣର ପରିଚୟ ନିମନ୍ତେ ନିତାନ୍ତ ଅପରିହାର୍ଯ୍ୟ ତାକୁ କ'ଣ ଅସ୍ୱୀକାର କରି ହେବ ?

ଶେଷରେ ଏ ଶିକ୍ଷାନୁଷ୍ଠାନ ଲକ୍ଷ୍ୟଭ୍ରଷ୍ଟ ହେଲା । ଆମ ଜୀବନକୁ ଗଢ଼ିବା ପରିବର୍ତ୍ତେ ଆମକୁ ଖେଳନା କରି ଖେଳି ଚାଲିଲା । ସମସ୍ତଙ୍କର ସ୍ୱପ୍ନ ସାକାର ହେବା ପରିବର୍ତ୍ତେ ଲିଭିଗଲା । ସମସ୍ତେ ହାରିଗଲେ । ଅସଫଳତାର କଳା ବାଦଲ ଖଣ୍ଡେ ଜୀବନ ବିଦ୍ୟାଳୟ ଆକାଶକୁ ଆଚ୍ଛନ୍ନ କରି ଦେଲା । ଉଦୟ ସୂର୍ଯ୍ୟ ଅସ୍ତମିତ ହେଲେ । ଚିତ୍ତଭାଇ ବିଦାୟ ନେଲେ । ଅଂଧକାର ଭିତରେ ଦିଗହରା ହୋଇ ଛାତ୍ରଛାତ୍ରୀ କିଏ କୁଆଡ଼େ ହଜିଗଲେ । ମୌଳିକ ଶିକ୍ଷାର ଚାରାଗଛଟି ମହାଦ୍ରୁମରେ ପରିଣତ ପୂର୍ବରୁ ଧୀରେ ଧୀରେ ଝାଉଳିଗଲା । ଏବଂ ଶେଷରେ ମୂଳୋତ୍ପାଟନ ଘଟିଲା । ଜୀବନ ବିଦ୍ୟାଳୟ ଆମ ଜୀବନକୁ ଗଢ଼ି ତୋଳିବାରେ ବ୍ୟର୍ଥ ହେଲା । ଛାତ୍ର ଛାତ୍ରୀଙ୍କୁ ଠକି ଦେଲା ।

ସୌଭାଗ୍ୟ କ୍ରମେ ଏପରି ଦୁର୍ଦ୍ଦିନ ବେଳାରେ ଚିର ସ୍ମରଣୀୟ ପ୍ରଧାନ ଗୁରୁଜୀ ଶ୍ରୀଯୁକ୍ତ ସତ୍ୟବାଦୀ ଦାସଙ୍କୁ ପାଇ ଆମେ କିଛି ମାତ୍ରାରେ ଆଶ୍ୱସ୍ତ ହେଲୁ । ସେ ଥିଲେ ସାମାନ୍ୟ ଦୀପଶିଖାଟିଏ । ଆଶାର କ୍ଷୀଣ ଆଲୋକରେ ଆମକୁ ଆଲୋକିତ କଲେ । ତାଙ୍କରି ଉଦ୍ୟମରେ ଆମେ ଚାରି ପାଞ୍ଚ ଜଣ ଲୁଚିଛପି ପ୍ରଚଳିତ ମାଟ୍ରିକ ପରୀକ୍ଷା ଦେଲୁ । କୃତକାର୍ଯ୍ୟ ହେଲୁ । ମୌଳିକ ଶିକ୍ଷାର ଖୋଳପା ତ୍ୟାଗ କରି ପ୍ରଚଳିତ ଶିକ୍ଷା ମାର୍ଗରେ ଆଉ କିଛି ବାଟ ଆଗେଇ ଗଲୁ । ଜୀବନକୁ ଗଢ଼ି ତୋଳିବାର ଦୁର୍ବଳ ମୂଳଦୁଆ ଉପରେ ଜୀବନ ଗଢ଼ିବା ପରିବର୍ତ୍ତେ ବଂଚିବାର ରାହା ଅନ୍ତତଃ ମିଳିଗଲା । ଫଳ ସ୍ୱରୂପ ଆଜି ମୁଁ କେନ୍ଦ୍ର ସରକାରଙ୍କ ଜଣେ ଅବସରପ୍ରାପ୍ତ କର୍ମଚାରୀ ରୂପେ ଗଣ୍ୟ ହେବାକୁ ସମର୍ଥ ହୋଇଛି ।

ଏ ଭିତରେ ଦୀର୍ଘ ପଚାଶ ବର୍ଷ ଅତିକ୍ରାନ୍ତ ହୋଇସାରିଛି । ଚିତ୍ତଭାଇଙ୍କ ସହିତ ସଂପର୍କ ରଖିବାର କୌଣସି ସୁଯୋଗ ମୁଁ ପାଇନି । ମଝିରେ ମଝିରେ ତାଙ୍କ ସଂପର୍କରେ ଶୁଣା ସମ୍ବାଦ କିଛି ମୋ ପାଖରେ ପହଞ୍ଚିଯାଏ । ସେ କେତେବେଳେ ଦେଶରେ ତ କେତେବେଳେ ବିଦେଶର କୌଣସି ବିଶ୍ୱ ବିଦ୍ୟାଳୟରେ ଅଧ୍ୟାପକ ହେଲେ । ଅନେକ ଉପାଦେୟ ପୁସ୍ତକ ରଚନା କରି ଲେଖକର ପରିଚୟ ସୃଷ୍ଟି କଲେ । ନିରବଚ୍ଛିନ୍ନ ସାଧନାର ସଫଳତା ସ୍ୱରୂପ "ବିଶ୍ୱକୁ ଗବାକ୍ଷ" ପୁସ୍ତକ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ହେଲା । ସାହିତ୍ୟ ଜଗତରେ ତାଙ୍କ ପାଇଁ ଏକ ସ୍ୱତନ୍ତ୍ର ପରିଚୟର ସ୍ୱୀକୃତି ଆଣି ଦେଲା ।

ମାତ୍ର ଏତିକି ପରିଚୟ ତାଙ୍କୁ ଚିହ୍ନିବାକୁ ଯଥେଷ୍ଟ ନୁହଁ । ସେ ଜଣେ ଅପରିସୀମ ଜ୍ଞାନର ଗନ୍ତାଘର । ଚିନ୍ତାରେ ଚେତନାରେ ଦୃଷ୍ଟିରେ ଓ ସୃଷ୍ଟିରେ ନୂତନତ୍ୱର ସେ ଜଣେ ସଂଧାନୀ ପୁରୁଷ । ସଂସାରର ଚଲାପଥ ଛାଡ଼ି ଅବାଟରେ ଅନୁଗୋଳରେ ଚାଲି କିଛି ନୂଆ ତଥ୍ୟ ଓ ତତ୍ତ୍ୱ ସନ୍ଦର୍ଶନ ଓ ପ୍ରଦର୍ଶନ କରିବାରେ ସତତ ଚେଷ୍ଟିତ । ବସ୍ତୁତଃ

ଅନ୍ୟକୁ ସହଜରେ ମାନି ନେବାକୁ ସେ ପ୍ରସ୍ତୁତ ହୋଇ ପାରନ୍ତି ନାହି । ବରଂ ଜଣେ ବଳିଷ୍ଠ ସମାଲୋଚକ ଭାବେ ତାଙ୍କର ନିର୍ଭୁଲ ଆଲୋଚନା ଓ ଯୁକ୍ତିସଙ୍ଗତ ସମାଲୋଚନାକୁ କେହି ଅସ୍ୱୀକାର କରି ପାରନ୍ତି ନାହିଁ । ମାନି ନିଅନ୍ତି । ଚୁପ୍ ରୁହନ୍ତି । ଚିତ୍ତଭାଇଙ୍କର ଅନ୍ୟ ଏକ ଗୁଣ ହେଲା ସେ ଅତିମାତ୍ରାରେ ନିର୍ଭୀକ ଚେତା । ଜୀବନରେ କାହାକୁ ଭୟ କରିବା ସେ ଶିଖି ନାହାଁନ୍ତି । ଭୟର ଭୂତ ତାଙ୍କ ଉପରେ ସବାର ହୋଇ ପାରିନି । ତେଣୁ ନିଜକୁ ସମସ୍ତଙ୍କ ସାମନାରେ ଉପସ୍ଥାପିତ କରି ପାରନ୍ତି ନିର୍ଭୟରେ ନିର୍ବିଘ୍ନରେ ।

ପୃଥିବୀର ଅନେକ ଭାଷାରେ ଅଗାଧ ପାଣ୍ଡିତ୍ୟର ଅଧିକାରୀ ସ୍ୱାଭିମାନୀ ଚିତ୍ତଭାଇ ଓଡ଼ିଆଙ୍କ ସହିତ କେବଳ ମାତୃଭାଷା ଓଡ଼ିଆରେ କଥାବାର୍ତ୍ତା କରନ୍ତି ଓ ଓଡ଼ିଆରେ ଲେଖନ୍ତି । ବରଂ ଅନ୍ୟ ଭାଷାରେ ଲିଖିତ ପୁସ୍ତକକୁ ଓଡ଼ିଆରେ ଅନୁବାଦ କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ଓଡ଼ିଶାର ବିଭିନ୍ନ ଆଂଚଳିକ ଗ୍ରାମ୍ୟ ଭାଷାରେ ଉଚ୍ଚାରିତ କେତେକ ଶବ୍ଦ ଚୟନ କରି ନିଜ ରଚନାରେ ରୂପ ଦେବାର ଶୈଳୀରେ ତାଙ୍କ ମୌଳିକତାର ଚିହ୍ନ ସ୍ପଷ୍ଟ ବାରି ହୋଇଯାଏ ।

ଚିତ୍ତଭାଇଙ୍କ ଜୀବନ ଶୈଳୀ ବଡ଼ ବୈଚିତ୍ର୍ୟପୂର୍ଣ୍ଣ ଏପରି ଅସାଧାରଣ ବିରଳ ବ୍ୟକ୍ତିତ୍ୱ ଅନ୍ୟ କାହାଠାରେ ଦୃଷ୍ଟିଗୋଚର ହୁଏ ନାହିଁ । ପିଲାଙ୍କ ମେଳରେ ପିଲାଖେଳ ଦୁଷ୍ଟାମୀ ଓ ବଦ୍‌ଖୋଇ ପୁଣି ବିଦ୍ୱାନ-ପଣ୍ଡିତଙ୍କ ପାଖରେ ଆପଣା ଅସାଧ୍ୟ ପାଣ୍ଡିତ୍ୟ ପ୍ରଦର୍ଶନ ଏପରି ଦ୍ୱୈତ୍ୟ ଭୂମିକାରେ ଅବତୀର୍ଣ୍ଣ ନିଖୁଣ ବାସ୍ତବ ଅଭିନୟର କଳା କୁଶଳତା ଅନ୍ୟ କାହାଠାରେ ମୁଁ ଦେଖିନାହିଁ ।

ସୌଭାଗ୍ୟକ୍ରମେ ନିକଟରେ ସେ ଦିନ ଅନୁଗୋଳଠାରେ ବାଜି ରାଉତ ଛାତ୍ରାବାସର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ଅବସରରେ ପ୍ରୀୟ ଚିତ୍ତଭାଇଙ୍କୁ ଦେଖିବାର ସୁଯୋଗ ପାଇଲି । ସ୍ୱଳ୍ପ ସମୟର ରହଣି ଭିତରେ ସେ ଖାଲି ହଜିଲା ଅତୀତକୁ ଖୋଜୁଥା'ନ୍ତି । ଉତ୍ସବର କାର୍ଯ୍ୟକ୍ରମରେ ଏକ ଆଲୋଚନାଚକ୍ର ସ୍ଥାନ ପାଇଥିଲା । ବିଷୟ ଥିଲା "ଜଗତୀକରଣ ପରିପ୍ରେକ୍ଷୀରେ ମୌଳିକ ଶିକ୍ଷାର ପ୍ରାସଙ୍ଗିକତା"। ଆଜି ଯେତେବେଳେ ମୌଳିକ ଶିକ୍ଷାର ଅଧଃପତନରେ ପ୍ରଚଳିତ ଶିକ୍ଷା ପଦ୍ଧତିର ପୂର୍ଣ୍ଣ ପ୍ରଚଳନ ସେତେବେଳେ ଏପରି ଏକ ବିଷୟ ନିର୍ବାଚନ ମୋତେ କିପରି ଅପ୍ରାସଙ୍ଗିକ ବୋଧ ହେଲା । ସଭାସ୍ଥଳରେ ଶ୍ରୋତା-ବକ୍ତା ଏକତ୍ରିତ ବସି ପରସ୍ପର ଭିତରେ ମତାମତର ଆଦାନ ପ୍ରଦାନ କରୁଥା'ନ୍ତି । ମଧ୍ୟଭାଗରେ ଚିତ୍ତଭାଇ । ନୀରବରେ ବସି ରହି ସବୁ ଶୁଣୁଥା'ନ୍ତି । ବୁଝିବା ତ ଦୂରର କଥା ସ୍ପଷ୍ଟ ଶୁଣିବା ମୋ ପକ୍ଷରେ ସମ୍ଭବ ନ ଥିଲା ।

ସଭାକାର୍ଯ୍ୟ ଶେଷରେ ଚିତ୍ତଭାଇଙ୍କ ପାଖକୁ ଗଲି ଭକ୍ତିପୂତ ପ୍ରଣାମ କଲି । ଭୁଲି ଯାଇଥିବେ ଭାବି ନାମ କହି ପରିଚୟ ଦେଲି । ସ୍ମରଣ ଶକ୍ତି ସଂପନ୍ନ ଚିତ୍ତଭାଇ ତତ୍‌କ୍ଷଣାତ୍ ଆଉ ପାଦେ ଆଗେଇ ଯାଇ ମୁଁ କେଉଁ ଅଫିସରେ କାର୍ଯ୍ୟ କରେ ତା'ର ନାମ ଓ ଠିକଣା ଓଲଟି ମୋତେ ସୂଚେଇ ଦେଲେ । କିପରି କେଉଁଠୁ ମୋ ଖବର ସଂଗ୍ରହ କରି ମନରେ ସାଇତି ରଖି ପାରିଛନ୍ତି ଜାଣି ଆନନ୍ଦରେ ଆତ୍ମହରା ହୋଇ ଉଠିଲି । ସ୍ୱଳ୍ପ ସମୟର ରହଣି ଭିତରେ ତାଙ୍କ ସହିତ ଆଉ କିଛି କଥା ହେବା ସମ୍ଭବ ନ ଥିଲା । ବିଦାୟ ନେଇ ଭୁବନେଶ୍ୱର ଅଭିମୁଖେ ସେ ଯାତ୍ରା କଲେ ।

ଚିତ୍ତଭାଇଙ୍କ ବିଷୟରେ ମୋର ବକ୍ତବ୍ୟ ଏଇଠି ରହିଗଲା । ଯାହା ସବୁ କହିଗଲି ତାହା ମୋ ପୁଞ୍ଜିଭୂତ ବେଦନାସିକ୍ତ ତିକ୍ତ ଅନୁଭୂତିର ଅଭିବ୍ୟକ୍ତି ମାତ୍ର । ମୋ ଅନୁଭୂତିର ଇଲାକାକୁ ଓହ୍ଲେଇ ଆସିଥିବା ଚିତ୍ତଭାଇଙ୍କୁ ସ୍ଥୂଳ ଦୃଷ୍ଟିରେ ନିରୀକ୍ଷଣ କରି ଚିହ୍ନିବାର ଓ ଚିହ୍ନେଇବାର କେବଳ ଦୁଃସାହସିକ ପ୍ରୟାସ କରିଛି ।

ଭଗବାନଙ୍କ ନାମ ନିତି-ପ୍ରତିଦିନ ଆମେ ଉଚ୍ଚାରଣ କରୁ । ତାଙ୍କର ନାମ-ସଂକୀର୍ତ୍ତନ କରୁ । ମହିମା ଗାନ କରୁ । ତନ୍ମୟ ହୋଇଯାଉ । କିନ୍ତୁ ଭଗବାନଙ୍କୁ ଚିହ୍ନିବାକୁ କିଏ ଅବା ସମର୍ଥ ହୋଇଛି ? ଚିତ୍ତଭାଇ, ଚିତ୍ତଭାଇ ନାମଧରି ବାରମ୍ବାର ତାଙ୍କୁ ମୁଁ ଡ଼ାକି ଆସିଛି । ହେଲେ ତାଙ୍କୁ ଚିହ୍ନିବାର ଯୋଗ୍ୟତା ମୋ ଠାରେ ଆଜି ପର୍ଯ୍ୟନ୍ତ ଜନ୍ମ ନେଇ ନାହିଁ । ମୁଁ ଜାଣେ, ଶତ-ସହସ୍ରବାର ଜନ୍ମର ତପସ୍ୟା କଲେ ମଧ୍ୟ ଅର୍ନ୍ତନିହିତ ଅଲୌକିକ ଆମ ଶକ୍ତିକୁ ଚିହ୍ନିବା ତାଙ୍କ ପ୍ରାଣ-ସତ୍ତାକୁ ଉପଲବ୍‌ଧି କରିବାକୁ କେବେହେଲେ ମୁଁ ସକ୍ଷମ ହୋଇ ପାରିବି ନାହିଁ । ବସ୍ତୁତଃ, ଚିତ୍ତଭାଇ ମୋ ପାଖରେ ଆଜି ଏକ ବିରାଟ ପ୍ରଶ୍ନବାଚୀ ।

ଚିତ୍ତଭାଇ ! ଆପଣଙ୍କ ବିଷୟରେ ଏଇ ସଂକ୍ଷିପ୍ତ ଟିପ୍ପଣୀ ଦେବାର ଧୃଷ୍ଟତା ପାଇଁ ମୋତେ କ୍ଷମା କରନ୍ତୁ । ଭଗବାନଙ୍କ ଉଦ୍ଦେଶ୍ୟରେ ଏତିକି ମିନତି-ଆପଣ ଚୀରଂଜୀବି ହୁଅନ୍ତୁ । ଲେଖନୀ ଚୀରସ୍ରୋତା ହେଉ । ଅବାଟରେ ଚାଲୁ ଚାଲୁ ଥକି ନ ଯାଇ ନୂତନତ୍ୱର ସଂଧାନ କରନ୍ତୁ । ସାହିତ୍ୟ ଜଗତକୁ ନୂତନ ଦିଗ୍‌ଦର୍ଶନ ନୂଆ ସୃଷ୍ଟି ସମ୍ଭାରରେ ସମୃଦ୍ଧ କରି ନୂଆ ସମ୍ଭାବନା ଆଣି ଦିଅନ୍ତୁ ।

ପରମ ପୂଜନୀୟ ଚିର ସ୍ମରଣୀୟ ଚିତ୍ତଭାଇ ଆପଣଙ୍କ ଚରଣରେ ଭକ୍ତିପୂତ ପ୍ରଣାମ ବ୍ୟତୀତ ନୈବେଦ୍ୟ ବାଢ଼ିବାକୁ ମୋ ପାଖରେ ଆଉ ଅବଶିଷ୍ଟ କିଛି ନାହିଁ । ପ୍ରଣାମ । ଆଜି ଏତିକି ।

ସାଃ- ଶାନ୍ତିମାର୍ଗ (ସୁସୁଡ଼ା), ପୋଃ- ହାକିମପଡ଼ା
ଜିଃ- ଅନୁଗୋଳ - ୭୫୯ ୧୪୩, ମୋ :- ୯୮୬୧୪୬୩୯୧୧ ।

●

# ମୋ ଅସଲ ପାଠଶାଳା

## ଚୈତନ୍ୟ ପ୍ରସାଦ ସେଠୀ

ପ୍ରଥମରୁ କହି ରଖୁଛି ଯେ- ଆମ ଜୀବନ ବିଦ୍ୟାଳୟର ବହୁ ବହୁ ବୈଶିଷ୍ଟ୍ୟ ଭିତରୁ ଆମ ଦେଶରେ ବାସ କରୁଥିବା ଜନ ସମୁଦାୟ-ସମାଜର ସବୁ ଦୃଷ୍ଟିରୁ ସର୍ବନିମ୍ନ ସ୍ତରରେ ଥିବା ଅବହେଳିତ ପିଲାମାନଙ୍କୁ ସହର ବଜାର, ଗାଁ, ଗଣ୍ଡା, ବଣ ମୂଳକରୁ ସାଦରେ ସାଉଁଟି ଆଣି ମଣିଷ ପରି ମଣିଷଟିଏ ହୋଇ ବଂଚ଼ିବାର ଦେୟ୍ ମୁକ୍ତ (Non-paying Education) ସତ୍‌ଶିକ୍ଷା ଦେବା ହିଁ ଥିଲା ସର୍ବ ପ୍ରଧାନ ବୈଶିଷ୍ଟ୍ୟ; ଯାହା ଏକ ସୁଗଣତନ୍ତ୍ର ରାଷ୍ଟ୍ରର ପ୍ରଧାନ ଓ ଆଦ୍ୟ କର୍ତ୍ତବ୍ୟ ବୋଲି ମୁଁ ବିଚ଼ାର କରେ । ସେଇ ଜୀବନ ବିଦ୍ୟାଳୟ୍ କଥା ମନେ ପକାଇଲା ବେଳକୁ ମୋ ମନପ୍ରାଣ ଯେତିକି ଆହ୍ଲାଦିତ ହୋଇଉଠୁଛି, ତାହାଠାରୁ ସୀମାହୀନ ଭାବେ ଦୁଃଖାଭିଭୂତ ହୋଇଯାଉଛି ।

ମୋ ଜୀବନର ରୂପରେଖ ଯେଉଁ ବିଦ୍ୟାଳୟ୍ ମୋତେ ସେତେବେଳେ ପ୍ରଦାନ କରିଥିଲା, ସେ ବିଦ୍ୟାଳୟର ପ୍ରସ୍ଫୁଟିତ ହୋଇଉଠୁଥିବା କାଳରେ ଅଣ୍ଡାଭାଙ୍ଗି ଧରାଶାୟୀ ହେବାର ଘଟଣାକ୍ରମ କେତେ ଅପ୍ରତ୍ୟାଶିତ ଭାବରେ ଘଟିଗଲା, ତାହା ଭାବିଲାବେଳକୁ ମନ ନାନା ଭାବରେ ଭାରାକ୍ରାନ୍ତ ହୋଉପଡୁଛି । ଏମିତି ଏକ ଅନନ୍ୟ ବିଦ୍ୟାଦାନ ଓ ବିଦ୍ୟାର୍ଜନର ଆସ୍ଥାନଟିଏ ସତରେ କେହି ନିରପେକ୍ଷ ହୋଇ ଆନ୍ତରିକ ଭାବେ ତଥା ନିରହଂକାର ମନପ୍ରାଣରେ ହୁଏତ ସେତେବେଳେ ଚ଼ାହୁଁନଥିଲେ କିମ୍ବା ଆଜି ମଧ୍ୟ କେହି କାୟମନବାକ୍ୟରେ ଚ଼ାହୁଁନାହାଁନ୍ତି ବୋଲି ଆଜି ମୁଁ କ୍ଷୋଭର ସହିତ କହିବାକୁ ବାଧ୍ୟ ହେଉଛି ।

ଆଜି ମୁଁ ଭାବିବାକୁ ବାଧ୍ୟ ହେଉଛି ଯେ-ଯେଉଁମାନେ ସେମାନଙ୍କର ସର୍ବସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଗାନ୍ଧି-ବିନୋବାଙ୍କ ଅହଂଶୂନ୍ୟ ଅହିଂସା ଆନ୍ଦୋଳନରେ ଝାସ ଦେଇଥିଲେ, ସେମାନେ କ'ଣ ପ୍ରକୃତରେ ସେମାନଙ୍କର ଅନ୍ତର୍ଜୀବନ ଓ ବହିର୍ଜୀବନରେ ଅହଂଶୂନ୍ୟ ସ୍ୱାର୍ଥ ରହିତ ଥିଲେ, ନା' ଭିତରେ ତାଙ୍କର ଅନ୍ୟ ଏକ ଉଦ୍ଦେଶ୍ୟ କୌଣସି କାରଣରୁ ଲୁଚ଼େଇ ହୋଇ ରହିଥିଲା ? ଏଇ ପ୍ରଶ୍ନ ଏବେ ମୋତେ ସେମାନଙ୍କ ବିଷୟ୍ରେ ଦ୍ୱନ୍ଦ ବଳୟ୍ ଭିତରକୁ ଟାଣି ନେଉଛି । ଯିଏ ଜୀବନରେ ଏକ ପୂର୍ଣ୍ଣାଙ୍ଗ ଉତ୍ତରଣ ପାଇଁ ଗାନ୍ଧି, ଗୋପବନ୍ଧୁ ଓ ବିନୋବାଙ୍କ ସ୍ୱଦେଶ ଗଠନ ଓ ତାହାର ସମୁତ୍କୋଳ ଉନ୍ନତି

ପରିକଳ୍ପେ "କର୍ମଣ୍ୟେ ବାଧିକାରସ୍ତେ ମାଂ ଫଳେଷୁ କଦାଚ଼ନ"ର କର୍ମଯୋଗୀ ଜୀବନ ବିତାଇବାର ସଂକଳ୍ପ ନେଇ ଗାନ୍ଧି, ଗୋପବନ୍ଧୁଙ୍କ କର୍ମ ମାର୍ଗରେ ପାଦ ଥାପି ଆତ୍ମତୃପ୍ତି ଲାଭ କରୁଥିବ, ସିଏ କ'ଣ ତା' ଅନ୍ତରର ଗଭୀରତମ ପ୍ରଦେଶରେ କାହିଁ କେଉଁ ଦୂର ଆକାଶରେ ତାରା ପରି ଜୁଲୁ ଜୁଲୁ ହେଉଥିବା ଅହଂ-ଚ଼େତନାର ବଶବର୍ତ୍ତୀ ହୋଇପାରେ ? ଏ ପ୍ରଶ୍ନ ମଧ୍ୟ ବେଳେବେଳେ ମୋ ମନ ଓ ପ୍ରାଣକୁ ଆଚ୍ଛନ୍ନ କରି ରଖୁଛି। ମୁଁ ଜୀବନ ବିଦ୍ୟାଳୟକୁ ଆସିବା ପୂର୍ବରୁ ଆମ ଗ୍ରାମ୍ୟ ଉଚ୍ଚ ମୌଳିକ ବିଦ୍ୟାଳୟର ପ୍ରଧାନ ଶିକ୍ଷିକଙ୍କଠାରୁ ଜୀବନ ବିଦ୍ୟାଳୟର ନାନା ଜୀବନଭିମୁଖୀ ସ୍ୱପ୍ନ ସମ୍ଭାବନା ବିଷୟରେ ସବୁ ଶୁଣି ମୋ ନିଜ ଜୀବନ ଗଢ଼ିବାର ସ୍ୱପ୍ନ ଖୁବ୍ ଦେଖୁଥିଲି ଏବଂ ସେଠାରେ ଆସି ପହଞ୍ଚିବା ପରେ ସେଠି ଯେ ପ୍ରତ୍ୟେକ ଛାତ୍ର ଓ ଶିକ୍ଷକ ଏକ ନୂତନ ବାସ୍ତବାଭିମୁଖୀ ଆଲୋକିତ ଜୀବନର ସ୍ୱପ୍ନ ଦେଖୁଥିଲେ, ତାହା ମଧ୍ୟ କିଞ୍ଚିତ୍ ଉପଲବ୍ଧି କରିଥିଲି।

ମାତ୍ର ଯେତେବେଳେ ସେଇ ସବୁ ସ୍ୱପ୍ନଗୁଡ଼ିକୁ ସାକାର କରିବା ଦିଗରେ ସେ ବିଦ୍ୟାଳୟ ବେଶ୍ କିଛି ବାଟ ଅଗ୍ରଗତି କରି ହଠାତ୍ ଦିଗହଜା ହୋଇ ମ୍ରିୟମାଣ ହୋଇଗଲା ଓ ଆମ ସମସ୍ତଙ୍କର ସେ ସମୟରେ ସ୍ୱପ୍ନର ସଂସାର ଉଜୁଡ଼ିବା ଆରମ୍ଭ କଲା, ସେତେବେଳେ ଆତ୍ମସ୍ଥ ହୋଇ ସେ କଥା ଭାବିଲାବେଳକୁ ବିଦ୍ୟାଳୟ ଆରମ୍ଭ କରିଥିବା ପୁରୋଧାମାନଙ୍କର ସେହି ସୁଦୂର ସୁପ୍ତ ଅହଂକାର ତଥା ସ୍ୱାର୍ଥପରତା ଆମ ସମସ୍ତଙ୍କୁ ଅତି ବିଭତ୍ସଭାବରେ ଦୃଶ୍ୟ ହେବାରେ ଲାଗିଲା, ଯେଉଁଥିପାଇଁ ବିଦ୍ୟାଳୟର ଅଧଃପତନ ଅବଶ୍ୟମ୍ଭାବୀ ହୋଇ ପଡ଼ିଲା। ସେ କଥା କେହି ହେଲେ ସେତେବେଳେ ଚ଼ିନ୍ତା କରି ତହିଁର ନିରାକରଣ ପାଇଁ କିଛି ଉପାୟ ଚ଼ିନ୍ତା କରିଲେ ନାହିଁ। ଜୀବନ ବିଦ୍ୟାଳୟର ସ୍ୱପ୍ନ ଉଜୁଡ଼ିଗଲା। ସେତେବେଳେ (ଆଜି ମଧ୍ୟ) ସେଠି ବିଦ୍ୟାଳୟଟିଏ ଯେନତେନ ପ୍ରକାରେଣ ଚ଼ାଲିଲା। ହେଲେ ସେ ଜୀବନ ଆଉ ସେଠି ଦୃଷ୍ଟିଗୋଚ଼ର ହେଲା ନାହିଁ, ଯାହା ଏବେ ମଧ୍ୟ ସେଠି ଅନ୍ତଃସଲୀଳା ଫଲ୍ଗୁ ପରି ତଥାପି ଆମ ସ୍ୱପ୍ନ ମଧ୍ୟରେ ରହି ଆମକୁ କିଞ୍ଚିତ୍ ଉତ୍ସାହିତ କରୁଛି।

ଆମ ଜୀବନ ବିଦ୍ୟାଳୟ ଏବେ ମଧ୍ୟ ମୋ ଜୀବନ ପ୍ରବାହ ସହିତ ସଂଶ୍ଳିଷ୍ଟ ହୋଇ ମୋ ଶିକ୍ଷକ ଜୀବନ ସହିତ ଚ଼ାଲିଛି। ଓଡ଼ିଶାର ବିଭିନ୍ନ ମହାବିଦ୍ୟାଳୟରେ ଶିକ୍ଷାଦାନ କଲାବେଳେ ନାନା ଉପଲକ୍ଷ୍ୟରେ, ଜୀବନ ବିଦ୍ୟାଳୟର ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ ତଥା ଛାତ୍ରଜୀବନର ଉଦାହରଣ ମୋ ଛାତ୍ର ଛାତ୍ରୀମାନଙ୍କୁ ଦେଇ ଆତ୍ମସନ୍ତୋଷ ଲାଭ କରିଛି। ଏବେ ମଧ୍ୟ ମୁଁ ଚ଼ିନ୍ତା କରୁଛି ଯେ- ବର୍ତ୍ତମାନର ବ୍ୟବସାୟିକ ଶିକ୍ଷାଧାରା ଆମ ଦେଶ ପାଇଁ ଆଦୌ ଶୁଭଙ୍କର ନୁହେଁ। ଏ ଶିକ୍ଷା କେବଳ

ବସ୍ତୁ-ସର୍ବସ୍ୱ ଜୀବନାଭିମୁଖୀ ହୋଇଥିବାରୁ ଏହା ମାଧ୍ୟମ ଦେଇ ଦେଶର ନାଗରୀକମାନେ ମାନବିକତାଠାରୁ କ୍ରମଶଃ ବହୁ ତଳସ୍ତରକୁ ଚାଲିଯାଉଥିବାର ଆଜି ପ୍ରତ୍ୟେକ ଅନୁଭବ କରୁଛନ୍ତି ।

ତେଣୁ ଯେତେ ବ୍ୟୟବହୁଳ ହେଲେ ବି ତତ୍‌କାଳୀନ ଜୀବନ ବିଦ୍ୟାଳୟରେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଆଜି ମଧ୍ୟ ଯଦି ସେଇ ନିଷ୍ଠାର ସହିତ ଆରମ୍ଭ ହୋଇ ସକଳ ପ୍ରକାର ଆଧୁନିକ ଜ୍ଞାନ ବିଜ୍ଞାନ ସମ୍ମତ ଶିକ୍ଷା ସଂଯୋଜିତ ସହ କାର୍ଯ୍ୟ କରି ଚାଲେ, ତେବେ ଆମ ସାମାଜିକ, ସାଂସ୍କୃତିକ ତଥା ଆଧ୍ୟାତ୍ମିକ ଜୀବନରେ ବର୍ତ୍ତମାନ ଅନୁଭୂତ ହେଉଥିବା ନାନା ଅପଜୀବନ ଧୀରେ ଧୀରେ ସୁଧୁରି ଯାଇ ପାରିବ ଓ ଲୋକେ ଅନ୍ତତଃ ସଳଖ ହୋଇ ନିଃଶ୍ୱାସ ଟିକେ ମାରି ପାରିବେ । ପ୍ରାୟ ଏଇ ପରି କଥା ଆମ ଗାଁ ଉଚ୍ଚ ମୌଳିକ ବିଦ୍ୟାଳୟର ପ୍ରଧାନ ଗୁରୁଜୀ ମଧ୍ୟ ଯେତେବେଳେ "ଗ୍ରାମ ସେବକ" ପତ୍ରିକାରୁ ଚିତ୍ତଭାଇଙ୍କ "ଜଂଗଲ ଚିଠି" ପଢ଼ି ଆମ୍ଭମାନଙ୍କୁ କହୁଥିଲେ ।

ତେଣୁ ଗାଁ ସ୍କୁଲରୁ ଅଷ୍ଟମ ଶ୍ରେଣୀ ପରୀକ୍ଷା ପରେ ସେଇଭଳି ଏକ ଆଦର୍ଶ ବିଦ୍ୟାଳୟରେ ପଢ଼ିବା ପାଇଁ ମୁଁ ଭାବୁଥିଲି । ମାତ୍ର ଏପରି ସ୍ୱପ୍ନରେ ରହି କ'ଣ କିପରି ଭାବରେ ଉଚ୍ଚଶିକ୍ଷା ପାଇ ପାରିବି, ସେଇ ଚିନ୍ତା ଭିତରେ ବୁଡ଼ି ରହିଥିବା ବେଳେ, ତେଣେ ଘରର ଦୂରାବସ୍ଥାକୁ ଚାହିଁ ବାପା ମୋତେ ବୁଝାଇ କହିଲେ ଯେ- "ତୁ ଆଉ ଅଧିକ ପାଠ ପଢ଼ିବାକୁ ନ ଯାଇ ବରଂ ଗାଁରେ ଆରମ୍ଭ ହୋଇଥିବା ତିନିମାସିଆ ଅମିନ ଟ୍ରେନିଂ ନେଇଯା" । ତା'ପରେ ସେ କହିଲେ- "ଆମ ଅଞ୍ଚଳରେ ଆରମ୍ଭ ହୋଇଥିବା ଜମିଜମା ବନ୍ଦୋବସ୍ତ କାର୍ଯ୍ୟରେ ଗୋବିନ୍ଦ କକା (ସରକାରୀ ଅମିନ ଶ୍ରୀ ଗୋବିନ୍ଦ ଚନ୍ଦ୍ର ବିଶ୍ୱାଳ) ତୋତେ କୁହାବୋଲା କରି ଭର୍ତ୍ତି କରି ଦେବେ ବୋଲି ମୋତେ ନିର୍ଭର ପ୍ରତିଶ୍ରୁତି ଦେଇଛନ୍ତି । ତୁ ଚାକିରିଟିଏ କଲେ ଘରର ଅବସ୍ଥା ଟିକେ ବାଟକୁ ଆସିଯିବ ।" ବାପାଙ୍କ ଏକଥା ଶୁଣି ମନେ ମନେ ଦୁଃଖରେ ଏତେ ଦୂର ଭାଙ୍ଗି ପଡ଼ିଲି ଯେ- ବୋଉ ପାଖରେ ପିଲାଙ୍କ ପରି କାନ୍ଦି ପକାଇଲି । ଏଥିରେ ବୋଉ ଅବା କ'ଣ କରି ପାରନ୍ତା । ଖାଲି ଗୁଡ଼ିଏ ପ୍ରବୋଧନା ଦେଇ ମୋତେ ତୁନି କରାଇଲା ।

ତହିଁ ଆରଦିନ ସକାଳୁ ମୁଁ ଦୁଃଖଭରା ହୃଦୟରେ ଗାଁ ସ୍କୁଲ ଆଡ଼େ ଗଲି । ଯାଉ ଯାଉ ସ୍କୁଲ ହତାରେ ପ୍ରଧାନ ଗୁରୁଜୀ ଶ୍ରୀ କାଶୀନାଥ ଷଡ଼ଙ୍ଗୀ ଦେଖା ହୋଇଗଲେ । ମୋତେ ବିମର୍ଷ ଦେଖି ସେ ପଚାରିଲେ - "କିରେ ! କ'ଣ ହେଲା ?" ମୁଁ ହତାଶ ଭାବେ କହିଲି- "ଗୁରୁଜୀ! ଆପଣ ତ ଆମ ଘର କଥା ସବୁ ଜାଣନ୍ତି । ମୁଁ ଆଉ ପାଠ ପଢ଼ିପାରିବି ନାହିଁ । ବାପା ମୋତେ ଅମିନ ଟ୍ରେନିଂ ଯିବାପାଇଁ କହୁଛନ୍ତି "। କିଛି ସମୟ

ଚିନ୍ତା କରି ଗୁରୁଜୀ ପୁଣି କହିଲେ- "ଆରେ, ଚମ୍ପତି ମୁଣ୍ଡା ଜୀବନ ବିଦ୍ୟାଳୟରେ ଯେଉଁମାନେ ପାଠ ପଢୁଛନ୍ତି, ସେମାନଙ୍କର ରହିବା ଓ ଖାଇବା ଖର୍ଚ୍ଚ ସେମାନଙ୍କୁ ଦେବାକୁ ପଡ଼େ ନାହିଁ ବୋଲି ମୁଁ ଜାଣିଛି । ତୁ ବାପାଙ୍କୁ ତୋର ସେଇ କଥା କହି ସେଠାକୁ ଯାଉନୁ ?" ମୁଁ କହିଲି- "ଗୁରୁଜୀ ! ସେଇଟା ମୋ ପକ୍ଷେ ସମ୍ଭବ ନୁହେଁ । କାରଣ ବାପାଙ୍କର ଏକ୍କା ଜିଦ୍ ଯେ- ମୁଁ ଅମିନ ଟ୍ରେନିଂ ଯିବି ।" ତା'ପରେ ସେ କହିଲେ- "ଆଚ୍ଛା, ହଉ, ତୁ ସନ୍ଧ୍ୟାବେଳକୁ ମୋ ବସାକୁ ଆସ । ଦେଖିବା କ'ଣ କରାଯାଇ ପାରିବ ।"

ମୁଁ ପୁଣି ସନ୍ଧ୍ୟାବେଳକୁ ଗୁରୁଜୀଙ୍କ ବସାଘରକୁ ଗଲି । ଗୁରୁଜୀ ସନ୍ଧ୍ୟା ପ୍ରାର୍ଥନା ସାରି ଉଠିଲା ବେଳକୁ ମୁଁ ବାହାରେ ଠିଆ ହୋଇଥିବାର ଦେଖି ମୋତେ ଭିତରକୁ ଡ଼ାକିଲେ ଓ କହିଲେ- "ତୁ ଗୋଟେ କାମ କର, ଘରୁ ଲୁଚିକରି ସେଠାକୁ ଚାଲିଯାଆ । ଯିବାର ସମସ୍ତ ବନ୍ଦୋବସ୍ତ ଆମେ କରିବା ।" ମୁଁ ଭଙ୍ଗା ମନରେ କହିଲି- "ଗୁରୁଜୀ ! କେଉଁଠି ସେ ସ୍କୁଲ, କେତେ ବାଟ, ଯିବାପାଇଁ ମୋ ପାଖରେ ସମ୍ବଳ କାହିଁ ? ପୁଣି, ବାପା ଜାଣିଲେ ଭୀଷଣ ବିରକ୍ତ ହେବେ । ଏ କଥା ସମ୍ଭବ ହେଲାପରି ମୋତେ ଲାଗୁନାହିଁ" । ଗୁରୁଜୀ ପୁଣି କହିଲେ- "ତୁ ପାଠ ପଢ଼ିବାକୁ ହେଲେ କିଛି ରିସ୍କ ନେବାକୁ ପଡ଼ିବ । ବ୍ୟସ୍ତ ହୁଅନା, ବୈରାଗୀ ଗୁରୁଜୀ, ମୁଁ ଓ ଅନ୍ୟ ଗୁରୁଜୀମାନେ ଆଜି ଦ୍ୱିପ୍ରହର ବେଳେ ତୋ ପଢ଼ା ପଢ଼ି ବିଷୟରେ ବିଚାର ବିମର୍ଷ କରୁଥିଲୁ । ତୁ ଗୋଟେ କାମ କର । ଘରେ ତୋର କିଛି ବିଛଣା ପତ୍ର ବ୍ୟବସ୍ଥାରେ ଲାଗିପଡ଼ । ପ୍ରଥମେ ସେ ଜୀବନ ବିଦ୍ୟାଳୟର ପ୍ରଧାନ ଗୁରୁଜୀଙ୍କ ନିକଟକୁ, ତୁ ସେଠାରେ ଅଧ୍ୟୟନ କରିବାକୁ ଚାହୁଁଛୁ ବୋଲି ଦରଖାସ୍ତ ଖଣ୍ଡେ ଲେଖ୍ ଓ ସେଥିରେ ସେଠାରେ ପାଠ ପଢ଼ିବାକୁ ହେଲେ କେତେ କ'ଣ ଖର୍ଚ୍ଚ ଲାଗିବ, ସେ କଥା ଜାଣିବାକୁ ଚାହିଁ ଅନୁରୋଧ କର, ହେଇ, ସେ ଟେବୁଲ ଉପରେ ଥିବା ଲଫାଫା ଓ କାଗଜ ନେଇ ଯା' । ମୁଁ ଯେଉଁ ଠିକଣା ଦେଉଛି, ତାହା ଠିକ୍ ଭାବେ ଲଫାଫା ଉପରେ ଲେଖିବୁ ଓ ତୋ ଠିକଣା, ମୋ ମାର୍ଫତ୍‌ରେ ଦେବୁ" । ମୁଁ ଦରଖାସ୍ତ ଲେଖି ଗୁରୁଜୀଙ୍କୁ ଦେଖାଇଲି ଏବଂ ସେ ତହିଁରେ ସାମାନ୍ୟ ସଂଶୋଧନ କରି ତାହା ଭଲ ଅକ୍ଷରରେ ନିର୍ଭୁଲ୍ ଭାବେ ଉତାରି ପୋଷ୍ଟ ଅଫିସରେ ପକାଇବାକୁ କହି ମୋତେ ଚମ୍ପତିମୁଣ୍ଡା ଠିକଣା ଦେଇ ଆମ ଗାଁ ଦୋକାନ ଆଡ଼କୁ ବାହାରି ଗଲେ । ମୁଁ ଯଥାବିଧି ଦରଖାସ୍ତଟି ଉତାରି, ଲଫାଫାରେ ଠିକ୍ ଭାବେ ଠିକଣା ଲେଖି ତହିଁରେ ଦରଖାସ୍ତଟି ଭରିଲି ଓ ସେଇ ସନ୍ଧ୍ୟାରେ ପୋଷ୍ଟ ଅଫିସ୍ ଆସି ବାହାରେ ଟଙ୍ଗା ହୋଇଥିବା ପୋଷ୍ଟ ବାକ୍ସରେ ଚିଠିଟି ପକାଇ ଦେଇ ଠାକୁରଙ୍କୁ ଡ଼ାକି ଘରକୁ ଫେରିଲି ଓ ପ୍ରତିଦିନ ପୋଷ୍ଟ ଅଫିସ୍ ଯାଇ ଅପେକ୍ଷା କଲି । ଠିକ୍ ଆଠ ଦିନ ପରେ ଚିଠିର ଉତ୍ତର

ଆସିଗଲା । ଚିଠିଟି ସେଠିକାର ପ୍ରଧାନ ଶିକ୍ଷକ ଚିତ୍ତଭାଇ ଲେଖିଥିଲେ । ସେଥିରେ ଲେଖାଥିଲା- "ଏଠାରେ ପାଠ ପଢ଼ିବାକୁ ହେଲେ କୌଣସି ନାମଲେଖା ଦେୟ ଦେବାକୁ ପଡ଼ିବ ନାହିଁ । ତୁମେ ତୁମର ବିଛଣାପତ୍ର, ମଶାରୀ, ଥାଳିଗିନା, ଲଣ୍ଠନ, ବିଦ୍ୟାଳୟ ତ୍ୟାଗ କରୁଥିବା ପ୍ରମାଣ ପତ୍ର, ଲୋଟା ଓ ତୁମ ଅଞ୍ଚଳରେ ବହୁଳଭାବେ ଦେଖା ଯାଉଥିବା ଗଛର ଚାରାଟିଏ ଧରି ଆସି ଜୁଲାଇ ମାସ ସୁଦ୍ଧା ଏଠାରେ ନାମ ଲେଖାଇ ନିଅ"। ଏଇ ପୋଷ୍ଟକାର୍ଡ ଚିଠି ଖଣ୍ଡିକ ପାଇ ମୁଁ ଯେତିକି ଖୁସି ହୋଇଥିଲି, ତାକୁ କଦାପି ମାପି ହେବ ନାହିଁ । ଚିଠି ନେଇ ସ୍କୁଲକୁ ଯାଇ ଗୁରୁଜୀଙ୍କୁ ଭେଟିଲି । ଗୁରୁଜୀ ମଧ୍ୟ ଖୁବ୍ ଖୁସି ହେଲେ । ଏବେ ପଡ଼ିଲା କେମିତି ସେଠାକୁ ଯିବାର ଚିନ୍ତା । ପ୍ରଧାନ ଗୁରୁଜୀ ଅନ୍ୟ ଗୁରୁଜୀମାନଙ୍କଠାରୁ କିଛି ଟଙ୍କା ଚୁଡ଼ା, ଗୁଡ଼, ବାସନ, ଖଣ୍ଡେ ଛୋଟ ଟିଣ ବାକ୍ସ, ମଶାରୀ ଖଣ୍ଡେ ସଂଗ୍ରହ କରି ଦେଲେ । ଦିନ ଠିକ୍ ହୋଇଗଲା । ଶ୍ରାବଣ ମାସ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଉପର ବେଳା ଏଠୁ ଯାତ୍ରା ଆରମ୍ଭ ହେବେ । ଗୁରୁଜୀ କହିଲେ- " ତୁ ଘରେ ବାପା ବୋଉଙ୍କୁ କହିବୁ ଯେ- ତୁ ପ୍ରଧାନ ଗୁରୁଜୀଙ୍କ ସଙ୍ଗେ କଟକ ଯାଉଛୁ । ୩/ ୪ ଦିନ ପରେ କଟକରୁ ଫେରିବୁ"। ତାହାହିଁ ହେଲା । ମୁଁ ଘରେ କହିଲି- "ମୁଁ ଗୁରୁଜୀଙ୍କ ସହ କଟକ ଯାଉଛି । ୩/୪ଦିନ ପରେ ଫେରିବି । ତେଣୁ ମୋ ପାଇଁ ରାତି ରହିବାକୁ ବିଛଣା କିଛି ଦିଅ"। ବାପା ଖଣ୍ଡେ ପୁରୁଣା ସତରଞ୍ଜି, ଖଣ୍ଡେ କନ୍ଥା ଓ ତା' ଉପରେ ପାରିବାକୁ ଖଣ୍ଡେ ପୁରୁଣା ଲୁଗା ତଥା ତକିଆଟିଏ କରି ଦେଲେ । ମୋ ନିଜ ଖର୍ଚ୍ଚ ପାଇଁ ତିନିଟଙ୍କା ଦେଲେ । ଗହ୍ମାପୂର୍ଣ୍ଣମୀ ଦିନ ନଡ଼ିଆ ଲଢ଼େଇ ପାଇଁ ସଂଗ୍ରହ କରିଥିବା ଦୁଇଟି ଲଢ଼େଇ ନଡ଼ିଆ ଘର ଅଜାଣତରେ ଦୁଇ ଟଙ୍କାରେ ବିକି ଗାଏ ମୋଟ ୫ ଟଙ୍କା ମୋ ଜ୍ୟାମିତି ବାକ୍ସରେ ରଖିଲି ।

ଗହ୍ମାପୂର୍ଣ୍ଣମୀ ପୂର୍ବଦିନ ଉପରବେଳା ୩/ ୪ଟାରେ ଘରୁ ବିଛଣା ପତ୍ର ଧରି ସ୍କୁଲକୁ ବାହାରି ଆସିଲି । ଗୁରୁଜୀଙ୍କ ଘରେ ସବୁ ଜିନିଷ ଟିଣ ବାକ୍ସରେ ସଜାଡ଼ି ରଖିଲି । ଗୁରୁଜୀ ଖଣ୍ଡେ କାଗଜରେ ମୋର ଗନ୍ତବ୍ୟ ପଥର ସୂଚନା ଗୋଟି ଗୋଟି କରି ଲେଖିଲେ । ଚଂପତିମୁଣ୍ଡା ଯିବାକୁ ହେଲେ ସାକ୍ଷୀଗୋପାଳଠାରୁ ପୁରୀ, ତାଳଚେର ଟ୍ରେନ୍‌ରେ ମେରାମୁଣ୍ଡଳୀ ଷ୍ଟେସନ ପର୍ଯ୍ୟନ୍ତ ଯିବ । ସେଇ ଷ୍ଟେସନ ପାଖ ବସ୍‌ଷ୍ଟାଣ୍ଡରୁ ସମ୍ବଲପୁର କିମ୍ବା କିଆକଟା ବସ୍‌ରେ ବସି ଅନୁଗୋଳ ଦେଇ ବଡ଼କେରାରେ ଓହ୍ଲାଇବ । ସେଠାରୁ ପ୍ରାୟ ତିନି କିଲୋମିଟର ରାସ୍ତା ଚଂପତି ମୁଣ୍ଡା । ବଡ଼କେରା ମୌଳିକ ସ୍କୁଲରେ ପଚାରି ଦେଲେ ସେମାନେ ରାସ୍ତା ଦେଖାଇ ଦେବେ । ସେଇ ରାସ୍ତାଟି ପୁରୁଣା କଟକ-ସମ୍ବଲପୁର ରାସ୍ତା ଥିଲା । ସେଇ ରାସ୍ତା କଡ଼ରେ ଚଂପତିମୁଣ୍ଡା ଜୀବନ ବିଦ୍ୟାଳୟ । ସେ ପୁଣି ସହିଲେ- "ତୁ ତ ସାନ ପିଲାଟାଏ, ସାକ୍ଷୀଗୋପାଳ ରେଳଷ୍ଟେସନରେ ଟିକେଟ୍

କିଣାବେଳକୁ half ଟିକେଟ୍‌ଟିଏ କିଣିବୁ। ମନେ ରଖ, ଟ୍ରେନ୍ ପୁରୀରୁ ସାକ୍ଷୀଗୋପାଳରେ ପହଞ୍ଚିବ, ରାତି ୧୦ଟା ୪୫ ମିନିଟ୍‌ରେ"।

ଗୁରୁଜୀଙ୍କ କଥାନୁଯାୟୀ ଉପରବେଳା ୪ଟା ୧୫ ମିନିଟ୍ ବେଳେ ଗାଁର ସିଧା ବାଟରେ ସାକ୍ଷୀଗୋପାଳ ନ ଯାଇ, ଆମ ଘରେ ମୋତେ ଯେମିତି କେହି ଦେଖି ନ ପାରିବେ, ତେଣୁ ଦୂର ବିଲ ଗହୀର ବୁଲାଣି ବାଟ ଦେଇ ସୋମେଶ୍ୱର ପୁରଠାରେ ସାକ୍ଷୀଗୋପାଳକୁ ସଡ଼କ ପଥ ଧରିଲି। ବାଟରେ ମଝିରେ ଝିପିଝିପି ବର୍ଷା ଟିକିଏ ହେବାରୁ ଗଛ ମୂଳେ ଟିକେ ଠିଆ ହୋଇ ପୁଣି ବାକ୍ସ ମୁଣ୍ଡେଇ ପୂର୍ବ ଦିଗେ ଚାଲିଲି। ବକୁଳ ବନ ପାଖରେ ପହଞ୍ଚି ଗୁରୁଜୀଙ୍କ କହିବା ମୁତାବକ ଗୋଟିଏ ବଉଳ ଗଛର ଚାରା ଓ ଗୋଟିଏ ଛୁରୀଅନା ଗଛର ଛୋଟ ଚାରା ମାଟି ସହିତ ତାଡ଼ି ସ୍କୁଲରୁ ଆଣିଥିବା ଛୋଟ ବ୍ୟାଗ୍‌ରେ ରଖି ତହିଁରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ପୋଖରୀରୁ ପାଣି ଛିଞ୍ଚି ପୁଣି ଚାଲିଲି। ଷ୍ଟେସନ୍‌ରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ୬ଟା ୩୦ ମିନିଟ୍। ଷ୍ଟେସନ୍‌ର ମୁଷାଫିରଖାନା ଟିକେଟ୍ କଟା ଝରକା ପାଖାପାଖି ବାକ୍ସ ରଖି ଟିକେଟ୍ ଘର ଭିତରେ ବସି ହିସାବ କରୁଥିବା ଜଣେ ବାବୁଙ୍କୁ ପଚାରି ବୁଝିଲି ଯେ, ପୁରୀ-ତାଳଚେ଼ର ରାତି ୧୦ଟା ୪୫ରେ ଏଠି ପହଞ୍ଚିବ ଓ ତା'ର ଅଧଘଣ୍ଟାଏ ବା ପନ୍ଦର ମିନିଟ୍ ପୂର୍ବରୁ ଟିକେଟ୍ ଦିଆଯିବ। କୌତୁହଳି ହୋଇ ତାଙ୍କୁ ପୁଣି ପଚାରିଲି- "ଆଜ୍ଞା ! ମେରାମଣ୍ଡଳୀକୁ ଏଠୁ ମୋତେ କେତେ ପଇସା ଲାଗିବ ?" ସେ ତାଙ୍କ ଆଡୁ କହିଲେ "ତୁମକୁ ତ half ଟିକେଟ୍ ଲାଗିବ"। ଏତକ ଶୁଣି ଖୁବ୍ ଖୁସି ହୋଇଗଲି। ସେଇ ପାଖରେ ତଳଟା ଟିକିଏ ଗାମୁଛାରେ ଝାଡ଼ି ଦେଇ ସ୍କୁଲରୁ ଆଣିଥିବା ଖବର୍ କାଗଜ ପାରି ତା' ଉପରେ ମୋ ବାକ୍ସକୁ ଆଉଜି ବସି ଟିକେ ନିଃଶ୍ୱାସ ମାରିଲି। ରାତି ଆଠଟାବେଳକୁ ଭୋକ ଲାଗିଲା। ତେଣୁ ବାକ୍ସ ଫିଟେଇ ଚୁଡ଼ା ଗୁଡ଼ ଥାଳିରେ ବାହାର କରି ବାହାରେ ଖୁବ୍ ନିକଟରେ ଥିବା ହାବିସ୍ କଳରୁ ପାଣି ଆଣି ଚୁଡ଼ା କଲଖିଆ ପେଟେ ଖାଇ ପାଣି ପିଇ ଦେଇ ବସିଲି। ଗାଡ଼ି ଆସୁଥାଏ, ଷ୍ଟେସନ ଗହଳ ବଢୁଥାଏ। ଗାଡ଼ି ଚାଲିଗଲେ ପୁଣି ସବୁ ଶୁନଶାନ୍। ଏମିତି କିଛି ସମୟ ପରେ ମୋତେ ନିଦ ଲାଗିଲା। ମୁଁ ଖାଲି ଢୁମାଇଁ ପଡୁଥାଏ। ପୁଣି ଉଠି କାନ୍ଥରେ ଟଙ୍ଗା ହୋଇଥିବା ଘଣ୍ଟାକୁ ଚାହୁଁଥାଏ। ୯ଟା ବାଜିଲା, ୧୦ଟା ବାଜିଲା, ମୁଁ ମଝିରେ ମଝିରେ ଷ୍ଟେସନ ବାବୁଙ୍କୁ ମୋ ଟ୍ରେନ୍ କଥା ପଚାରି ବୁଝୁଥାଏ।

ଶେଷରେ ଟ୍ରେନ୍ ପାଇଁ ଘଣ୍ଟେ ବାଜିଲା ଓ ଟିକେଟ୍ କଟା ଆରମ୍ଭ ହେଲା। ମୁଁ ମୋ ଟିକେଟ୍‌ଟି କାଟି ସାର୍ଟ୍ ପକେଟ୍‌ରେ ଯତ୍ନର ସହ ରଖି ପ୍ଲାଟ୍‌ଫର୍ମକୁ ଯାଇ ପୁରୀ-ତାଳଚେ଼ର ଗାଡ଼ିକୁ ଉତ୍କଣ୍ଠାର ସହିତ ଚାହିଁ ରହିଲି। ଟ୍ରେନ୍ ଠିକ୍ ସମୟରେ ଆସିଲା।

ବେଶି ଲୋକ ନ ଥିଲେ । ତେଣୁ ମୁଁ ଧୀରେ ସୁସ୍ଥେ ଟ୍ରେନ୍ ଭିତରକୁ ମୋ ବାକ୍ସ ସହିତ ଯାଇ ଝରକା ପାଖ ସିଟ୍‌ରେ ବସି ନିଃଶ୍ୱାସ ମାରିଲି । ଖୋର୍ଦ୍ଧାରୋଡ୍ ପର୍ଯ୍ୟନ୍ତ ଚେଇଁଥିଲି, ତା'ପରେ କେତେବେଳେ ନିଦରେ ଶୋଇ ପଡ଼ିଛି ଜାଣିନି । ସକାଳ ହେଲାବେଳକୁ କଟକ ଷ୍ଟେସନ୍‌ରେ ଗାଡ଼ି ଠିଆ ହୋଇଥିବାର ଦେଖିଲି । ଦାନ୍ତ ପତ୍ର କରି ପୁଣି ଚୂଡ଼ା ଟିକେ ଖାଇ ପାଣି ପିଇ ବସିଲି । ବାଟଯାକ ନାନା ଏ ପାଖ ସେ ପାଖ ଚିନ୍ତାରେ ଯେତିକି ଦୁଃଖ ଲାଗୁଥାଏ, ମୁଁ ଜୀବନ ବିଦ୍ୟାଳୟରେ ବିନା ଖର୍ଚ୍ଚରେ ପାଠ ପଢ଼ି ପାରିବି ଏଇ ସ୍ୱପ୍ନ ଦେଖି ବହୁତ ଖୁସି ମଧ୍ୟ ହେଉଥାଏ । ଦିନ ଦଶଟା, ସାଢ଼େ ଦଶଟା ବେଳକୁ ଟ୍ରେନ୍ ମେରାମୁଣ୍ଡଳୀ ଷ୍ଟେସନରେ ପହଞ୍ଚିଲା । ସେଠି କିଆକଟା ବା ସମ୍ବଲପୁର ଲାଗି କେଉଁଠି ଟିକେଟ୍ କଟା ହେଉଛି ବୁଝି, ଲାଇନରେ ଠିଆ ହୋଇ ବଡ଼କେରା ଯାଏଁ ଟିକେଟ୍ ଖଣ୍ଡେ କାଟି ଉଦ୍ଦିଷ୍ଟ ବସ୍‌ରେ ବସିଲି । ବସ୍ ଚାଲିଲା । ଖୁସି ବି ଲାଗିଲା । ଅନୁଗୋଳରେ ବସ୍ ବେଶୀ ସମୟ ରହିବାରୁ ତଳକୁ ଓହ୍ଲାଇ ବରା ଦୁଇଟା କିଣି ଖାଇଦେଲି ଓ ପୁଣି ବସ୍‌କୁ ଜଲ୍‌ଦି ଫେରି ନିଜ ସିଟ୍‌ରେ ବସିଲି ।

ବସ୍ ବଡ଼କେରା ଷ୍ଟପେଜରେ ପହଞ୍ଚିଲା । ମୁଁ ଖୁବ୍ ଖୁସିରେ ଓହ୍ଲାଇ ଚାହିଁଲାବେଳକୁ, ମୁଁ ଯେ ବଡ଼କେରା ମୌଳିକ ସ୍କୁଲ ପାଖରେ ଠିଆ ହୋଇଛି, ନାମ ଫଳକରୁ ଜାଣି ପାରିଲି । ସନ୍ତର୍ପଣର ସହ ସ୍କୁଲ ଭିତରକୁ ଯାଇ ଜଣେ ବୟସ୍କ ଲୋକଙ୍କୁ ଚଂପତ୍ତିମୁଣ୍ଡା ଜୀବନ ବିଦ୍ୟାଳୟକୁ କେଉଁବାଟ ପଚାରିବାରୁ, ସେ ମହାଶୟ ମୋତେ ସିଧା ବାଟଟି ବତାଇ ଦେଲେ । ସେଇ ଅନୁସାରେ ଯାଇ ଗୋଟିଏ ନଈ କୂଳେ ପହଞ୍ଚିଲି । ନଈ ତୁଠରେ ଠିଆ ହୋଇ ଭାବୁଛି, କେମିତି ପାରି ହେବି ? କାରଣ "ପର ଗାଁ ନଈ, ନିଜ ଗାଁ ମଶାଣି"ର ଭୟ ମନରେ ପିଲାବେଳୁ ଅଛି । ଏଇ ସମୟରେ ଜଣେ ଆଦିବାସୀ ମାଇଚ଼ିଆ ଯୁବକ ମୋ ପାଖକୁ ଆସି ଅନୁଗୋଳିଆ ବଙ୍କା ଭାଷାରେ ପଚାରିଲା- "କୁ'ଠିକୁ ଯିବରେ ପୋ".....(ପୁଅ) ମୁଁ କହିଲି "ଚଂପତ୍ତିମୁଣ୍ଡା ସ୍କୁଲ" । ସେ ଖୁସିରେ ହସି ହସି କହିଲେ- "ମୁଇଁ ସିଠିକେ ଯାଉଚି । ଆସ ମୋ ସଙ୍ଗେ" । ମୁଁ ବାକ୍ସ ମୁଣ୍ଡାଇ ତା' ପଛେ ପଛେ ଗଲି ଓ ନଈ ପାରି ହେବା ପରେ ତାଙ୍କୁ ତାଙ୍କ ନାଁ, ଗାଁ ପଚାରିଲି । ସେ କହିଲା- "ମୋ ନାଁ ସୌରୀ । ମୁଇଁ ସିଠାନେ କାମ କରି ଯାଉଁଛେଁ" । ବାସ୍, ଭଗବାନଙ୍କୁ ମନେ ମନେ ଧନ୍ୟବାଦ ଦେଇ ତାଙ୍କ ପଛେ ପଛେ ଯାଇ ମୂଳ ରାସ୍ତାରୁ ଚଂପତ୍ତିମୁଣ୍ଡା ସ୍କୁଲକୁ ଥିବା ନାଲି ଗୋଡ଼ି ପକା ରାସ୍ତା ଧରିଲି । ରାସ୍ତାର ଦୁଇପଟେ ଜଂଗଲ । ତିତି, ବଣ କୁକୁଡ଼ାଙ୍କର ରାବ ଶୁଣି ଭୟ ଟିକେ ଲାଗୁଥାଏ । କିଛି ବାଟ ପରେ ସ୍କୁଲ ଭିତରେ ଦୁହେଁ ପହଞ୍ଚିଗଲୁ । ସେ ବିଚରା ମୋତେ ଚିତ୍ତଭାଇଙ୍କ ବସା ପାଖକୁ ନେଇ ଛାଡ଼ିଦେଇ ତାଙ୍କ କାମରେ ଚାଲିଗଲେ । ପରେ ସେ ମୋର ପରମ ବନ୍ଧୁ

ପାଲଟିଗଲେ । ଆଶ୍ଚର୍ଯ୍ୟର କଥା, ବହୁ ବର୍ଷ ପରେ ମୁଁ ପୁରୀ କଲେଜରେ ଅଧ୍ୟାପନା କରୁଥିବା ବେଳେ ଆମର ସେଇ ଜୀବନ ବିଦ୍ୟାଳୟର ପ୍ରାକ୍ତନ ଛାତ୍ରମାନଙ୍କର ଏକ ଗେଟ୍‌-ଟୁଗେଦେର୍‌ରେ ଯୋଗଦେବାକୁ ଚଂପଉିମୁଣ୍ଡା ଗଲାବେଳେ ଠିକ୍ ସେଇ ମାତିଲିଆ ନଇ ତୁଠରେ ଠିକ୍ ସେଇଠି (ଯେଉଁଠି ମୋର ପ୍ରଥମେ ସୌରୀଭାଇ ସହ ସାକ୍ଷାତ ହୋଇଥିଲା) ପୁଣି ସେଦିନ ବି ସୌରୀଭାଇଙ୍କୁ ଦେଖି କୁଣ୍ଢେଇ ପକାଇଲି । ସେ ଦୋ' ଦୋ ଚିହ୍ନା ହୋଇ "ହେ, ତୁଇ ଚୈତନ୍ୟଭାଇ କାଁ" ବୋଲି କହି ମୋତେ ବହୁତ ସ୍ନେହ କରିଲେ । ସେତେବେଳକୁ ସେ ଚଂପଉିମୁଣ୍ଡା ପରିତ୍ୟାଗ କରି ଅନ୍ୟତ୍ର କାମ କରି ରୋଜଗାର କରୁଥାଆନ୍ତି । ସେ ମଧ୍ୟ ସେଦିନ ଚିତ୍ତଭାଇ ଥିବାବେଳର ଚଂପଉିମୁଣ୍ଡା କଥା ମନେ ପକାଇ ବହୁତ ସନ୍ତାପି ହେଲେ । ମୋତେ ବି ଦୁଃଖ ଲାଗିଥିଲା । ଚଂପଉିମୁଣ୍ଡାର ଜୀବନଶୈଳୀ ଆମକୁ ଏଇମିତି ଅତୁଟ ଆତ୍ମୀୟ ଡ଼ୋରୀରେ ଚିରକାଳ ବାନ୍ଧି ରହିଥିଲା, ଏବେ ବି ରଖିଛି ।

ଏବେ ବି ନାନା ଅବସରରେ ସୌରୀଭାଇଙ୍କ ମାଇଚିଆ ଥଟ୍ଟା ମଜା ମନେ ପଡ଼ିଲେ ଖୁସି ଲାଗୁଛି । ଜୀବନ ବିଦ୍ୟାଳୟରେ ପ୍ରଥମେ ଚିତ୍ତଭାଇଙ୍କୁ ପ୍ରଣାମ କରିବାରୁ ସେ ମୋତେ ମୋ ଉପର ସୋପାନର କେଶବ ଭାଇ (କୋରାପୁଟର ଶ୍ରୀଯୁକ୍ତ କେଶବ ଚନ୍ଦ୍ର ଗମାଙ୍ଗ)ଙ୍କ ସହ ପାଞ୍ଚ ବଖୁରିଆ ଛାତ୍ରାବାସର ଏକ ନିର୍ଦ୍ଦିଷ୍ଟ ରୁମ୍‌କୁ ଯିବାପାଇଁ କହିଲେ । କେଶବଭାଇ ମୋତେ ସେଠାରେ ପହଞ୍ଚାଇ ସେଇଠି ବାକ୍ସ ରଖିବାକୁ କହିଲେ ଓ କୂଅରୁ ପାଣି କାଢ଼ି ମୁଁ ଗାଧୋଇ ଆସିବାକୁ ମୋତେ ନିର୍ଦ୍ଦେଶ ଦେଲେ । ମୁଁ ତାହାହିଁ କରି ସାରି ଆସିବା ପରେ ସେ ମୋତେ ମେସ୍ ପାଖକୁ ନେଇ ମୋ ଜଳଖିଆର ବନ୍ଦୋବସ୍ତ କରିଦେଲେ । ମୁଁ ଜଳଖିଆ ଖାଇ ସାରି ଦେଖିଲି, ସେଠିକାର ପ୍ରତ୍ୟେକ ଅନ୍ତେବାସୀ ଖୁବ୍ ଖୁସୀରେ ନିଜ ନିଜ କାର୍ଯ୍ୟରେ ବ୍ୟସ୍ତ । ମେସ୍ ପାଖରେ ଠିଆହୋଇ ଏଣ୍ଡୁରୀ ପିଠାର ବାସ୍ନା ସହ ସମସ୍ତଙ୍କର ଆନନ୍ଦ ମଧୁର କାର୍ଯ୍ୟକଳାପ ମୋତେ, ସେଦିନ ଯେ ଗହ୍ମା ପୁନେଇଁ, ତାହା ଚେତାଇ ଦେଲା । ମୁଁ କେଶବଭାଇଙ୍କୁ ପଚାରିଲି- "ଆଜ୍ଞା, ଏଠି କ'ଣ ପୁନିଅଁ ପରବରେ ପିଠାପଣା ହୁଏ ?" ସେ ଖୁବ୍ ଖୁସିରେ କହିଲେ- "ଆଜି ପରା ଗହ୍ମାପୂର୍ଣ୍ଣମୀ । ସେଥିପାଇଁ ମେସ୍‌ରେ ଖିରୀପିଠାର ଭୋଜି । ଆମର ଏଠି ଗଣେଶ ପୂଜା, ସରସ୍ୱତୀ ପୂଜା, ବିଦ୍ୟାଳୟର ଜନ୍ମଦିନ, ଉତ୍କଳ ଦିବସ, ସ୍ୱାଧୀନତା ଦିବସ, ଦୀପାବଳୀ, ଜନ୍ମାଷ୍ଟମୀ, କାର୍ତ୍ତିକ ପୂର୍ଣ୍ଣିମା ତଥା ପ୍ରଥମାଷ୍ଟମୀ ଇତ୍ୟାଦି ପର୍ବ ପର୍ବାଣି ବେଶ୍ ଭୋଜି ଭାତରେ ଭରପୁର ପାଳନ ହୁଏ । ଏକଥା ଶୁଣି ଖୁବ୍ ଖୁସି ଲାଗିଥିଲା । ଘର ପରିବାର, ଗାଁ ସାଙ୍ଗସାଥି ଛାଡ଼ି ଆସିଥିବା ଯୋଗୁଁ ମନ ଭିତରେ ଯେଉଁ ଦୁଃଖ ଓ ହତାଶ ଭାବ ମୋତେ ଦ୍ୱିଧାଗ୍ରସ୍ତ କରୁଥିଲା, ସେ ସବୁ ଯେମିତି ଆପେ ଆପେ ମନରୁ ଉଭେଇ ଗଲା ।

ସେଠି ମୋ ନାମ ଲେଖା ପରେ ପରେ ପଢ଼ାପଢ଼ି ମଧ୍ୟ ଆରମ୍ଭ ହୋଇଗଲା । ଏକ ସମ୍ପୂର୍ଣ୍ଣ ଅଲଗା ଓ ମନମତାଣିଆଁ ପରିବେଶ । ଖୁସି ହୋଇ ଜ୍ଞାନାର୍ଜନର ଦିଶା ଆମ ସମସ୍ତଙ୍କୁ ଏ ସ୍ଥାନ ଯୋଗାଇ ଦେଲା । ଗାଁରେ ଆଗେ ଯେମିତି ନିର୍ଦ୍ଧାରିତ ବହି ଘୋଷା ପାଠ ପାଇଁ ଗୁରୁଜୀମାନେ ଆମକୁ ମଣ କରୁଥିଲେ, ଏଠି ସେମିତି ପାଠ ପଢ଼ା ହୁଏ ନାହିଁ । ପାଠ୍ୟ ଖସଡ଼ାର ଶ୍ରେଣୀ (class)ପାଠ ସହ ଏ ଜଂଗଲ ସ୍କୁଲରେ ଦେଶ ବିଦେଶର ନାନା ଜ୍ଞାତବ୍ୟ କଥା ସବୁ ଜାଣିବା ପାଇଁ ଏଠି ଶିକ୍ଷକମାନଙ୍କର ପ୍ରୋତ୍ସାହନ ଓ ଦିଗ୍‌ଦର୍ଶନ ଆମ ଲାଗି ନୂଆ ନୂଆ ଜ୍ଞାନାଲୋକର ଦିଶା ଖୋଲି ଦେଲା ପରି ଲାଗିଲା । ସେଥିପାଇଁ ଏଠିକା ପାଠାଗାର ଆମ ପାଇଁ ମା' ସରସ୍ୱତୀଙ୍କ ଜ୍ଞାନାଗାର ସଦୃଶ ଆହ୍ୱାନ ଦେଇ ଟାଣି ନେଲା ପରି ଲାଗିଲା । ଏଠି ପ୍ରଧାନ ଶିକ୍ଷକ ଚିତ୍ତଭାଇଙ୍କର ସହୃଦୟ ବିଚାର ଓ ବିଦ୍ୟାଳୟର ସବୁ ପିଲାଙ୍କ ପ୍ରତି ତାଙ୍କର ତୀକ୍ଷ୍ଣ ଦୃଷ୍ଟି ସହ ସ୍ୱତନ୍ତ୍ର ପାଠ ପଢ଼ାଇବାର ଅନନ୍ୟ ଶୈଳୀ ଆମ ସମସ୍ତଙ୍କୁ ସଦା ସର୍ବଦା ଏକ ନୂଆ ଜୀବନାଭିମୁଖୀ ଆହ୍ଲାଦିତ ଆଲୋକ ବର୍ଷା ପରି ଲାଗିଲା ।

ଆମ ସମୟରେ ସାହିତ୍ୟ, ଇଂରାଜୀ, ହିନ୍ଦି, ସଂସ୍କୃତ, ଗଣିତ, ବିଜ୍ଞାନ ପଢ଼ାଇବା ପାଇଁ ପ୍ରାୟ ୫/୬ ଜଣ ଶିକ୍ଷକ ଥିଲେ । ହେଲେ ସମସ୍ତଙ୍କ ଭିତରେ ଯେମିତି ଚିତ୍ତଭାଇ ହିଁ ଆମ ପାଇଁ ସବୁକିଛି ବୋଲି ଆମେ ଅନୁଭବ କରୁଥିଲୁ । ଏବେ ମଧ୍ୟ ମୋର ମନେ ହେଉଛି, ଯଦି ଚିତ୍ତଭାଇ ମୋ କଲେଜ ଜୀବନରେ ମୋତେ ପାଠ ପଢ଼ାଇ ଥାଆନ୍ତେ, ତେବେ ହୁଏତ ଆହୁରି ବହୁତ କିଛି ଜାଣି ପାରିଥାଆନ୍ତି । ଏ ବୟସରେ ମଧ୍ୟ ତାଙ୍କ ସହ ଅକାଳେ ସକାଳେ ଗପସପ କରିବାର ସମୟ ଭିତରେ ମୋର ବୁଢ଼ା ହୋଇଯାଉଥିବା ମନ ପୁଣି କଅଁଳି ଉଠେ, ନୂଆ ଅନୁଭୂତି, ନୂଆ ଚେତନାଭିମୁଖୀ ଜ୍ଞାନାହରଣ ପାଇଁ ।

ଜୀବନ ବିଦ୍ୟାଳୟରେ ଛାତ୍ରର ଅମଣିଆଁ ମନ୍‌କୁ ମଣ କରିବାର ଅଭିନବ ତରିକା କେବଳ ଚିତ୍ତଭାଇଙ୍କ ବ୍ୟତୀତ ଆମ ଦେଶକୁ ଆଉ କିଏ ଜାଣିଥିବାର ଦୃଷ୍ଟାନ୍ତ ମୋର ମନେ ହେଉନାହିଁ । ସ୍ୱତନ୍ତ୍ର ଏକ ପୂର୍ଣ୍ଣାଙ୍ଗ ଜୀବନର ପୂର୍ଣ୍ଣ ଆଭାସ ତାଙ୍କର ନିରଳସ, ନିରହଂକାର ଆତ୍ମୀୟତାଭରା ବ୍ୟବହାର ଚାଲିଚଳନରେ ଆମ ସମସ୍ତଙ୍କ ଲାଗି ଉନ୍ମୋଚିତ ହୋଇଗଲା ପରି ଲାଗେ । ଆଜିକାଲି ଅବଶ୍ୟ ସେ ଅଶୀତିପର ବୟସରେ ଟିକେ ଚିଡ଼ି ଚିଡ଼ା ହୋଇ ଆସିଲେଣି । କିନ୍ତୁ ତଥାପି ନୂତନ ନୂତନ ଜ୍ଞାନ ପ୍ରଦାୟକ ଆଭା ତାଙ୍କ ବକ୍ତବ୍ୟରୁ ସୁସ୍ପଷ୍ଟ ହୋଇଉଠୁଛି । ଜୀବନ ବିଦ୍ୟାଳୟରେ ସେ ଯେମିତି ଆମକୁ କେଉଁ ଅଦୃଶ୍ୟ ନିହାଣ ମୁଗୁର ଧରି ଦେଶର ସୁନାଗରୀକ କରି ଗଢ଼ି ତୋଳିବାର ଆମ ଅଗୋଚରରେ ତାଙ୍କ ପ୍ରୟାସ ଜାରି ରଖିଥିଲେ, ତାହା ଆମେ ବେଶ୍

ଅନୁଭବ କରି ପାରୁଥିଲୁ । ଉତ୍ସାହପ୍ରଦ ସତ୍‌ଶିକ୍ଷା ଛାତ୍ରମାନଙ୍କୁ ଦେଇ ସେମାନଙ୍କ ଦ୍ୱାରା ଆମ ସ୍ୱାଧୀନୋତ୍ତର ଦେଶର ବହୁ ସୁପରିବର୍ତ୍ତନ ଆଣିବାର ସ୍ୱପ୍ନ ସେ ' ସେଦିନ ଦେଖି, ସେଥିପାଇଁ ଯେମିତି କାର୍ଯ୍ୟ କରି ଚାଲିଥିଲେ, ଆଜି ମଧ୍ୟ ତାଙ୍କର କଥା ଓ ଲେଖାଗୁଡ଼ିକରୁ ଆମେ ତାହା ଅନୁଭବ କରି ପାରୁଛୁ ।

ଜୀବନ ବିଦ୍ୟାଳୟରେ ନାନା ଅଭାବ ଥିଲା । ମାତ୍ର ତାଙ୍କର ଅନନ୍ୟ ଆତ୍ମୀୟତା ପୂର୍ଣ୍ଣ, ଜ୍ଞାନାର୍ଜନ ପାଇଁ ପ୍ରୋତ୍ସାହନ, ଆମକୁ ସେ ଅଭାବ ବୋଧରୁ ବହୁ ଦୂରରେ ରଖି ଆସିଥିଲା ବୋଲି ମୁଁ ଦୃଢ଼ତାର ସହ କହିବାକୁ ପଛାଇବି ନାହିଁ । ଅବଶ୍ୟ ନାନା ଅବାଞ୍ଛିତ କାରଣରୁ ଆଜି ଜୀବନ ବିଦ୍ୟାଳୟ, ଆଉ ଜୀବନ ବିଦ୍ୟାଳୟ ହୋଇ ନ ଥାଇ ପାରେ । ମାତ୍ର ତା 'ର ମାଟି ପାଣି ପବନରେ ଏବେ ମଧ୍ୟ ଯିଏ ପ୍ରବେଶ କରିବ, ସେ ନିଶ୍ଚିତ ଭାବେ ଅନୁଭବ କରିବ ଯେ- ସେଦିନର ଜୀବନ ବିଦ୍ୟାଳୟର ଜୀବନଧର୍ମୀ ଆବହାଓ୍ୱା ଆଜି ମଧ୍ୟ ଆମମାନଙ୍କ ପାଇଁ ଓ ଆମ ଦେଶପାଇଁ ନିହାତି ଜରୁରୀ ହୋଇ ପଡ଼ିଛି । ସେଇ ସବୁ ଦିନାମାନଙ୍କର ଦୈନନ୍ଦିନ ଅନୁଭୂତି ଆମ ସମସ୍ତଙ୍କ ପାଇଁ ନୂଆ ଜୀବନର ଏକ ଉଜ୍ଜ୍ୱଳ ଦିଶା ହୋଇ ଏବେ ବି ଆମକୁ ହାତଠାରି ଆହ୍ୱାନ କରୁଛି ।

ବର୍ଷ ମଝିରେ ଶିକ୍ଷମାନଙ୍କ ମଧ୍ୟରୁ କେହି ଯଦି ସରକାରୀ ଚାକିରି ପାଇ ବିଦ୍ୟାଳୟ ପରିତ୍ୟାଗ କରନ୍ତି, ତେବେ ଅନ୍ୟ ଶିକ୍ଷକ, ବିଶେଷ କରି ପ୍ରଧାନ ଶିକ୍ଷକ ଅବଲୀଳା କ୍ରମେ ଆମ୍ଭମାନଙ୍କୁ ତାଙ୍କ ପୂର୍ବ ସୂଚନା ଅନୁଯାୟୀ ଭୋର ତିନିଟା ବେଳକୁ ଉଠାଇ ଦେବେ । ଶୀତ ଦିନେ ଘର ପାଖ ଖୋଲା ଆକାଶ ତଳେ ପୂର୍ବ ରାତିରୁ ବଡ଼ ବଡ଼ ଶୁଖିଲା ଗଛର ମୂଳ ତଡ଼ା ହୋଇ ନିଆଁ ଲଗା ଯାଇଥିବ ଓ ତା 'ର ଚାରିପାଖରେ ଚିତ୍ତଭାଇ ସମେତ ଆମେ ସମସ୍ତେ ବେଢ଼ି ବସିବୁ ଓ ଚିତ୍ତଭାଇ ଆମକୁ ପାଠ ପଢ଼ାଇବେ । ସେତେବେଳେ ମୋର ନବମ ସୋପାନରେ ଆମକୁ ଭାରତୀୟ ଦର୍ଶନର ମୂଳପିଣ୍ଡ, ଉପନିଷଦକୁ ଚିତ୍ତଭାଇ, ସେଇ ଭୋର କ୍ଲାସରେ ପଢ଼ାଉଥିଲେ । ମୁଖ୍ୟ ତେରଟି ଯାକ ଉପନିଷଦ ସେ ଆମକୁ ପଢ଼ାଇଛନ୍ତି । କଠୋପନିଷେଦ ପଢ଼ା ଯାଉଥିବା ବେଳେ ଚିତ୍ତଭାଇଙ୍କର ତହିଁର ଓଡ଼ିଆ ବ୍ୟାଖ୍ୟା ଏବେବି ମୋର ମନେ ରହିଛି । ସବୁଠାରୁ ମଜାର କଥା, ସେଇ ବ୍ୟାଖ୍ୟାକୁ ମୁଁ ମୋର ଅନର୍ସ ଛାତ୍ରଛାତ୍ରୀଙ୍କୁ ଇଂରାଜୀରେ ନୋଟ୍ ଭାବେ ଦେଇ ଛାତ୍ରମାନଙ୍କର ତହିଁରେ ପରୀକ୍ଷାରୁ ଭଲ ମାର୍କ ରଖିଥିବାର ଦୃଷ୍ଟାନ୍ତ ମୋତେ ଆନନ୍ଦିତ କରିଛି ଓ ମୋର ଛାତ୍ରଛାତ୍ରୀଙ୍କୁ ଏହା ଚିତ୍ତଭାଇଙ୍କର ଅବଦାନ ବୋଲି କହିଲା ବେଳେ ସେମାନେ ଚିତ୍ତଭାଇଙ୍କର ପ୍ରଶଂସାରେ ଶତମୁଖ ହୋଇ ଉଠିଛନ୍ତି । ମୁଁ ଅଧ୍ୟାପନା କରିଥିବା କେତେକ କଲେଜର ଅନର୍ସ

ଶ୍ରେଣୀର ଛାତ୍ରମାନେ ତାଙ୍କ ବାର୍ଷିକ ଉତ୍ସବରେ ଚିତ୍ତଭାଇଙ୍କଠାରୁ କିଛି ଜ୍ଞାନାହରଣ ପାଇଁ ତାଙ୍କୁ ବକ୍ତା ଭାବେ ନିମନ୍ତ୍ରଣ କରି କୃତକୃତ୍ୟ ହୋଇଛନ୍ତି । ଏପରି ବହୁ ଅନୁଭୂତି ଜୀବନ ବିଦ୍ୟାଳୟର ଏବେ ବି ଆମ୍ଭମାନଙ୍କୁ ସ୍ମରଣ ମାତ୍ରେ ଚମତ୍କୃତ କରି ଦେଉଛି । ଜୀବନ ବିଦ୍ୟାଳୟ ଓ ଚିତ୍ତଭାଇ, ଶରୀର ଓ ଆତ୍ମା ଭଳି ଆମ୍ଭମାନଙ୍କୁ ସେତେବେଳେ ପ୍ରତୀୟମାନ ହେଉଥିଲେ। ଆଜି ଯଦି ସେହିପରି ଶିକ୍ଷା ଓ ଶିକ୍ଷାୟତନମାନ ଚିତ୍ତଭାଇଙ୍କ ସଦୃଶ ଜ୍ଞାନୀ ଓ ଉତ୍ସର୍ଗୀକୃତ ଶିକ୍ଷକ ମଣ୍ଡଳୀମାନଙ୍କୁ ନେଇ ପୁନର୍ବାର ଆମ ରାଜ୍ୟରେ ୮/୧୦ଟି (ବ୍ୟୟ ବହୁଳ ହେଲେ ମଧ୍ୟ) କାର୍ଯ୍ୟ କରି ଯାଆନ୍ତା, ଆମ ଦେଶ ଓ ଜାତିର ନବ ଉନ୍ମେଷ ହୋଇପାରନ୍ତା ବୋଲି ମୁଁ ଆଜି ଦୃଢ଼ ଭାବେ କହି ପାରିବି । ଆଜିର ଶିକ୍ଷା କେବଳ ଥିଲାବାଲା ମାନଙ୍କ ପାଇଁ ଉନ୍ମୁକ୍ତ । ନ ଥିଲା ବାଲା, ଗାଁ ଗହଳି, ବଣ ଜଂଗଲର ପିଲାମାନଙ୍କ ପାଇଁ ତାହା ଦୁଷ୍ପ୍ରାପ୍ୟ ହୋଇଯାଉଛି । ଆଜିର ଶିକ୍ଷା ରାଜନୀତି କରଣର ପ୍ରାଦୁର୍ଭାବ ଓ ବଡ଼ ବଡୁଆଙ୍କ ସ୍ୱାର୍ଥାନ୍ୱେଷୀ ଦୌରାତ୍ମ୍ୟର ଶୀକାର ହୋଇ ଏକ କିଂକର୍ତ୍ତବ୍ୟବିମୂଢ଼ାବସ୍ଥାରେ ଆମ ସାମାଜିକ, ସଂସ୍କୃତିକ ଧର୍ମିୟ ଦିଗ୍‌ଭ୍ରଷ୍ଟାବସ୍ଥାକୁ ଚାହିଁ ଚାହିଁ ବଞ୍ଚି ରହିଛି । ଏ ଅବସ୍ଥା ମୋତେ ବହୁ କଷ୍ଟ ଦେଉଛି । ଚିତ୍ତଭାଇଙ୍କ ପରି ଯୁଗଜନ୍ମା ସଦ୍‌ଗୁରୁ ଶିକ୍ଷକଙ୍କ ଜ୍ଞାନାଲୋକର ସମ୍ପ୍ରସାରଣ ହିଁ ଏ ରାତ୍ରୀର ଅନ୍ଧକାର ଦୂରେଇ ଦେଇ ପାରନ୍ତା । ମାତ୍ର ତହିଁର ପୁନରୁଥାନ ପାଇଁ ଦେଶରେ ଆସ୍ଥାନ କାହିଁ ?

•



ତତ୍କାଳୀନ ଛାତ୍ରମାନଙ୍କ ଦ୍ୱାରା ଅଙ୍କିତ କଳାକୃତି

# ଅନୁଭୂତିରୁ ଖିଅଟିଏ

**ଜିତେନ୍ଦ୍ର ନାୟକ**

ଏକ ଅର୍ଦ୍ଧଶତାବ୍ଦୀ ତଳର କଥା । ଗାଁ ସ୍କୁଲରେ (ମୌଳିକ ବିଦ୍ୟାଳୟ) ସିନିୟର ବେସିକ ପାସ୍ କରି ଚାଲିଲି ମୁଁ ପୋଷ୍ଟ ବେସିକ ସ୍କୁଲ ଚଂପଉିମୁଣ୍ଡାରେ ପଢ଼ିବାକୁ । ଏକ ନୂତନ ସ୍ୱାଦର ସ୍ୱାକ୍ଷର । ନୂଆ ଧରଣର ବିଦ୍ୟାଳୟ ଗାନ୍ଧିଜୀଙ୍କର ସେବାଶ୍ରମ ୱାର୍ଦ୍ଧାରେ ମଧ୍ୟ ତଦନୁରୂପ ବିଦ୍ୟାଳୟଟିଏ ଅଛି ।

ଜଣେ ମୋର ପୁରାତନ, ନସମ୍ୟ ଗୁରୁଜୀ ଶ୍ରୀ ବାସୁଦେବ ମିଶ୍ର ଅନୁଗୋଳର ବଣିଆ ବାହାଳ ଠାରେ ତାଙ୍କ ଘର । ତାଙ୍କରି ତତ୍ତ୍ୱାବଧାନରେ ଅନୁଗୋଳ ପହଞ୍ଚି ସେଠୁ ସମ୍ବଲପୁର ବସ୍ ଧରି ବଡ଼କେରାରେ ଓହ୍ଲାଇ ଏକ ଛୋଟ ଟିଣା ସୁଟ୍‌କେଶ ଓ ସତରଂଜିରେ ଗୋଡ଼ାଣିଆ ହୋଇଥିବା ବେଡ଼ିଂ ଧରି କେତେଟା ପିଲାଙ୍କ ଗହଣରେ ଚଂପଉିମୁଣ୍ଡା ବନ ବିଦ୍ୟାଳୟ ଯାହାକୁ ପୋଷ୍ଟ ବେସିକ ସ୍କୁଲ ବୋଲି କହି ଆମେ ବହୁତ ଗର୍ବ ଅନୁଭବ କରୁଥିଲୁ ସେଇଠି ପହଞ୍ଚିଲି । ଚାରିଆଡ଼କୁ ଅନାଇ ଗଲି । ଚାରିପଟେ ପାହାଡ଼ ଓ ପାଖକୁ ଲାଗି ଜଂଗଲ, ଶାଳ, ପଳାଶ ଚାର, କୁରୁଚି ଓ ଅନାବନା ଫୁଲ, ମହମହ ବାସ୍ନା, ଜଂଗଲ ମଧ୍ୟରେ ଠେକୁଆ ବଣ କୁକୁଡ଼ା ଗୋଟାଏ ଗୋଟାଏ କୁଟୁରା କେତେବେଳେ ଦେଖା ଦିଅନ୍ତି ସାପ ଗୁଡ଼ାଏ ଅଛନ୍ତି ସତ ହେଲେ ବହୁତ ଶାନ୍ତ, ଛୋଟ ଝରଣାରେ ପାଣି ପିଇ ଆରାମରେ ପଥର ଚଟାଣରେ ପେଟ ଦେଖାଇ ଶୋଇଲା ବେଳେ ଏଇ ବନ ବିଦ୍ୟାଳୟ ପିଲାଙ୍କ ହାତ, ପଥର ଅବା ଭାଙ୍ଗରେ ମରନ୍ତି । ଏ, କି ସ୍କୁଲରେ ବାବା, ୬/୭ଟା ଖପର ଆଜବେସଟାସ ଲମ୍ବା ଲମ୍ବା ଘର । ଏଠି ଗୋଟାଏ ତ ସେଠି ଗୋଟାଏ । ସବୁ ଦୂରକୁ ଦୂରକୁ । ମଝିରେ ବିସ୍ତୀର୍ଣ୍ଣ ପଡ଼ିଆ ହେଲେ କ'ଣ ହେବ ଫଟା ପଡ଼ିଆ, କଙ୍କଡ଼ା ବିଛାଙ୍କର ଆବାସସ୍ଥଳୀ, ପୁଣି ଗୋଟାଏ ଚଲା ରାସ୍ତା ଅଛି ପାଖ ଗାଁ ତୁରଂଗକୁ । ଗୋଟିଏ କୂଅ ଅଛି ଖରାଦିନେ ପାଣି ନ ଥାଏ କେବଳ ଗୋଟାଏ ବୃହତ୍ ଶିବଲିଂଗ ଭଳି ଏକ ପଥରଟିଏ କୂଅ ଭିତରେ ମୁଣ୍ଡ ଦେଖାଇ ରହିଥାଏ । ପ୍ରତିଯୋଗୀ ହୋଇ ଲୁଚି ଲୁଚି ପାଠ ପଢ଼ିବା ପାଇଁ ହେଲେ ଆମେ ସବୁ କେତେ ଜଣ ସେଇ କୂଅ ଭିତରକୁ ଓହ୍ଲାଇ ଯାଇ ପଥର ଉପରେ ବସି ସଂସ୍କୃତ ଶବ୍ଦରୂପ ଧାତୁରୂପ ଘୋଷୁ । ଚାରିଆଡ଼େ ମେଲା । ଫାଟକ ବୋଲି କିଛି ନାହିଁ । ହେଲେ ଏ ଥିଲା ଟିକିଏ ପରବର୍ତ୍ତୀ

ଅନୁଭୂତି । ପ୍ରଥମ ଯେବେ ଆସି ପଦାର୍ପଣ କରେ ଚ଼ଂପତ୍ତି ମାଟିରେ ଜିନିଷପତ୍ର ପ୍ରଥମ ଘାମ୍ନା କରିଥିବା ଘର ବାରଣ୍ଡାରେ ରଖି ବାହାରି ପଡ଼ିଲି ଗୁରୁଜୀ ମାନଙ୍କୁ ମୁଣ୍ଡିଆ ମାରିବାକୁ । ପଞ୍ଚ ବଖରା, ଛ' ବଖରା, ଲାଇବ୍ରେରୀ, କନ୍ୟାଶ୍ରମ, ଶାନ୍ତି କୁଟୀର ଏହିପରି ନାମ ସବୁ ଘର ଗୁଡ଼ାକର । ପଞ୍ଚ ବଖରା ପଛପଟେ ଜଣେ ପ୍ରଧାନ ଗୁରୁଜୀ ରହୁଥାନ୍ତି । ମୋର କେତେକ ସାଙ୍ଗ ମାନଙ୍କ ସହ ଗଲି । ଖଦଡ଼ ଧୋତିଟିଏ ପିନ୍ଧିଛନ୍ତି, ସେ ହାତ ଖଣ୍ଡିଆ ଗଂଜିଟିଏ ଓ ଏକ ଖଦଡ଼ ଗାମୁଛା ପକାଇ ବାମ ଗୋଡ଼ ଉପରେ ଡ଼ାହାଣ ଗୋଡ଼କୁ ମୋଡ଼ି (ଯେପରି ପୂର୍ବ କାଳରେ ଅପେରାରେ ଆଗ ଝିଅ ପିଲାଗୁଡ଼ାକ ଆସି ନମଃ ନମୋଃ ବୀଣାପାଣି ଗୀତ ଗାଇ ବସୁଥିଲେ) ବସୁଥାନ୍ତି । ପ୍ରଣାମ କଲି । ସମସ୍ତେ କହୁଥାନ୍ତି ଇଏ ହେଉଛନ୍ତି ଚ଼ିତ୍ତଭାଇ ପ୍ରଧାନ ଗୁରୁଜୀ ଡ଼େନମାର୍କରୁ ପାଠ ପଢ଼ି ଆସିଛନ୍ତି । ବହୁତ ଜ୍ଞାନୀ । ହେଲେ କିଛି ସାର୍ଟିଫିକେଟ ତାଙ୍କର ନାହିଁ । ସବୁତକ ସେ ଚ଼ିରି ନଷ୍ଟ କରି ଦେଇଛନ୍ତି । ସେଇଠୁ ମୁଁ ଜାଣିଲି, ତାଙ୍କ ଜୀବନ ଏକ ଇତିହାସ, ଭୂଗୋଳ, ଦର୍ଶନ ସାହିତ୍ୟର ସମାହାର । ସେ ସେଇଠି ବସିଛନ୍ତି ଏକ ବିଦ୍ୟାଳୟର ସ୍ୱପ୍ନ ନେଇ, ସତ୍ୟବାଦୀ ଛୁରୀଅନା ବକୁଳବନର ବନ ବିଦ୍ୟାଳୟ ।

ମୁଣ୍ଡ ଟେକି ଉପରକୁ ଚ଼ାହିଁଲା ମାତ୍ରେ କହିଲେ ଚ଼ିତ୍ତଭାଇ, କି ଜିତ, ଆସିଗଲ ରୂପ୍ଷାରୁ । ହଉ ଭଲ ହେଲା । ପାଞ୍ଚ ବଖରାରେ ରହିଲି । ନବମ ସୋପାନ ପିଲା । ଛୋଟ ପିଲା ମଧ୍ୟରେ ପହଲି, କିଶୋର, ତପୀ ଓ ମୁଁ । ଆଉ ତା'ଠୁ ଟିକିଏ ବଡ଼ ଚୁଙ୍ଗି ଗୋଲକ, ବଡ଼ ଗୋଲକ, ବଡ଼ ଗୋଲକ, ଚ଼ୈତନ୍ୟ (ଯାହାକୁ ପରବର୍ତ୍ତୀ ସମୟରେ ମୁଁ କେକେ ବୋଲି ଡ଼ାକିଲି) ଓ ଝିଅମାନଙ୍କ ମଧ୍ୟରେ କୁନ୍ତଳା, ଗୁରୁବାରୀ ଓ ଲକ୍ଷ୍ମୀ ଏହିପରି ଅନ୍ୟମାନେ ।

ସକାଳ ଠୁଁ ଘଣ୍ଟି ବାଜିଉଠେ । ଏକ ଲୁହାଦଣ୍ଡ ମଝିରେ ଆୟତ୍ତାକାର ଫମ୍ପା ମଧ୍ୟରେ ଲୁହାଦଣ୍ଡରେ ଡ଼ିଂଗ ଡ଼ିଂଗ ଆବାଜ, ସବୁ ଅନ୍ତେବାସୀ ଚ଼ଳ ଚ଼ଂଚ଼ଳ କର୍ମାଭିମୁଖୀ, ବିରୁଡ଼ି ବସାକୁ ଟେକା ଫୋପାଡ଼ିଲେ ଯେପରି ପୋକ ଗୁଡ଼ାକ ଏଣେ ତେଣେ ଉଡ଼ି ଯା'ନ୍ତି ମାତ୍ର ଏ ପୋକ ଗୁଡ଼ାକ ମାରଣା ନୁହନ୍ତି । ସଫେଇ କୃଷିକର୍ମ, ବାସନମଜା, ଗାଧୁଆ ପାଧୁଆ, ସମବେତ ଜଳଖିଆ, ମୁଢ଼ି ଗୁଡ଼ ମାଣ୍ଡିଆ ଜାଉ, ପଖାଳ ଆମ୍ୱୁଲ ଖେଚୁଡ଼ୀ ଅବା ନନ୍ ଫାଟ୍ ଡ୍ରାଏ ମିଲକ (ଲହୁଣୀ ସହିତ ସଂଯୁକ୍ତ ଆମେରିକା ସରକାରର ଗୁଣ୍ଡ ଦୁଧ) ତା'ପରେ ପାଠ ପଢ଼ାରମ୍ଭ । ଏ ବଖରା ସେ ବଖରା ଯେଉଁଠି ଗୁରୁଜୀମାନେ ବସି ପାଠ ପଢ଼ାନ୍ତି ମଝିରେ ଖାଇବା ବିଶ୍ରାମ ପୁଣି ସୂତାକଟା ତୁଳାଭିଣା, ଲୁଗାବୁଣା, ଫୁରସତ ପାଇଲେ ଫକୀର ଭାଇ ଦୋକାନରେ ମୁଢ଼ି ବାଦାମଖିଆ । ଏତେ ସବୁ କର୍ମ ସ୍ୱତଃ ହୋଇଥାଏ । ମୁଁ ନିଜକୁ ଏଠି ଭୁଲିଗଲି । ବାପା ମାଆ ଭାଇ ଭଉଣୀ

ସମସ୍ତଙ୍କୁ ଏଠି ଯିଏ ହେଲେ ବି ଭୁଲିଯିବ। ବୋଧହୁଏ ଏଠି କେଉଁ ଏକ ଅଦୃଶ୍ୟ ଇଂଗିତରେ ସବୁ ଠିକ୍ ଠାକ୍ ଭାବେ ହୋଇ ଚାଲିଛି। ଅଦୃଶ୍ୟ ନୁହେଁ ସେତ ସେଇ ଦୃଶ୍ୟମାନ ବ୍ୟକ୍ତି-ଚିତ୍ତଭାଇ। ସବୁଥିରେ ସିଏ ସାମିଲ। ଖାଲି ପାଦରେ ଏ ମୁଣ୍ଡ ସେ ମୁଣ୍ଡ ବିଦ୍ୟାଳୟ ପରିସରରେ କେଉଁଠି ଗାଣ୍ଡୁଆ କୋଡ଼ି କାଙ୍କ ଧରିଲେଣି ତ କେଉଁଠି ବାଉଁଶ ଦୋଳାରେ ମାଟି ନେଇ ରାସ୍ତା କାମ କଲେଣି। ପ୍ରାର୍ଥନା ସଭାରେ ବକ୍ତୃତା ଦେଲେଣି ତ କେତେ ବେଳେ ଲିଙ୍ଗୁଆ ଫୋନରେ ଆମକୁ ଇଂରେଜୀ ଉଚ୍ଚାରଣ ଶିଖାଇଲେଣି। ପୁଣି କେତେବେଳେ ଗୁଣୁ ଗୁଣୁ ହୋଇ ରବୀନ୍ଦ୍ର ଠାକୁରଙ୍କ ଗୀତ "ଆମାର ସାଧନା ମିଛିଲୋ ଆଶା ନା ପୁରିଲ, ସକଲି ଫିରାଏ ଯାଏ ମାଁ"। ଗାଇ ଗାଇ ଚାଲିଲେଣି।

ଲାଇବ୍ରେରୀ ହଲ୍‌ରେ ସମୂହ ସୋପାନ। ଦର୍ଶନ, ପୁରାଣ ଗୁଣୀମାନଙ୍କର ଆଦର୍ଶ, ଶିଳା ଓ ଶାଳଗ୍ରାମ, ନେପାଳ ପଥେ ଡ଼େନମାର୍କ ଚିଠି ସବୁ ଏଠି ପରିପୂର୍ଣ୍ଣ। ସେଇଟା ଆମର ଏକ ମନ୍ଦିର। ସେଇ ମନ୍ଦିରରେ ଚିତ୍ତଭାଇ ଆମର ଆରାଧ୍ୟ ଦେବତା ଘଣ୍ଟା ଘଣ୍ଟା ଧରି ଆଲୋଚନା ରତ। ସବୁ ପିଲାମାନେ ନିର୍ବାକ ଚାହିଁ ବସିଥାନ୍ତି ତାଙ୍କ ମୁହଁକୁ। କେହି ବୁଝୁ ଅବା ନ ବୁଝୁ। ବୁଝିଲା ଭଳି ସବୁ ଦିଶୁଥାନ୍ତି। ଟିକିଏ ଗୋଳମାଳ ହୋଇଗଲେ ସବୁ ବନ୍ଦ କରି ଦିଅନ୍ତି। ଏତେ ସ୍ୱାଭିମାନୀ କହିଲେ ନ ସରେ। ପ୍ରଚଣ୍ଡ ବ୍ୟକ୍ତିତ୍ୱରେ ପରିପୂର୍ଣ୍ଣ। ଦିନକର ଘଟଣା, ନଖରାମି କରି କେଉଁ ପିଲାଟିଏ (ଭାଇ ବୋଲି ସଂବୋଧନ କରୁ ସମସ୍ତଙ୍କୁ) କନ୍ୟାଶ୍ରମ କାନ୍ଥରେ ଏଣୁ ତେଣୁ ଗୁଡ଼ାଏ ଲେଖି ମାରି ଦେଇଥିଲା। ଚିତ୍ତଭାଇଙ୍କ ଦୃଷ୍ଟିକୁ ଆସିଲା ଏସବୁ। କିଏ ଏପରି କରିଛି କେହି ମାନିଲେ ନାହିଁ। ଆରମ୍ଭ ହେଲା ଅନଶନ ଚିତ୍ତଭାଇଙ୍କର। ଦୋଷୀ ଆପେ ଆପେ ବାହାରି ଆସିଲା। କ୍ଷମା ମାଗିଲା। ଦୋଷ ସ୍ୱୀକାର କଲା। ତା'ପରେ ଅଦିନିଆ ମେଘଟା ଛିଟିକି ହୋଇ କେଉଁଆଡ଼େ ଭାସିଗଲା ଓ ଆକାଶ ନିର୍ମଳ ଭଳି ସବୁ ଶାନ୍ତ ହୋଇଗଲା। ମନ ବୈଜ୍ଞାନିକ ଚିତ୍ତଭାଇ କମ୍ପ୍ୟୁଟରରେ ଫିଡ଼ିଂଗ ହେଲା ଭଳି ସବୁ ପିଲାଙ୍କ ସ୍ୱଭାବ ଚରିତ୍ର ତାଙ୍କ ଭିତରେ ଛାପି ଦେଇଥାନ୍ତି। ମଣିଷ ତିଆରି କାରଖାନାରେ ସେ ଏକ ଉତ୍ତମ ଯଂତ୍ରୀ। ପ୍ରତି ୩ ମାସରେ ଥରେ ରହଣୀଗୃହ ପରିବର୍ତ୍ତନ। ଇଲେକ୍ସନବାଲା ପୁଲିଂ ପାର୍ଟି ପରି ସବୁ ଜିନିଷ ପତ୍ର ଧରି ଏ ରୁମ୍, ସେ ରୁମ୍, ହୁଅନ୍ତି ପିଲା। କାନ୍ଥରେ ମରା ହୋଇଥାଏ ନାମ ଚିଠା ରାତିରୁ। କେହି ଦେଖି ନ ଥାନ୍ତି। ନୂଆ ନୂଆ ଜାଗାରେ ରହିବାର କି ଆନନ୍ଦ, ପରିବେଶ ନୂଆ, ପାଞ୍ଚ ବଖରାରୁ ତିନି ବଖରା କନ୍ୟାଶ୍ରମ, ଏହିପରି ପରିବର୍ତ୍ତନ। ଛୋଟ ଛୋଟ ପିଲାମାନଙ୍କୁ ମଧ୍ୟ କନ୍ୟାଶ୍ରମରେ ଗୋଟାଏ କଡ଼କୁ ରଖିଦିଆ ଯାଉଥିଲା। ପହଲି ଓ ମୁଁ ରହିଛୁ।

ଆରପଟେ ବୁଇନାନୀ (ସରୋଜିନୀ ଅପା) ମୀରା ଅପା, ସବୁ ସମ୍ବଲପୁରରୁ, କୁନ୍ତଳାପା ଆଳିରୁ ଗୁରୁବାରୀ, ଲକ୍ଷ୍ମୀ କୋରାପୁଟରୁ । କୁନ୍ତଳା, ଗୁରୁବାରୀ, ଲକ୍ଷ୍ମୀକୁ ଛାଡ଼ି ଦେଲେ ଅନ୍ୟ ସମସ୍ତେ ମୋ ଉପର ସୋପାନର ଅପା । ସବୁ ଗୋଟିଏ ବାପମା'ର ପୁଅଝିଅ ଭଳି । ରୋଗ ବ୍ୟାଧି ହେଲେ ଅପା ମାନଙ୍କର ସେବା, ବାପମା'ର ସେବାଠୁ ବଳି । ଅଫୁରନ୍ତ ସ୍ନେହ, ମମତା, ଛଳ ଛଳ ଆଖି ଢ଼ଳ ଢ଼ଳ ଲୁହ, କ'ଣ ହେଲା କିରେ ତୋର ? ଏବେ ଏ ସବୁ କେଉଁ ସ୍କୁଲ କଲେଜରେ ମିଳୁଛି ? ନା' ସେ ସବୁ ସେଇ ଚ଼ଂପଡିମୁଣ୍ଡାରେ ମିଳୁଥିଲା, କାରଣ ସିଏ ଥିଲା ଜୀବନ ବିଦ୍ୟାଳୟ । ପ୍ରତ୍ୟେକ ଜୀବନରେ ସେଇ ଗୁଣ ସବୁ ନ ଥିଲେ ସେ ଜୀବନ ଏକ ଗୋଶାଳାରେ ପରିଣତ ହୋଇଯାଏ । ଯେଉଁଠି ଖାଲି ଗୋବର ଖତରେ ପରିପୂର୍ଣ୍ଣ ।

ବସିଲାଠୁ, ହସିଲାଠୁ, ଖାଇଲା ପର୍ଯ୍ୟନ୍ତ ସେଇ ଚ଼ିତ୍ତଭାଇ ସବୁରି ଭାଗ୍ୟରେ ସୁଯୋଗ ଆସିଛି ପରି ଲାଗେ । ଚ଼ିତ୍ତଭାଇ ଖାଇ ବସିଲା ବେଳେ, ଜଣେ ଦୁଇଜଣ ଭାଇଙ୍କୁ ସଂଗରେ ଧରି ଖାଇ ବସିବେ । ଖାଇଲାବେଳେ ମଜା ମଜା କଥା, ନିଜ ବାସନ ନିଜେ ସଫା । ସେ ସୌଭାଗ୍ୟ ମଧ୍ୟ ମୋର ଜୁଟିଛି । ଦେଉଳରେ ଠାକୁରଙ୍କ ପାଖରେ ରହିଲେ କି ଆନନ୍ଦ କହିଲେ ! ପ୍ରଚ଼ଣ୍ଡ ପ୍ରତିଭାର ଅଧିକାରୀ । କେତେ ଶାନ୍ତ, ସୌମ୍ୟ, ସରଳ ସାଧାରଣ ଲୋକଟିଏ ଚ଼ିତ୍ତଭାଇ । ଏବେ ବି ମନେ ପଡ଼ିଲେ ମୁଁ କେତେ ଭାଗ୍ୟବାନ ମନେ କରେ ନିଜକୁ ।

ହଠାତ୍ ଦୀର୍ଘ ପାଞ୍ଚ ଦଶନ୍ଧି ପରେ ବାରିପଦାର ଏକ ସାରସ୍ୱତ-ବିପଣୀରେ ହଜାଇ ଦିଏ ନିଜକୁ । ଚ଼ିତ୍ତଭାଇଙ୍କର ସୃଜନୀର ଅପୂର୍ବ ଆଲେଖ୍ୟ, ଭ୍ରମଣ କାହାଣୀ, ପ୍ରବନ୍ଧ ସମାଲୋଚ଼ନା, ଜୀବନୀ ଅନୁବାଦ, କେତେ ସବୁ ପୁସ୍ତକ । ମନ କୁଣ୍ଢେ ମୋଟ ହୋଇଯାଏ । ମନେ ମନେ ଗାଇ ଯାଏ ଚ଼ିତ୍ତଭାଇ ଦୀର୍ଘଜୀବୀ ହୋ, ଜୟ ହୋ, ଜୟ ହୋ, ଜୟ ହୋ.....

ପୁରାତନ ଛାତ୍ର, ଚ଼ଂପଡିମୁଣ୍ଡା ବନ ବିଦ୍ୟାଳୟ
ସାଃ-ରଘୁନାଥପୁର, ବାରିପଦା, ମୟୁରଭଂଜ
ଫୋଃ-୦୬୬୭୯୨-୨୮୪୧୫

•

# ଆମ୍ବର ଜୀବନ ବିଦ୍ୟାଳୟ୍

## ଶଶିଭୂଷଣ ପାଣିଗ୍ରାହୀ

ଖୁଜ୍‌ବାର୍‌ଟା ଖାଲି ସାର୍ ଆଏ। ପାଏବାର୍‌ଟା ତୁମେର୍ ଫୁଲ୍। ଖାଲି ଝୁରିଁ ହେବାର୍ କଥା ସିନେ। ଆର୍ ସମ୍ଭିଆ ଗଲେ ନାଇଁନ। ଖୁଜ୍‌ବାର୍ ଲୋକ, ଝୁରିଁ ହେବାର୍ ଲୋକ୍ ଦୁନିଆଁଥୁଁ ଲୁକି ଲୁକି ଯାଇ ବସ୍‌ଲେନ। ହେଲେଁ ସେ ବେଲର୍ ଯେତ୍‌କିଟା ଭିଲ୍ ଜୀବନ ଜୀଇଁଛେ, ଏ ସେତ ଝୁରିଁ ହେବାହିଁ ହେବା। ଛାତି ଭିତର୍‌ଟା ହେତାତେ ହେତାତେ ହୁତ୍ ହୁତ୍ ହେଇଁ ଖର୍‌ଖରେଇ କରିଁ ଅଁଗରା ମିତାଲ ରଗ୍ ରଗେଇଁ ଯାଉଥିବା ସିନେ। ହେଲେଁ ଆର୍ ପାଏବାର୍‌ଟା ଆକାଶ କୟ୍ଁା ଆଏ। ଖାଲି ଗୁତୁରିଁ ହେବାର୍‌ଟା ସାର୍। ହେତାଲେଁ ଏଦେ କାଏଲ୍ ମିତାଲ୍ ଲାଗୁଛେ। ସେ ପରିବେଶ୍‌ଟା ଆଖିର୍ ଆଗେଁ ଝଲ୍‌ସି ଯାଉଛେ। ଏତେ ଆଶା, ଏତେ ତପସ୍ୟା, ଏତେ ଆକାଂକ୍ଷା ସବୁ ଧାଏକେଁ ସରି ଗଲା କେନ୍‌ତା କରି ? ଜୀବନ ବିଦ୍ୟାଳୟ୍ ସତ୍‌କେ ସତ୍ ସବୁ ଦିନର୍ ଲାଗିଁ ଶୂଇନ୍ ହେଇଁ ଗଲା। ନିଷ୍ଠା, ଆତ୍ମନିବେଶ, ପରୀକ୍ଷା ପ୍ରୟୋଗ ସବୁ ପ୍ରତାରିତ୍ ହେଲା। ପାରମ୍ପରିକତା, ଗତାନୁଗତିକତା, ଛଦ୍ମ ଆନ୍ତରିକତା, ଦାମ୍ଭିକତା, ଆତ୍ମବଡ଼ିମା ସମ୍ପନ୍ନ ଅସହିଷ୍ଣୁତା ଇ ସଭେ ମିଶି କରିଁ ଜୀବନ ଜୀଇଁବାର୍ ବାଟ ବନାବାର୍ ପ୍ରୟୋଗ ଟାକେ ଖିନ୍ନଭିନ୍ନ କରିନେଲେ। ଜନମ୍ ଦେଲା ଲୁକେ ଗୁଟେ ଗୁଟେ ହେଇଁ ଛଡ଼େଇଁ ହେଲେ। ଇରାଏକର୍ ଶିକ୍ଷାବିଭାଗର ଷଁଢ଼ ହୁଁକ୍‌ରାତେଲ୍ ତାର୍ ଜିଦ୍‌ଥିଁ ଇନ୍‌ତା ଗୁଟେ ମୁନୁଷ ଆପେଁ ଆପେଁ ଗଢ଼ିହେବାର୍ ପ୍ରୟୋଗାତ୍ମକ ଶିକ୍ଷାନୁଷ୍ଠାନ୍‌କେ ଧୁରକୁଟା କରିଁ ମାଡ଼ି ମକଚି ମାଟିଥିଁ ମିଶେଇ ନେଲା। କାଏଁ ସୁଖ୍ ଶାନ୍ତିଟେ ପାଏଲା କିଏ ଜାନେ ? ସେତେବେଲର୍ ବଡ୍ ବଡ଼ିଆ ମାନେ ଦେଖନ୍ ହାରୀ ସାଜ୍‌ଲେ, କେତେ ବଦ୍‌ଲାଭାବ୍ ସାଫୁଲ୍ ହେଲା ବାଗିର୍ ଆଖ୍‌ଡା କଲେ।

ହଁ, ସେ ଜୀବନ ବିଦ୍ୟାଳୟ୍ - ଚ଼ଂପତ୍ତିମୁଣ୍ଡା ଉତ୍ତର ମୌଳିକ ବିଦ୍ୟାଳୟ୍ କହ କି ଚ଼ଂପତ୍ତିମୁଣ୍ଡା ପୋଷ୍ଟ ବେସିକ୍ ସ୍କୁଲ କହ, ତା'ର କଥା ହେତେଇ କରି ମନ୍ ଭିତ୍‌ରର୍ ଅସମ୍ଭାଲ୍ ଅସନ୍ତୋଷର କଥା କହୁଛେଁ। ପଛେଁ ତା'ର ନାଆଁ ବାଜିରାଉତ୍ ଜୀବନ୍ ବିଦ୍ୟାଳୟ୍ ରଖ୍‌ଲେ ସିନେ, ସେତେବେଲ୍‌କେ ସେ ନ ସେ ଆଗର ପ୍ରୟୋଗ ନାଇଁ ଥାଇଁ, ଉପର୍ ଆଦେଶ ଅନୁସାରେଁ ଗତାନୁଗତିକତାର ପଥିକ୍ ମିତାଲ ଅନ୍ଧାନୁସରନ୍ କରି

କରି ସବୁ ଫସର୍ ଫାଟି ସାରିଥିଲା ବଏଲେଁ ଚ଼ଲେ। ଖାଲି ଗୁଟେ ଧାସେଁ ତାହାକେ କେନ୍‌ମାନ୍‌କର୍ ଆଦେଶ୍ କି ନିର୍ଦ୍ଦେଶ୍ ମୁତାବକ୍ ଚ଼ଲାବାର୍ ଚ଼େରେଷ୍ଟା ସନିଠେ କରାଗଲା, ହେଲେଁ ସେ ଆଘ୍ଲାର୍ ଶିକ୍ଷାର୍ ପ୍ରୟୋଗ ସଁମ୍ଭିଆର୍ ମୁହେଁ ପାନିର୍ ମାଡ଼େ ଘାଇ ଭୁସ୍‌ଲାଲା ମିତାଲ୍ ଭୁସ୍‌ଲିଁ ଭୁସ୍‌ଲିଁ ଖାଲି ଚ଼ିହ୍ନାଟେ ବାଗିର ରହିଗଲା। ଶାସନ କ୍ଷମତାର ଉଦାସିନତା, ଅସହିଷ୍ଣୁତା ଆର୍ ଉଦ୍ୟୋକ୍ତାମାନଙ୍କର ଅହଂକାର ପ୍ରବଣ ଅମାନୁସିକ୍ ମାନସିକତାର୍ ଧାପେଁ ଜଲିପୁଡ଼ିକରି ଖାର୍ ପାଲ୍‌ଟିଗଲା ବଏଲେଁ ଚ଼ଲେ। ଇଟା ସତ୍ କି ମିଛ୍ ଯେ ବନେ କରିଁ ଭିତରେଁ ପସ୍‌ବା ବିଚ଼ାର କର୍‌ବା ସେ ଗଲେ ଇ ଅପ୍ରିୟ୍ ସତ୍‌ଟାକେ ସ୍ୱୀକାର୍ କରି ଦୁନିଆଁକେ ଆର୍ କେତେ କେତେ ରହସ୍ୟ ମୟେ଼ ଅତ୍ୟାଚ଼ାରକେ ସାମ୍‌ନା କରିଁ ଇ ଅନୁଷ୍ଠାନ୍ କେନ୍‌ତେହିଁ ଶେଷ୍ ବଛର୍‌ଟା ଚ଼େମ୍‌ଲେହି ବଁଚ଼ିଥିଲା ବେଶ୍ ଜନାଇ ଦେଇ ପାର୍‌ବା।

ଜୀବନ୍ ବିଦ୍ୟାଲୟ୍ ବଏଲେଁ ସେ ବେଲର୍ ପିଲାମାନେ ପହେଲା ଚ଼ାଏର୍ ବଛରର ଜୀବନ ବିଦ୍ୟାଲୟ୍ କେ ପ୍ରାୟ୍ ବୁଝସନ୍। ତାର୍ ଉତୁରୁ ତ ସରକାରୀ ଆଦେଶ ମୁତାବକ୍ ପିଲା ମାଟ୍ରିକ ପରୀକ୍ଷାଥିଁ ବସଲେ। ନାଁକେ ମାତର୍ କିଛି ଆଦର୍ଶକେ ବଁଚ଼େଇ ରଖବାର୍ ଦେଖନ୍ ସୁନ୍ଦର୍ ଚ଼େରେଷ୍ଟାଥିଁ ରହେଲେ। ହେଲେଁ ପହେଲ ଟାଏର୍ ବଛର୍ ଅସଲି ଶିକ୍ଷାର୍ ପ୍ରୟୋଗାତ୍ମକ ଢ଼ାଁଚ଼ାଟା ବନିକରିଁ ଆଗ୍‌କେ ଆହୁରି କେତେ କାଣାର୍ ଆଶା କରାଯାଉଥିଲା, ସେ ସବୁ ଆର୍ କେନ କିଏ ଚ଼ିଉତିଲେ ? ଖୁସାମତର୍ ପାଖେ କେଡ଼େ ବଡ୍ ପ୍ରୟୋଗର୍ ଭବିଷ୍ୟତଟା ବଲି ପଡ଼ଲା। ଚ଼ାଏର୍ ବଛର୍ ବଏଷେଁ ତାର୍ ବିଲୟ୍ ହେଲା ବଏଲେଁ କିଏ କାଁକେଁ ସତ୍ କର୍‌ବା ? ଦେଖ୍‌ଲା, ଚ଼ାଖ୍‌ଲା, ଚ଼ାହେଁଲା, କାନ୍‌ଲା, ଶୁନ୍‌ଲା ଲୁକ୍‌କୁଁ ସିନେ ଖୁଜା ଲାଗ୍‌ବା, ହେଲେଁ ନାଇଁ ଜାନି ନାଇଁ ବୁଝି କରିଁ ଅଚ଼ାଁଡ଼କିଆ ଖାଲି ବାଉନିବାର୍ ସଭକ୍‌ଥିଁ ଦୋଷଦେଖା ଅଦେଖା ମାନ୍‌କର୍ ଲାଗିଁ କାଏଁ ଫକ୍‌କ୍‌ଟେ ପଡ଼ବା।

ସମ୍ବଲପୁର ଅଗଗୁଲ୍ ରାସ୍ତା ଥିଁ ଅନୁଗୁଲ୍ ଆଘ୍‌ଲା ପନ୍ଦର କିଲୋମିଟର ଦୂରେଁ ବଡ଼କେରା ଛକ୍। ସେନୁ ଜୁନ୍‌ହା କଟକ୍ ରାସ୍ତାଥିଁ ତିନ୍ କିଲୋମିଟର ଆଏଲେଁ ଭୁଜ୍‌ନି ଫାଲେଁ ଯୁଦ୍ଧନୁ ଫିରିଥିବାର୍ ସୈନିକ୍‌ମାନଙ୍କର୍ ବସ୍ତି ଚ଼ଂପତ୍ତିମୁଣ୍ଡା ଗାଁ। ଆଘଲା କେ ଟିକେ ଲହଁପିଲେଁ ରାସ୍ତାକେ ଅଲପ୍ ଛାଡ଼ି କରିଁ ଜଁଗଲ୍ ଭିତରେଁଇ ଚ଼ାଏର୍ ବଛରର୍ ଆମ୍ବର୍ ସମ୍‌କିରିର୍ ଜୀବନ୍‌କେ ସାଫୁଲ୍ କରିଁ ଗଢ଼ିଥିବାର୍ ଜୀବନ ବିଦ୍ୟାଲୟ୍। ୧୯୫୪ ମସିହା ଅଗଷ୍ଟ ୨୬ ତାରିଖ ତାର୍ ଜନମ୍‌ଦିନ। ସାରା ଓଡ଼ିଶାର୍ ଚ଼ାର୍‌ହିଆଟୁଁ ଅଶିଝନ୍ ପିଲା ପାଠ୍ ପଢ଼ବାର୍ କେତେ ଆଶା ନେଇ ଇନ ଠୋଲ ହେଇଥିଲୁଁ। ନ, ଦଶ,

ଏଗାର୍ ଆରୁ ବାର ଇ ଡ଼ାଏର୍‌ଟା ସୋପାନ। ଇଟା ମୁଇଁ ନ ପଡ୍‌ଲା ବଛରର୍ କଥା, ୧୯୫୭-୫୮ ବଛରର୍ କଥା। ଏତ୍‌କି ବେଲ୍‌କେ ପ୍ରାୟ୍ ୭ ଏକର୍ ଜଁଗଲ କାଟି କରିଁ ପିଲାମାନେ ସଫାସୁତର୍ କରି ସାରିଥିଲେ ନ। ଏଗାର ବଖ୍‌ରିଆ ପନଖି ମିତାଲ୍ ଝାଁଟି ଗଡ଼ା ଉପରେଁ ମାଏଟ୍‌ଲିପା କାଁଥି ପୁଆଲ୍‌ଛୁଆଁ ଘର, ପହେଲା ବନାଲା ବିଦ୍ୟାଳୟ୍ ଆରୁ ଛାତ୍ରାବାସ। ଇଥିର୍ ନଲିଆ ଖଁଡ଼ିର୍ ପହେଲା ବଖରାକେଁ ଡ଼ାଉଲ୍ ଦାଏଲ୍ ଇଟାସେଟା ଖାଏବାର୍ ଖଞ୍ଜା ରଖା ଡ଼ବା ଘର। ତାହାକେ ଟିକେ ଛାଡ଼ି କରିଁ ରନ୍ଧା ଘର ଠିକ୍ ନଲିଆ ଖଁଡ଼ି ଖଁଡ଼ି। ରନ୍ଧାଘରର୍ ପଶ୍‌ଚିମ୍‌କେ ଦୁଆର୍‌କେ ଛାଡ଼ିଁ ତିନ୍ ବଖରା ଖପରା ଛୁଆଁ ପକ୍‌କା ଘର୍। ବଖରାକେଁ ଜୀବନ୍ ବିଦ୍ୟାଳୟ୍‌ର୍ ସତ୍‌କେ ସତ୍ ଜୀବନ ବାଗିର୍ ପାଠାଗାର୍, ଖେଁଚ଼ାଖେଚ୍ ଓଡ଼ିଆ, ବଙ୍ଗାଲୀ, ହୀନ୍ଦୀ ଆଉର୍ ଇଂରାଜୀ ଭାଷାର୍ କେତ୍‌ନିକେତେ ଉପାଦେୟ୍ ବହିଥିଁ ଖୁନ୍ଦି ହେଇଥାଏ। ତାର୍ ପାଖର୍ ବଖରାଟା ଅତିଥିଶାଲା। ଶେଷ୍ ବଖରାନ୍ ଝନେ ଶିକ୍ଷକ (ସତ୍ୟବାଦୀ ମିଶ୍ର) ରହେବାର୍ ବ୍ୟବସ୍ଥା ହେଇଥାଏ। ତାର୍ ପଶ୍‌ଚିମ୍ ପାଖର୍ ବାରଣ୍ଡାଟା ମଙ୍ଗାତେରା (ତନ୍ତଶାଲା) ହେଇଥାଏ। ତନ୍ତଶାଲାର୍ ଉପର୍‌କେ ପସ୍‌ତି ବାଟେଁ (ପ୍ରବେଶ ପଥରେ) ନଲିଆ ଉପରେଁ ସ୍ୱର୍ଗତ୍ ଅନ୍ତର୍ଯ୍ୟାମୀ ଭାଇଙ୍କର ନାଁ ଥିଁ ହେଇଥିବାର୍ ଅନ୍ତର୍ଯ୍ୟାମୀ ପୋଲ୍। ଇ ରାସ୍ତାର ଛକି ନ ରାସ୍ତା ସଲଖେଁ ଆମ୍ବର୍ ବୁଝାରକା ପଥର। ରାସ୍ତାଟ ପଶ୍‌ଚିମ୍ ଆଡ଼କେ ବୁଲି କରିଁ ଉତ୍ତର୍, ପଶ୍‌ଚିମ୍ ଫେର୍ ଉତ୍ତର ଆଡ଼କେ ଯାଇଥାଏ। ରାସ୍ତାକେ ଲାଗିଁ ଅନ୍ତର୍ଯ୍ୟାମୀ ପୋଲର୍ ଠିକ୍ ଉପର୍ ମୁଡେଁ ବାଏର୍ ବଗ୍‌ଚା ଯାଗା। ବାଏଗନ୍, ପାତଲଘଁଟା, ଶେମି, ଗୁଆଁର ଶେମି, ଝୁଲେର୍ ଯାହାକେ ଯେତେ। ବାଏର୍‌କେ ଲାଗିଁ ରାସ୍ତା ତରା ଥିଁ ଯେନ ଲିମ୍ବ ଗଛଟା ଥିଲା ତାର୍ ଛାଏଁ ତଲେ ବସି ୧୯୫୮ ମସିହାର ପହେଲା ସଖାଲେଁ ମୁଇଁ ମୋର୍ ଜୀବନର୍ ପହେଲା କବିତା ଲେଖିଥିଲିଁ, ଇଛେନ୍ ଗଲେ ଦିଶିଁ ଯାଉଛେ। ରାସ୍ତାର ପୂରବ୍ ଫାଲେଁ ପକ୍କା କାଁଥି ଖପରାଛୁଆଁ ମାଏଟ୍ ଗୁବରଲିପା ନବମ ସୋପାନର ଛାତ୍ରାବାସ। ପଶ୍‌ଚିମ୍ ଫାଲେ ଚ଼ିତ୍ତଭାଇଙ୍କର ଡ଼େରା। ଟିକେ ଆଗ୍‌କେ ଗଲେଁ ଇଫାଲେଁ ଅଧାପନ୍ତରିଆ ଦଶମ ସୋପାନର୍ ଛାତ୍ରାବାସ୍ ଆର୍ ଆରଫାଲେଁ ପଡ଼ଲା ଦୁଇମାନକର୍ ଛାତ୍ରୀନିବାସ, କନ୍ୟାଶ୍ରମ। ରାସ୍ତାର୍ ମୁଡ଼ଶା ଆଡ଼କେ ଖାଲି ଝନେ ଗୁରୁଜୀ ରହେବାର୍ ଡ଼େରା, ସେନ ବାସୁଭାଇ ରହୁଥିଲେ। ବନେ ପଛ୍‌କେ ରାସ୍ତାର ମୁଡ଼କେ ବିଦ୍ୟାଳୟ୍‌ର ସୋପାନ କୁଠି ଆରୁ ପାଠାଗାର୍, ବିଜ୍ଞାନଗାର୍ ତିଆର୍ କରିଛନ୍ ଯେନ୍‌ଟାକି ୧୯୫୮ ପରେ ହେଇଛେ। ଦୁଇଟା ବଡ଼େ ବଡ଼େ ଚୁଆଁ, ହେଲେଁ ଫେବୃଆରୀ ଉତ୍‌ରୁଁ ପାଏନ୍ ଶୁଖିଗଲେ ଟାକି ଟାକି ଛେଦେଇ ଛେଦେଇ ପିଇବାକ୍ ପାଏନ୍‌ଟିକେ ବାହାର୍ କର୍‌ବାର୍‌କେ ପଡୁଥିଲା। ରନ୍ଧାବଡ଼ା ପାଏନ୍‌ଟା ରନ୍ଧା

ଘର ପାଖର୍ ନଲିଆଥୁଁ ଚ଼ଲୁଥିଲା । ହେଲେଁ ଖରାଦିନେ ଝରେନ୍ ପାଏନ୍ ଶୁଖିଗଲେଁ ପାନିର୍ ଗୁଲ୍ ଗୁଲା କହେଲେଁ ନାଇଁ ସରେ । ପୂରୁବ୍ ଦିଗେଁ ଆର୍ ଗୁଟେ ନଲିଆ, ସେ ନଲିଆଥିଁ ବଏଡ଼ ପଡ଼ଲେଁ ଜୀବନ୍ ବିଦ୍ୟାଲୟ୍ର୍ ପିଲାମାନ୍କର୍ ମନ୍ ଗଲେ ଉଦୁର୍ମାତ୍ ଧରୁଥିଲା । ପାଏନ୍ ବର୍ଷୁଥିବା, ପହେଲା ଝନେ ବର୍କସେ ପିଲା ଚ଼ିତ୍ତଭାଇଙ୍କୁ ବର୍ଷା ପାଏନ୍କେ ଠେଲ୍ବା, ତାର୍ ଉତ୍ରୁ ଝନେ ଝନେ ହେଇ ସଭେ ସମ୍କୁ ଘିଚ଼ି ଉଲ୍ଟି ବର୍ଷା ପାନିଥିଁ ଭିଜ୍ବାର୍ ମଜା ନେବେ, ରବୀନ୍ଦ୍ର ସଂଗୀତ୍ ଗାଇ ଗାଇ କରି ଇ ନଲିଆ ନିକେ ଆସିଗଲେ ଉଦୁର୍ମାତ୍ ହେଇକରି ସଭେ ବଏଡ଼ ନଲିଆ ପାଏନ୍କେ ଡ଼େଗମୁଁ, ନଲିଆର୍ ବଁକା ଜାଗାଟା ପହଁରି କରି ଯ୍ରଇ ଲାଗ୍ବାର୍କେ ବଡ଼େଟେ ସଜ ଥିଲା । ସବୁ ସୁବିଧା ଅସୁବିଧା, ଦୁଖ୍ ସୁଖ୍କେ ପାସିର୍ବାର୍ ଲାଗିଁ ମନ୍ ଉପରେ ବଲ ଲଗାବାର ଦର୍କାର୍ ନାଇଁ । ତାର୍ ସୁଖେଁ ସବୁ ପାସ୍ରି ହେଇଁ ଯାଉଥିଲା ।

ହଁ, ଆର୍ ଗୁଟେ ନଲିଆର୍ କଥା ପାସ୍ରି ନେଲେଁ ନାଇଁ ଚ଼ଲେ ବଡ଼କେରାଛକୁଁ ବିଦ୍ୟାଲୟ୍କେ ଆସ୍ଲାବେଲେଁ ଚ଼ଂପତ୍ତିମୁଣ୍ଡା ଗାଁର ଆଘ୍ଲାନ ଯେନ୍ ନଲିଆ ପଡ଼ସି ତାର୍ନା ମାତ୍ଲିଆ । ମାତ୍ଲିଆ ମାତିଥିଲେଁ (ବଏଡ଼ ହେଇଥିଲେଁ) ଇଫାଲୁଂ ସେଫାଲ୍କେ ଯାନାଆନା ବନ୍ଦ । ଇନ୍ତାକି ରଏବାର ହାଟୁଁ (ଅନଗୁଲୁଁ) ହାଟ୍ ବାଟ୍ ଧରି ଆଏବା ଗାଡ଼ି ଆର୍ ଖଡ଼ିଁ, ଇଆଡେଁସଭେ ଅର୍ଦା ଉପାସ, ଇନ୍ତା ଗଲେ କେତେଥର୍ ହେଇଛେ । ହାଟ୍ ଆଏଲେଁତ ଚୁଇଲ୍ ଜଲବା ଯେ । ବାଜିରାଉତ୍ ଛାତ୍ରାବାସ୍ ଛାଡ଼ି ଜୀବନ୍ ବିଦ୍ୟାଲୟ୍କେ ପହେଲାକରିଁ ପଡ଼ିଆଏଲା ଦିନେ ମତଲିଆଥିଁ ବଏଡ଼ ପଡ଼ିଥିଲା ଯେ ଦିନର ୩ ବଜେ ଥୁଁ ରାତିର୍ ୯ ବଜେ ତକ୍ ଇ ନଲିଆ ଲହଁକି ନାଇଁ ହେଲା । ଏଭେଁ ନଲିଆ ଉପ୍ରେ ପୁଲିଆଁଟେ ହେଲାନ, ଆର୍ ମାତିଲିଆର୍ ଉଦୁର୍ମାତ ନାଇଁନ ।

ସଖାଲ୍ ଚ଼ାଏର୍ ବଜେନୁ ଉଠ୍ବାର ଘଁଟା ବାଜ୍ବା । ଉଠି କରି ଯେ ଯାହାର୍ ନିତ୍ୟକର୍ମ ସାରି କରିଁ ପ୍ରାର୍ଥନାଥିଁ ଯୋଗ୍ ଦେବେ । ତାର୍ ଉତ୍ରୁ ସଫେଇ, ପାଲି ଅନୁସାରେ ଘର ଦୁଆର୍, ଗୁହାଲ୍, ବାସନ୍ବର୍ତନ ସବୁ ସଫା ହେବା । ଉଠ୍ବାର୍ନୁ ଶୁଇବାର୍ତକ୍ ଇନ କାହାକେ କେହେନ୍ସି କିସ୍ମର୍ ବାଧ୍ୟବାଧକତା ନାଇଁ । ଇନ୍ତା କି ସୋପାନ୍ମାନ୍କେ ଗଲେ ଉପସ୍ଥାନ ପକାବାର୍ କାର୍ବାର୍ ନାଇଁ । ହେଲେଁ ଦିନେ କେହେନ୍ସି କାମେ ଯୋଗ୍ ଦେଇ ନାଇଁ ପାର୍ଲେଁ ପିଲାଟେ ମନେ ମନେ କେତେ ହୁର୍ଗୁନି ହେସି, ହଟହଟା ଅନୁଭବ୍ କର୍ସି ସେ ଅନୁଭବଟା ଆନ୍ବାର୍ଲାଗିଁ ଚ଼ିତ୍ତଭାଇଙ୍କର ଜୀବନ ବିଦ୍ୟାଲୟ୍ ବହିର୍ ପିଲାଟାକର୍ ଡ଼ାଏରୀନୁ ଉଦ୍ଧାର କରିଥିବାର୍ ଦିନ୍କର୍ ଘଟନା ପଡ଼ଲେଁ ସଭେ ଜାନି ପାର୍ବେ । ଇଟାକେ ଆମ୍ଭେ ଶିକ୍ଷା ବଲ୍ମା କି

ଅତି ହୁସିଆର୍ ହେଇ କରିଁ ଭକୁଆମି ବଲ୍‌ମା । ଯେ ଯେନ୍‌ତା ବିଚାର କରିପାରନ୍ । ନାକର୍ ତଲେଁ ମେଛା, ଆର୍ ଯାର୍ ଯେନ୍‌ତା ଇଛା ।

ସଫେଇ ସରିଗଲେ ଜଲ୍‌ଖିଆ ଖିଆ । କେନ୍‌ଦିନେ ମଡ଼ିଆ ତିଖିରୀ ତ କେନ୍‌ଦିନେ ଦଲିଆ, କେନ୍‌ଦିନେ ଚୁରା ଗୁର୍ ନଡ଼ିଆ କୁରା, କେନ୍‌ଦିନେ ଖିଚ୍‌ଡି ତ ଫେର୍ କେନ୍‌ଦିନେ ମୁର୍‌ହି ମୁଗ୍‌ଫଲି । ଇତାର୍ ସାଙ୍ଗେ ଚିତ୍ତଭାଇଙ୍କର ଠିକ୍‌ନା ଥିଁ ଡେ଼ନ୍‌ମାର୍କନୁ ଯେନର୍‌ଲୁକେ ପଠଉଥିବା ମିଲ୍କପାଉଡ଼ର ଦହି କି ଗୁରସ ଆର୍ ତାର୍ ସାଙ୍ଗେ ଯେନୁ ଆସୁଥିବାର୍ ବଟର୍ ଅଏଲ୍ ଦର୍‌କାର୍ ମୁତାବକ୍ ମେଶିକରି ଯେନ୍ ରୁଚିକର ଲାଗୁଥିଲା କାଣା କହେବ୍ । ଜଲଖିଆ ତିଆର୍ କରବେ ପିଲାମାନେ ପାଲିକରି, ରନ୍ଧାବଡ଼ା କରବେ ପିଲାମାନେ, ନିଜର୍ ନିଜର୍ ଥାଲିଗିନାସଫାନୁ ନିଜର୍ ସବୁ କାମ କର୍‌ବେ ପିଲାମାନେ ନିଜେ ନିଜେ । ନିଜର୍ ନିଜର୍ କୁଠିମାନେ ଗଲେ ଲିପାପୁଛା କର୍‌ବେ ।

ଜଲଖିଆ ଖାଇ ସାଏଲା ଭିତ୍‌ରୁ ବଗିଚାକାମ୍, ତନ୍ତକାମ, ବହିବନ୍ଧେଇ କାମ ଯେ ଯେନ୍

ଟା ସଉକ୍ ଅନୁସାରେ କର୍‌ବେ । ନିଜର୍ ସଉକ୍ ଅନୁସାରେ କାମ୍ କେନ କର୍‌ବାର୍ କେ ପଡ଼ବା ବଁଟା ହେଇଥିବା । ଆର୍ ପିଲାମାନେ ଗାଁ ମାନଙ୍କୁଁ ଯାଇକରି ଆର୍ କେତେ କାମ୍ କରୁଥିଲେ । ତାର୍ ଉତୁରୁଁ ନ ବଜେନୁ ବାର୍ ବଜେତକ୍ ପଏଁଚାଲିଶ ମିନ୍‌ଟିଆ ଚାଏର୍‌ଟା ସୋପାନ ବା ଶ୍ରେଣୀ ହଉତିଲା । ପିଲାମାନେ ଶିକ୍ଷକଙ୍କର୍ ଘର୍‌କେ ପଢିଯାଉଥିଲେ । ଏକା ସାଙ୍ଗେ ତଲେଁ ବସୁଥିଲେ ଛାତ୍ର ଶିକ୍ଷକ ସଭେ । ଚାଏର୍‌ଟା ଶ୍ରେଣୀକେ ତିନଝନ ଶିକ୍ଷକକା । ମଝିଁ ମଝିଁଥିଁ କିରାନି ମହାଶୟ ଗଲେ ପାଠ ପଡଉଥିଲେ । ଦ୍ୱାଦଶ ସୋପାନର ଭାଇମାନେ ଗଲେ ସମ୍ପିଆ ସମ୍ପିଆଥିଁ ପଢ଼ଉଥିଲେ ବିଶେଷ କରି ଆମ୍ଭର ନବମ ସୋପାନର୍ ପିଲାମାନଙ୍କୁଁ । କେହେନ୍‌ସି ନିର୍ଦ୍ଧିଷ୍ଟ ପାଠ୍ୟଖସଡ଼ା କେ ଅନୁସରଣ କର୍‌ବାର୍‌ତ ଦେଉଁ ଥାଉ, ପିଲାମାନଙ୍କୁଁ କେଭେଁ କେହେନ୍‌ସି ବହି ଘିନି କରି ପଢ଼ାର ଲାଗିଁ ଗଲେ କେହେନ୍‌ସି ନିୟମ ନାଇଁ କି କିଏ କେଭେଁ ନାଇଁ କହିଁ । ନବମ ଆରୁ ଦଶମ ସୋପାନ ନ ସାଧାରନ୍ ଭାବେଁ ଗଣିତ୍, ଇଁଗ୍‌ଲିସ୍, ସାହିତ୍ୟ, ସାମାଜିକ ଇତିହାସ, ଶିକ୍ଷା ମନୋବିଜ୍ଞାନ ମିଶାମିଶି ପଢ଼ାହେଉଥିଲା । ଇ ଦୁଇ ବଝର୍ ରିତିମତ୍ ସୋପାନ ହେଉଥିଲା । ଏକାଦଶ ଆରୁ ଦ୍ୱାଦଶ ସୋପାନ ବେଲେ ଅତିରିକ୍ତ ବିଷୟ୍ ସବୁ ପଢ଼ା ହେଉଥିଲା । ସାହିତ୍ୟ, ଗଣିତ, ଇତିହାସ୍, ଦର୍ଶନ୍, ଶିକ୍ଷା, ମନୋବିଜ୍ଞାନ ଇତ୍ୟାଦି ବିଷୟ୍ ଭିତରୁ ପିଲା ମନଇଛା ଦୁଇଟା ବିଷୟ୍ ବାଛି କରି ନିଜର ମର୍‌ଜି ମୁତାବକ ପଢ଼ବା । ବିଭିନ୍ନ ବିଷୟ୍ ନେଇଥିବା

ପିଲାକେ କେନ୍‌କେନ୍ ବହି ପଢ଼ବାର୍‌କେ ପଢ଼ବା ତାର୍ ଗୁଟେ ଗୁଟେ ତାଲିକା ଥିଲା । ମନେ ଅଛେ ଦର୍ଶନ୍ ପଢ଼ବାର୍‌ଲାଗି ପିଲାକେ ପ୍ରାଡ଼େ ତିନ୍‌ସ ଖଡ଼ ବରହି ପଢ଼ବାର୍‌କେ ପଡୁଥିଲା । ଇନର୍ ଶିକ୍ଷକ ଭାଇମାନେ ପାଠାଗାରର୍ ବହି ପତରରେ ଗାଁଗେ ପୂରାପୂରି ପରିଚିତ୍ ରହେବାର୍‌କେ ପଡୁଥିଲା । ସୋପାନ୍‌ଥିଁ ପଢ଼ାଲାବେଲେଁ କଥାପ୍ରସଙ୍ଗନ ଯେନ୍ ବହିମାନଙ୍କର ନା ଧରୁଥିଲେ ଆରୁ ସେ ବହି ଖଁଡ଼କ ଆଧିଲା ପଢ଼ବାର୍ ଲାଗି ପିଲାକର ଭିତ୍‌ରେ ପ୍ରତିଯୋଗିତା ଲାଗିଁ ଯାଉଥିଲା । ବିଶ୍ୱାସ୍ ନାଇଁ କରି ହୁଏ ବାରବଜେ ଖାଏବାର୍ ଘଁଟି ବାଜ୍‌ତେ ବାଜ୍‌ତେ ପିଲାମାନେ ଖାଏବାର୍ ବାରଣ୍ଡାଥିଁ ନିଜର୍ ଥାଲିଗିନା ପକେଇ ନେଇ କରି ସେ ବହି ଖଁଡ଼କ ଆଗ ନେବାର୍ ଲାଗିଁ ପାଠାଗର୍ ଥିଁ ଭିଡ଼ ଜମଉଥିଲେ । ଇଟା ଦୁହି ତଲି କିଲାସର୍ ପିଲାମାନକର୍ କରାମତି । ତାର୍ ଛଡ଼ା ତଲି କିଲାସର୍ ପିଲାମାନେ ଗଲେ କେନ୍ କେନ୍ ବହି ପଢ଼ବେ ତାର୍ ମିଶାଲ୍ ନିର୍ଦ୍ଧିଷ୍ଟ ତାଲିକା ଗୁଟେ ଲେଖାଥିଲା ଆର୍ ସେ ଅନୁସାରେ ବହି ସବୁ ନାଇଁ ପଢ଼ଲେଁ ପରୀକ୍ଷା ପ୍ରଶ୍ନର ଉତ୍ତର ଦେବାର୍‌ଟା କାଠିକର୍ ପାଠ ଥିଲା । ତାର୍ ବାହାରେ ଯେନ୍ ବହିର ନାଁ କିଲାସେ କହୁଥିଲେ ସେତାର୍ ଲାଗି ଇ ଭିଡ଼୍ । ପଢ଼ବାର ଆଗ୍ରହ ପିଲାର୍ ଭିତ୍‌ରେ କେତେ ଗଭିର୍ ଭାବେ ଶିକ୍ଷକ ପକେଇ ପାରୁଥିଲେ ଇଟା ତାର୍ ଗୁଟେ ଉଦାହରଣ୍ ଭାବେ ନିଆଯାଇପାରେ ।

ଖାଇ ପିଇ ସାଏଲେଁ ସଭେ ନିଜର୍ ନିଜର୍ ପଢ଼ାପଢ଼ି ଆର୍ ଲେଖା ଲେଖିଥିଁ ମାତିଯାଉଥିଲୁଁ । ପହେଲାନୁ "ବିକାଶ" ବଲିଁ ହାତ୍ ଲେଖା ପତ୍ରିକାଟେ ବାହାରୁଥିଲା ଯାର୍ ସମାଲୋଚ଼ନା "ଡ଼ଗର" ପତ୍ରିକାର୍ ସଂପାଦକ୍ କରୁଥିଲେ । ଆମ୍ଭର ନବମ୍ ସୋପାନର ପିଲାମାନେ ସାଧନା ବଲି ଆର୍ ଗୁଟେ ପତ୍ରିକା ବାହାର କଲୁଁ । ସବୁ କିସମ୍‌ର ଲେଖାମାନେ ପିଲାମାନେ ନିଜର୍ ହାତେଁ ଲେଖି କରି ଦଉଥିଲେ ଆରୁ ସେଟା ପତ୍ରିକା ଆକାର୍‌ନ ବାହାରୁଥିଲା । ଯେନମାନେ ସେତେବେଳେଁ ଇ ଅନୁଷ୍ଠାନଥିଁ କାଣା ସବୁ ହଉଥିଲା ସେଟା ଜାନ୍‌ବାର୍‌କେ ଚ଼ାହେଁବେ ସେ ବେଲର୍ ଇ ଦୁହି ପତ୍ରିକା ସେମାନ୍‌କୁଁ ଗୁର୍‌ଦୁଟେ ସାହାଜ୍ କର୍‌ବା । ଇ ବାବଦ୍‌ଥିଁ ପଛେଁ ଫେର୍ ଆଲୋଚ଼ନା କର୍‌ମା ।

ଚ଼ାଏର୍ ବଜିଗଲେଁ କେତେ ରକ୍‌ମର୍ ଖେଲ୍ କସ୍‌ରତ୍‌ଥିଁ ସଭେ ମାତିଁଯାଉଥିଲେ । ଭଲିବଲ୍ ଖେଲ୍‌ଥିଁ ନିକେଁ ଚ଼ିତ୍ତଭାଇଗଲେ ସାମିଲ ହଉଥିଲେ । ଗୁଡୁ, ବହୁଗୁଡୁ, ଆର୍ ନାନା ରକ୍‌ମ୍‌ର୍ ଆସନ୍ କର୍‌ବାର୍‌ଟା ଇତା ବଏସେରା ହେଇଯାଇଥିଲା ।

ବେଲ୍‌ବୁଡ଼ାକେ ଛ ବଜେ ସାମୁହିକ ପ୍ରାର୍ଥନା ହେଉଥିଲା । ପ୍ରାର୍ଥନା ଉତ୍‌ରୁ ଆଲୋଚ଼ନାମାନ୍ ଗଲେ ହେଉଥିଲା । ଶଏନ୍‌ବାର୍ ପ୍ରାର୍ଥନା ଉତ୍‌ରୁ ଯେନ୍ ତର୍କ ସଭା

ହେଉଥିଲା ସେଟା ସବୁନୁ ବେଶି ଆକର୍ଷଣୀୟ ଥିଲା । କେନ୍ ଶଏନ୍‌ବାର ପଦ୍ୟାନ୍ତ ହେଉଥିଲା ତ ଫେର୍ କେନ୍ ଶଏନ୍‌ବାର୍ କେରି କେଚ୍‌ର୍, ନାଟ୍‌ତାମ୍‌ସା, ଗାନା ବାଜ୍‌ନା ହେଉଥିଲା । ଜଙ୍ଗଲ୍ ଭିତ୍‌ରେଁଇ ଇ ମଜାଟା ବେଶ୍ ଉପଭୋଗ୍ୟ ହେଇଁ ରହିଥିଲା । ଇ ସବୁ ବିଷେନ ଗଲେ ଫେର୍ ପଛେଁ କା ଆଲୋଚ୍‌ନା କର୍ ମା ।

ପ୍ରାର୍ଥନା ସଭା ଉତ୍‌ରୁ ରାତିର୍ ଖାଏବାର୍‌ଟା । ତାର୍ ଉତ୍‌ରୁ ଯେ ଯେତେ ରାଏତ୍‌ତକ୍ ଉଜାଗର୍ ରହି କରିଁ ବହିପତର୍ ଥିଁ ଯେତ୍‌କି ଉଁଢ଼େ ଇ ପାର୍‌ଲା । ମନ୍‌ଭଏର୍ ପଢ଼ବାର୍ ଟିପି ରଖ୍‌ବାର୍ ଲାଗିଁ ଇଟାସବୁନୁ ବଡ଼ ମଉକା ସଁଭିଆ ଥିଲା । ବର୍ଷା ମାସର୍ ମେଘ ଦୁଲ୍‌କା ବିଜିଲିର୍ ଖେଲ୍, ଶୀତ୍ କାକର୍‌ର କନ୍‌କନି କି ଖରାଦିନର ଝାଲବୁହା ତାତି ଆମ୍ଭର ମାନ୍‌କର୍‌ଇ ପଢ଼ାରଚ଼ିକେ କେଚ୍‌କେଚ଼ା କର୍‌ବାର୍‌କେ ଢ଼ରୁଥିଲା କାଏଁ ଆଉର୍ ? ଇଟା ସେନର୍ ସବୁନୁ ବଡ଼ ମଉକା ବଏଲେଁ ଚ଼ଲେ । କେହେନ୍‌ସି ବାଧ୍ୟବାଧ୍ୟକତା ନାଇଁଥାଇଁ ବଲିଁ ପିଲାମାନେ ଏତ ନୀବିଡ଼ ଭାବେଁ ପଢ଼ାପଢ଼ିନ ଲାଗିପାରୁଥିଲେ କାଏଁ ? ବଖ୍‌ରେ ବଖ୍‌ରେ ଥିଁ କୁକୁରା ଡ଼କାତକ୍ ଲାଲ୍‌ଟିନ୍ ଜଲୁଥିଲା ।

(ବାକି ଇତାର୍ ଉତୁରୁ)

●

# ମୋ ଜୀବନରେ ଚମ୍ପଉିମୁଣ୍ଡା...

**ଘାସିରାମ ପଧାନ**

ମୋର ଗ୍ରାମ ଜମୁର୍ଡା, ବରଗଡ ଜିଲ୍ଲା। ମୋର ନାମ ଘାସିରାମ ପଧାନ। ୧୯୪୭ ଅଗଷ୍ଟ ୧୫ ତାରିଖରେ ଭାରତର ସ୍ୱାଧୀନତା ବେଳକୁ ମୁଁ ଆମ ଗ୍ରାମର ସ୍କୁଲର ଛାତ୍ର। ସେଦିନ ଏବେ ମୋର ମନେପଡ଼େ। ଗୋଟିଏ ପତାକା ଧରି ସ୍ଲୋଗାନ ଦେଇ ପ୍ରଭାତ ଫେରି କଲୁ। ପ୍ରାୟ ସେହିଦିନଠାରୁ ଜୀବନର ଧାରା ଅଲଗା ଧରଣ ହୋଇଗଲା ବୋଲି ମୋର ଯେତେବେଳେ ମନେପଡ଼େ ମୁଁ ନିଜେ ନିଜକୁ ଧନ୍ୟ ମନେକରେ। ସେତେବେଳେ ହୁଏତ ମୁଁ ତାରି ଭାବନା ଅର୍ଥ ବୁଝିନଥିଲି।

ଆମ ଗ୍ରାମରେ ପଞ୍ଚମ ଶ୍ରେଣୀ ପରେ ଏଠାକାର ପ୍ରଧାନ ଶିକ୍ଷକଙ୍କ ନିର୍ଦ୍ଦେଶରେ ମୁରୁମକେଲ ବେସିକ୍ ସ୍କୁଲକୁ ପଢ଼ିବା ପାଇଁ ଗଲି। ସେଠାରେ ୩ ବର୍ଷ ପାଠ ପଢ଼ିବା ପରେ ଏହି ଶିକ୍ଷକଙ୍କର ନିର୍ଦ୍ଦେଶକ୍ରମେ ଆମେ କେତେ ଭାଇ ଚମ୍ପଉିମୁଣ୍ଡା ପଢ଼ିବା ପାଇଁ ଗଲୁ। ଯେତେବେଳେ ମୁଁ ଏହି ସ୍ଥାନକୁ ପଢ଼ିବାପାଇଁ ଗଲି ସେତେବେଳେ ଆମ ଗ୍ରାମରେ ଅନେକ ଚର୍ଚ୍ଚା ହୁଏ। କେ, କେ, କହନ୍ତି, ଆମର ଏଠାରେ କ'ଣ ସ୍କୁଲ୍ ନାହିଁ ଯେ ଏତେଦୂରକୁ ପିଲାଙ୍କୁ ପଠାଉଛ ? ଏ ପାଠର କ'ଣ ବିଶେଷତ୍ୱ ଅଛି ଯେ ଏସବୁ କରୁଛ। ମୋର ବାପା ସେତେ ପାଠୁଆ ଲୋକ ନହେଲେ ମଧ୍ୟ ତାଙ୍କର ଆମ ଗ୍ରାମରେ ବିଶେଷତା ଥିଲା। ତେଣୁ ସେ କହନ୍ତି, ନୂଆ ପାଠ, ନୂଆ ଧରଣ ପ୍ରତିଭା, ଦେଖିବା କ'ଣ ହୋଇପାରେ।

ମୁରୁମକେଲରେ, ବ୍ୟବହାର ଏକାଠି ଖାଇବା, ଏକାଠି ଶୋଇବା ଆଦି ପ୍ରତ୍ୟେକ କାମ ପ୍ରାୟ ଆମର ଅଭ୍ୟାସ ହୋଇ ପାରିଥିଲା। ଆତ୍ମୀୟତା ଉପରେ ଆମର ବିଶ୍ୱାସ ଜାଗରିତ ପ୍ରାୟ ହୋଇ ଯାଇଥିଲା। ନିଜ କାମ ନିଜେ କରିବାର ଅଭ୍ୟାସ ଆମକୁ ଉତ୍ସାହିତ କରୁଥାଏ। ଯାହାକି ସେସବୁ ଚମ୍ପଉିମୁଣ୍ଡାରେ ମଧ୍ୟ କରିବାକୁ ହେଲା। ହଠାତ୍ ଜଣେ ଏହି ପରିବେଶରେ ସହଜରେ ବଞ୍ଚିବା କଷ୍ଟକର ହୋଇଯିବ। ଆମର ପ୍ରତ୍ୟେକ କର୍ମର ନିଷ୍ଠାକୁ ନେଇ ଆମେ ବେଶ୍ ସୁରୁଖୁରୁରେ ଚଳି ଯାଇପାରୁଥିଲୁ।

ଯେତେବେଳେ ବଡ଼ବେରା ଛକରୁ ଓହ୍ଲାଇ ଚମ୍ପଉିମୁଣ୍ଡା ରାସ୍ତାରେ ଗଲି, କିଛିଦୂର ପରେ ମୋତେ କେବଳ ଗଛପତ୍ର ଦେଖାଗଲା। ପରେ ଗୋଟିଏ ନଳିଆ ଡେଇଁବାକୁ

ପଡ଼ିଲା । ଅବଶ୍ୟ ତାହା ପଥରରେ ବନ୍ଧାଥିଲା । ତା'ପରେ ରହିବାପାଇଁ ମାଟିଘର, ଛଣଛପର କୁଡ଼ିଆ ମିଳିଲା । ଅବଶ୍ୟ ସେଠାରେ ଅନେକ ଭାଇ ଭଉଣୀଙ୍କୁ ଦେଖି ମନ ଟିକିଏ ବଦଳିଗଲା । ପ୍ରଥମେ ଏହି ସ୍ଥାନକୁ ଦେଖି ଭଲ ଲାଗୁନଥିଲା । କାରଣ ଚାରିଆଡ଼େ ଜଙ୍ଗଲ, କ୍ରମେ ସେହି ଜଙ୍ଗଲ ମୋର ସାଙ୍ଗରେ ବନ୍ଧୁ ହୋଇଗଲେ । ତା' ସାଙ୍ଗରେ ଖେଳିବା, ପଢ଼ିବା, କାମ କରିବା ଆଦି ଏପରି ଅଭ୍ୟାସଗତ ହେଲା ଯେ କହିବାର ନାହିଁ ।

ଆମର କୌଣସି ଚାକର ବାକର ସେଠି ନଥିଲେ । କେବଳ ପଞ୍ଚୁଭାଇ ବୋଲି ଜଣେ ଥିଲେ ସେ ଗୋଟିଏ ଯୋଡ଼ା ବଳଦ ଏବଂ ପଣ୍ଡା ଗୋଟିଏ ଯୋଡ଼ା ଦେଖି ଭଲ କରି କିଛି ଚାଷ କରାଉଥିଲା । ଏ ଚାଷରେ ଆମେ ଭାଇ ଭଉଣୀମାନେ ମଧ୍ୟ ସହଯୋଗ କରୁଥିଲୁ । ଧାନ ଯେତେବେଳେ ଅମଳ ହେବାକୁ ହୁଏ, ରାତିରେ ଜଙ୍ଗଲ ଜନ୍ତୁ ଖାଇଯିବେ ବୋଲି ଆମକୁ ସେହି ଧାନ ବିଲରେ ମଂଚାରେ ଶୋଇଯିବାକୁ ହୁଏ । ଚାରିକୋଣରେ ଚାରିଟା ଉଚ୍ଚଧରଣର ମଞ୍ଚା କରାଯାଏ ଏବଂ ତା' ଉପରେ ରାତିରେ ଟିଣ ଆଦି ଧରି ଜନ୍ତୁ ଏଡ଼ାଇବା ପାଇଁ ବଜାଯାଏ । ମୁଁ ଏହି କାମକୁ ଭଲ ପସନ୍ଦ କରୁଥାଏ । ମଞ୍ଚାକୁ ଯିବାଦିନ ସେହି ନିକଟସ୍ଥ ଗ୍ରାମରୁ ମୁଢ଼ି ଏବଂ ନଡ଼ିଆ କୁରା ଆଣି ମଞ୍ଚାକୁ ଯାଉ । ମଜା କରୁ । ପୁଣି ସକାଳୁ ମଞ୍ଚାରୁ ଉତୁରି ଘରକୁ ଆସୁ ।

ମଝିରେ ଦିନେ ଦିନେ, କାଠପାଇଁ ବଳଦ, ପୋଡ଼ ଗାଡ଼ି ନେଇ ଜଙ୍ଗଲ ଭିତରକୁ କେତେକ ସାଙ୍ଗ ହୋଇଯାଉ । ସେଠାରେ କାଠକାଟି ଗାଡ଼ିରେ ବୁହାଇ ଆଣୁ । ଏ ଯେଉଁ ଆନନ୍ଦ ତାହା କହିବ କିଏ ? ସେଠାରେ ଆମକୁ ଜଙ୍ଗଲର କେତେ ଋତୁରେ କେତେ ଜାତିର ଫୁଲ୍ ମିଳେ । କଣ୍ଟେଇ କୋଳି ସବୁଠୁ ବଢ଼ିଆ, କାରଣ ଗୋଟିକୁ ଗୋଟି ଛିଣ୍ଡାଇ ଖାଇବାକୁ ପଡ଼େ । କାରଣ ପେଟ ପୁରେ ନାହିଁ ନା ମନ ଭରେ ନାହିଁ । ସେହି କାଠ ଆଣି ରଖିଥାଉ ଆମର ରନ୍ଧାବଢ଼ା ପାଇଁ ।

ଆମେ ଭାଇ ଭଉଣୀମାନେ ନିଜେ ରନ୍ଧା, ପରିବେଷଣ, ହଣ୍ଡା ମଜା, ଜଳଖିଆ ତିଆରି ପ୍ରତ୍ୟେକ କାମ ଆମେ ପାଳି କରି କରିଥାଉ । ମୋର ମନେ ହେଉଛି ଯେ ମୋର ଭଉଣୀମାନଙ୍କ ସାଙ୍ଗରେ ରନ୍ଧା ପାଳି ଥିଲେ ମୁଁ ବହୁତ ଘମଣ୍ଡ କରିଥାଏ । କାରଣ ମୋର ଭଉଣୀମାନେ ମୋତେ ମନାନ୍ତି । ସେ କହନ୍ତି ପାଣି ଦୁଇ ବାଲ୍‌ଟି କାଠ କେଇଖଣ୍ଡ ଯଦି ତୁ ଆଣିବୁ ତୋ ଲାଗି ପିଠା କରିଦେବୁ । ଏମିତି ଅନେକ ପ୍ରକାର ଭଲ ପାଇବାର ଇଚ୍ଛା ପ୍ରକାଶ କରନ୍ତି । ଏ ଯେଉଁ ଆନନ୍ଦ ହୁଏ, ଏହା ଜୀବନରେ ଭୁଲି ପାରିନାହିଁ ନା କେବେ ଭୁଲି ହେବ ନାହିଁ । ଏ ଯେଉଁ ସଂପର୍କ ଏତେ ଯେ ନିବିଡ଼ ହୋଇ ଯାଇଥିଲା ଏହା

ଏତେ ପ୍ରାକୃତିକ ଯେ ଏହି ବୟସ୍କ ବୟସରେ ମଧ୍ୟ ଆଖିରୁ ପାଣି ଆସେ। ମୁଁ ମନେକରେ ଏଇଟା କ'ଣ କେବଳ ଏହି ଜନ୍ମର ପରିଚୟ ? ତଥାପି ନିଜକୁ ନିଜେ ପ୍ରଶ୍ନ କରେ ଏହା କାହିଁକି ? ମନ କେଜାଣି କୁହେ, କେବଳ ଏ ଜନ୍ମର ସମ୍ପର୍କ ନୁହେଁ ଗଲା ଜନ୍ମର ମଧ୍ୟ କିଛିଟା ସଂସ୍କାର ଲୁଚି ରହିଛି। ତା' ନହେଲେ ଏତେ ଅସମ୍ଭବ, ସମ୍ଭବ ନିମିତ ହେଉଥାଏ। ଆମେ କେହି କେବେ ପରଘର ଝିଅ ପରଘର ପୁଅ ଭାବନା ନଥାଏ। ଆମେ ସମସ୍ତେ ଭାଇଭଉଣୀ ଗୋଟିଏ ପରିବାରର ବୋଲି ଆମେ ନକହିଲେ ମଧ୍ୟ ଆତ୍ମା ସବୁବେଳେ କହେ। ତା'ର ପ୍ରତ୍ୟକ୍ଷ ପ୍ରମାଣ ରହିଛି। ଭଉଣୀ ମାନଙ୍କର ଗୋଟିଏ ଅଲଗା ଘର ଥାଏ। ତାଙ୍କ ଦେଖାଶୁଣା ପାଇଁ ଲବଙ୍ଗଲତା ଅପା ବୋଲି ଜଣେ ମହିଳା ଥିଲେ ଏବଂ ସେ ଆମକୁ ହିନ୍ଦି ମଧ୍ୟ ପଢ଼ାଉଥିଲେ। ମୁଁ ମୋର ଅପା ମାନଙ୍କର କୋଠରୀକୁ ଯାଇ ତାଙ୍କ ବାକ୍ସରେ ଯାହାସବୁ ଖାଇବା ଥାଏ ମୁଁ ଖାଇଦିଏ। ସେମାନେ ମୋର ସାଙ୍ଗରେ ମାଡ଼ ହୁଅନ୍ତି। ମୁଁ ମଧ୍ୟ ମାଡ଼ ହୁଏ। ଶେଷକୁ କ୍ରୀଷ୍ଣ ଅପା ଆସିଲେ ମୋତେ ପିଟେ ଏବଂ ଆମକୁ ମନାଇ ଦିଏ। ବର୍ତ୍ତମାନ ମୋର ମନରେ ପ୍ରଶ୍ନ ପୁଣି ଜାଗରଣ ହୁଏ ଯେ ମୁଁ ଯାହା କରୁଥିଲି ଏସବୁ କ'ଣ ? ଏହାର ଉତ୍ତର ଅପେକ୍ଷାରେ ଆଜିଯାଏ ଅଛି।

ଏହିସବୁ ଯେଉଁ ଗତ ଇତିହାସ ମୋର ଜୀବନରେ ମୋତେ ଏତେଟା ଆନନ୍ଦ ଏବଂ ଖୁସି ଲାଗେ ତାହା ମୁଁ ଲେଖିପାରୁ ନାହିଁ। କାହିଁକି ଯେ ମୁଁ ଏକଥା କହୁଛି। ପରେ ମୁଁ ଅନ୍ୟ ସ୍କୁଲ ସମ୍ପର୍କରେ ଆସିଛି, ସେହିଠି ମଧ୍ୟ ଝିଅ ଥିଲେ, ଡ୍ରାମା ଲାଇନ୍‌ରେ ଯାଇଛି। ସେଠି ମଧ୍ୟ ତ ଝିଅ ଥା'ନ୍ତି, ତେବେ ଏହିଠାରେ ମୁଁ ମନେକରେ ସେହି ଚମ୍ପତିମୁଣ୍ଡା ଭଉଣୀ ଏବଂ ଏହି ଝିଅ ମଧ୍ୟରେ ଫରକ କାହିଁକି ଆସୁଛି ? ଏହି ଯେଉଁ ଫରକ୍‌ର ଅର୍ଥ କ'ଣ ? ଯେତେବେଳେ ମୁଁ ଚାକିରି କରୁଥିଲି ବିଦେଶରେ କ୍ଲବ ମାନଙ୍କରେ ମଧ୍ୟ ଅନେକ ଝିଅଙ୍କର ସାଙ୍ଗରେ ସାଙ୍ଗସାଥି ଥିଲୁ। କିଛିକ୍ଷଣ ପରେ ସେହି ସବୁରି ଆଉ ମନେ ପଡୁନାହିଁ। ବହୁତ ବର୍ଷପରେ ମଧ୍ୟ କାହିଁକି ସେହି ସମ୍ପର୍କ ତୁଟୁ ନାହିଁ। ଏ ଯେଉଁ ଆତ୍ମୀୟତା କିଏ ଦେଲା କେଉଁଠୁ ପାଇଲି ? ଏହାର ପ୍ରଚାରକ କିଏ ? ଏହିସବୁ ପ୍ରଶ୍ନର ଉତ୍ତର ଅବଶ୍ୟ ମୁଁ ପରେ ଦେବି ଗୋଟିଏ ପଦରେ। ମୋର ମନେହେଉଛି ଥରେ ଚିତ୍ତଭାଇଙ୍କର ସାଙ୍ଗରେ କଟକ ଯାଇଥିଲି। ଆମେ ରେଭେନ୍‌ସା କଲେଜରେ ରହୁ କାହିଁକି ନା ସେଠି ତାଙ୍କ ଗ୍ରାମର ଦେବାର୍ଚ୍ଚନ ଦାଶ ବୋଲି ଜଣେ ପଢୁଥାନ୍ତି। ସେ ଅନେକଥର ଚମ୍ପତିମୁଣ୍ଡାକୁ ଆସିଥିଲେ। ସେହି ପାଖରେ ଦକ୍ଷିଣ ଭାରତ ହୋଟେଲ୍ ଅଛି। ଆମେ ସେଠି ଜଳଖିଆ କରୁ। ହଠାତ୍ ଗୋଟିଏ ଟେବୁଲ୍‌ରେ

ଦୁଇଜଣ ସ୍ତ୍ରୀପୁରୁଷ ବସି କ'ଣ ନାସ୍ତା ଖାଉଥାନ୍ତି । ମୁଁ ତାହାଦେଖି ଖୁବ୍ ଜୋର୍‌ରେ ହସି କହିଲି, ଦେଖ ଚିତ୍ତଭାଇ କିପରି ସ୍ୱାମୀ, ସ୍ତ୍ରୀ ଏକାଠି ଖାଉଛନ୍ତି, ଆମ ଆଡ଼େ ଏପରି କେବେ ଦେଖିନାହିଁ ବା ଜାଣିନାହିଁ । ହଠାତ୍ ଚିତ୍ତଭାଇ ମୋ ମୁହଁରେ ତାଙ୍କ ହାତ ଦେଇ ତୁନି ହେବାକୁ କହିଲେ । ସେତେବେଳେ ଏ ବିଷୟରେ ମୋର ଧାରଣା ନଥିଲା । ବାହାର କଟ୍‌ସିକୁ ନେଇ ସେ ଯାହା କହିଲେ ବର୍ତ୍ତମାନ ସେହି ଭାବନା ଉପରେ ମୋର ବେଶ୍ କେତେକ ଜ୍ଞାନର ପ୍ରୟୋଜନ ହୋଇପଡ଼ିଛି ।

ଆଉଥରେ ଯୋରନ୍ଦାଗାଦୀରୁ ବିଶ୍ୱନାଥ ବାବା ଭାଇଙ୍କୁ ପତ୍ର ଦେଇ ଯାଇଥିଲେ । ମାଘ ମାସ ଶୁକ୍ଳପକ୍ଷ ସପ୍ତମୀରୁ ପୂର୍ଣ୍ଣିମା ଯାଏ ଯୋରନ୍ଦାରେ ମେଳା ହୁଏ । ଆମେ ସେଠାକୁ ଚିତ୍ତଭାଇଙ୍କର ସଙ୍ଗେ ଭାଇଭଉଣୀ ମିଶି ପ୍ରାୟ ୧୮ଜଣ ଯାଇ ସେଠାରେ ସାତ ଦିନ ମହିମା ଧର୍ମର ଯାତ୍ରା ଦେଖିବାକୁ ରହିଲୁ । ଓଡ଼ିଶାରେ ମହିମାଧର୍ମର କେତେ ଖଣ୍ଡ ପୁସ୍ତକ ଚିତ୍ତଭାଇ ତାଙ୍କର କଲେଜ ସମୟରେ ଲେଖିଥିଲେ । ତେଣୁ ସେଠାକାର ବଡ଼ବାବାମାନେ ଗୋଟିଏ ବଖରା ଘର ସହିତ ୭ ଦିନର ସବୁ ଖାଇବାଖର୍ଚ୍ଚ ଆମକୁ ଦେଇଥିଲେ ଏବଂ ପ୍ରତ୍ୟେକ ସନ୍ଧ୍ୟାରେ ପୁଡ଼ି ଏବଂ ବୁନ୍ଦିଆ ଭୋଗ ଦେଉଥିଲେ । ଦିନେ ମୁଁ ବୁନ୍ଦିଆ କୋଡ଼କାରୁ ବୁନ୍ଦିଆ ଖାଉଥାଏ ଏବଂ ସେ କହିଲେ ଗୋଳମାଳ କରୁଥାଏ । ଶେଷରେ ଚିତ୍ତଭାଇ କହିଲେ, ତାକୁ ଖାଇବାକୁ ଦିଅ କାରଣ ସେ କାହାର କଥା ମାନିବ ନାହିଁ । ଆମେ ପରେ ଖାଇବା । ସେଠି ବୁଲିବା ବେଳେ ଭାଇ ମୋର ହାତକୁ ସର୍ବଦା ଧରିଥାନ୍ତି, ଛାଡ଼ନ୍ତି ନାହିଁ । କାଳେ କୁଆଡ଼େ ଲୋକ ଗହଳିରେ ହଜିଯିବି । ମୁଁ ଟିକିଏ ବଦ୍‌ମାସ ଥିଲି । ପରେ ଯେତେବେଳେ ଏକଥା ସବୁ ମନେପଡ଼େ ମୁଁ ସେହି ଜ୍ଞାନ, ସେହି ଆଦର୍ଶ, ସେହି ପ୍ରେମ, ଏତେ ଉଚ୍ଚକୋଟୀର କରିଦେଇଛି ଯେ ମୋର ପୁଣି ସେହି ସ୍ଥାନକୁ ସେହି ସମୟକୁ ଫେରି ଯିବାକୁ ଇଚ୍ଛା ହେଉଛି । ରବିବାର ଦିନ ଅନୁଗୋଳ ବଜାର ଗଲେ, ଆମର ଦୁଇଟା ଗାଡ଼ି ବଡ଼ିଭୋର୍‌ରୁ ବଜାର ନିମନ୍ତେ ଆମେ କେତେ ଭାଇମାନେ ବଜାରକୁ ଯାଇ ସେଠାରେ ବଜାର ସଉଦା ଆଣିବାକୁ ଚିତ୍ତଭାଇଙ୍କ ଅପେକ୍ଷାରେ ଥାଉ । ସେଠାରେ ଗୋଟିଏ ଚଣାବାଲା ମଧ୍ୟ ସେହି ଅପେକ୍ଷାରେ ଥାଏ । ସେ କାହାକୁ ଚଣା ଦିଏ ନାହିଁ । ମୁଁ ଥରେ ପଚାରିଲି ଭାଇ ତୁମେ ଚଣା କାହିଁକି ବିକୁ ନାହଁ ? ସେ କହିଲେ ଯେ ପ୍ରଥମେ ଚିତ୍ତଭାଇଙ୍କୁ ଚଣା ନଦେବାଯାଏ ବିକ୍ରି କରିବି ନାହିଁ । ସେହି ସମୟରେ ଏକଥା ଉପରେ ଯେତେ ଗହିରି ଭାବରେ ଆନ୍ଦୋଳନ କରୁଥାଏ । ମାତ୍ର ତା'ର ଅର୍ଥ ମୁଁ ବୁଝି ପାରୁ ନଥାଏ । ଯେତେବେଳେ ବର୍ତ୍ତମାନ ସେହି ସାଧାରଣ କଥା ମନେ ପଡ଼େ ମୁଁ ତର୍ଜ୍ଜମା କରି ଦେଖୁଛି ସେହିଟା କ'ଣ ? ଏହିଟା ସାଧାରଣ କଥା ନୁହେଁ ।

ସେହି ଅନୁଗୋଳରେ ବାଜିରାଉତ ଛାତ୍ରାବାସ ଅଛି । ସେଇଠି ଆମ ପରି ଗରିବ ପିଲାଏ ପାଠ ପଢୁଥାଆନ୍ତି । ସେଠାକୁ ମୁଁ ଅନେକଥର ଯାଇଛି ଏବଂ ସେଠାକାର ଗତିରୀତି ଦେଖିଛି । ସେ ମଧ୍ୟ ଗୋଟିଏ ଅଦ୍‌ଭୁତ । ସେହି ସମୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ତାଙ୍କର ସ୍ତ୍ରୀ (ନୁମା) ମାଳତୀ ଚୌଧୁରୀ ସେହି ଛୁଆଙ୍କର ସାଙ୍ଗରେ, ବଗଡ଼ା ଭାତ, ସାଧାରଣ ଯାହା ମିଳୁଥିଲା ଡ଼ାଲି, ତରକାରୀ ଖାଇ ସବୁ ଛୁଆଙ୍କୁ ନିଜ କୋଳରେ ଶୁଆଇ, ଦୁଃଖ, ସୁଖର ଭବିଷ୍ୟତ ଚେତନା, ମୁଣ୍ଡରେ ବୋହି ଯେଉଁ କଷ୍ଟ କରିଥିଲେ, ତାହା ଏହି କଳିଯୁଗ ମଣିଷ ଦ୍ୱାରା ହୋଇଥିଲା । କେବେ କେହି ବିଶ୍ୱାସ କରିବେ ନାହିଁ । ଏଗୁଡ଼ାକ କଳ୍ପନା ବାହାର କଥା । ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିନା ସିକ୍ୟୁରିଟିରେ ଏକା ଏହି ଚମ୍ପଡିମୁଣ୍ଡା ଏବଂ ଏହି ସ୍ଥାନ ମାନଙ୍କୁ ଆସି ଆମ ସାଙ୍ଗରେ ତଳେ ବସି ଖାଉଥିଲେ । ଯେ ଦେଖିନାହିଁ ସେ କେବେ ବିଶ୍ୱାସ କରିପାରିବ ନାହିଁ । ତାଙ୍କ ପାଇଁ କ'ଣ ସ୍କୁଲ ନଥିଲା ବା ପଇସା ନଥିଲା । ମାତ୍ର ତାଙ୍କର ଝିଅ (ତନୁ) କୃଷ୍ଣା ମୋର ଉପର ଦୁଇଶ୍ରେଣୀ ଆଗରେ ଆମ ସାଙ୍ଗରେ ପଢୁଥିଲା । ଏସବୁ କ'ଣ ? ଏହା ଭାବିବା ସହଜ କଥା ନୁହେଁ । ଏତେବଡ଼ ଲୋକଙ୍କ ଝିଅ ଆମପରି ଗରିବ ପିଲାଙ୍କର ସହିତ ପଢ଼ିବା ଅତି ଚମତ୍‌କାର କଥା ।

ଜଙ୍ଗଲରେ ବା ଅନ୍ୟ ସ୍ଥାନମାନଙ୍କରେ ଆମେ ଅନେକ ଗଛ, ବୃକ୍ଷ, ଲତା ଦେଖିଥାଉ । କିନ୍ତୁ ମାଁଲତା ଦେଖିବାକୁ ମିଳେ ନାହିଁ । ଏହି ମାଁଲତା ରୂପରେ ନିଜେ ମାଳତୀ ମାଁ ଆସି ଅନେକ ସନ୍ତାନର ମାଁ ହୋଇ ପାରିଥିଲେ । ବହୁତ ବର୍ଷର ତପସ୍ୟାରେ ନନ୍ଦରାଣୀ ଗୋଟିଏ ପୁଅକୁ ପାଳନ ପୋଷଣ କରି ସୃଷ୍ଟିର ମାଁ ହୋଇଛନ୍ତି । ସେହିପରି ଏ ଯେ ଆମର ମା (ମାଳତୀ) କେତେକ ଶିଶୁର ଜନନୀ ଏହା ଲେଖାରେ ପ୍ରମାଣ କରିହେବ ନାହିଁ । ଆତ୍ମାର ସହିତ ଯଦି ତୁଳନା କରାଯାଏ ତେବେ ଏହି ଦର୍ଶନ ଏବଂ ସମ୍ମାନର ମାହାତ୍ମ୍ୟ ବୁଝିହେବ ।

ଅନେକ କୃଷ୍ଣ ଜନ୍ମ ନେଇଥିଲେ ମଧ୍ୟ ଏହି ସମୟର ନବକୃଷ୍ଣ ଚୌଧୁରୀ ଜଣେ ମହାପୁରୁଷ, ତାଙ୍କର ଚରିତ୍ର ଢଙ୍ଗ ରଙ୍ଗ ଉପରେ ସେତେବେଳେ ଗୋଟିଏ ଅଣୁର ମଧ୍ୟ ଆମର ଜ୍ଞାନ ନଥିଲା । କାରଣ ବଡ଼ ଲୋକଙ୍କର ମାହାତ୍ମ୍ୟ ପରେ ବୁଝାଯାଇଥାଏ ।

ଏ ଯେଉଁ ଦୁଇଟି ମୂର୍ତ୍ତୀର ଜନ୍ମ ଅବଶ୍ୟ ମଣିଷ ଶରୀର ନେଇ ଜନ୍ମ ହୋଇଥିଲେ । କିନ୍ତୁ ପ୍ରକୃତରେ ଏମାନେ ମଣିଷ କି ? ଏମାନେ ଆମ ପାଇଁ ବହୁତ କିଛି କରି ଯାଇଥିଲେ ମଧ୍ୟ ଆମ ମାନଙ୍କର ସମସ୍ତଙ୍କର ଭାଗ୍ୟ କ'ଣ ବଦଳି ପାରିଲା କି ? ଆମେ ସମସ୍ତଙ୍କର ମନର ଧାରଣା ନିଶ୍ଚିନ୍ତ ଭାବରେ ଅଲଗ, ଅଲଗ, ଯାହା ଭାଗ୍ୟରେ

ଯାହା ପଢ଼ିଲା ସେଥିରେ ସେ ତୃପ୍ତ ହୋଇ ୨୪ ବର୍ଷ ପରେ ତାଙ୍କଠାରୁ ବିଛିନ୍ନ ହୋଇ ନିଜର କର୍ମକୁ ଆଦରି ଚଳିବାକୁ ହେଲା । ଏମାନଙ୍କର ଚରିତ୍ରକୁ ମୋ ପରି ସାଧାରଣ ବ୍ୟକ୍ତି ସମାଲୋଚନା କରିବା ଅତି ମୂର୍ଖାମୀର ପରିଚୟ ହେବ । ତଥାପି ମୁଁ କହିବି ମାଁଙ୍କର ଟିକିଏ ଅଲଗା ଧରଣର ଘମଣ୍ଡ ଥିଲା । ଯାହା ପ୍ରକାଶ କରିବା ଆମର ଜ୍ଞାନର ବାହାରେ । ନବବାବୁ ଯଦିଓ ଏତେ ଜ୍ଞାନୀ, ଏତେ ମାନି, ଏତେ ଧନୀ ସତରେ ମାଳତୀ ମାଁକୁ କହିବାର ଶକ୍ତି ନାହିଁ । କ୍ଷମାକରିବ, ମୁଁ ଛୋଟ ତୁଣ୍ଡରେ ସମାଲୋଚନା କରୁନାହିଁ । ଏସବୁ ମୁଁ ଏଠି ଯେତେବେଳେ ମନେହୁଏ, ତେବେ ଅନୁଭବ କରିପାରୁଛି । ଚିତ୍ତଭାଇଙ୍କର ସହିତ ଆଉ ୪/୫ ଜଣ ଗୁରୁଭାଇ ଥିଲେ ପାଠ୍ୟକ୍ରମର ବିଷୟବସ୍ତୁ ଭାଗଭାଗ କରି ଆମକୁ ଶିକ୍ଷା ଦେଉଥିଲେ । ସେ ମଧ୍ୟରୁ ଜଣେ ଗୁରୁଜୀ ଆମ ସମ୍ବଲପୁରିଆ ପିଲାଙ୍କୁ ଟିକେ ଆକ୍ଷେପ କରିବା ତାଙ୍କର ଗୋଟିଏ ଅଭ୍ୟାସ ଥିଲା । ସେ କହୁଥିଲେ ସରକାର ଦେଉଛି, ଖାଇଯାଅ, ଆଦି କହନ୍ତି । ଯାହାଭି ଗୁରୁଜୀ ଥିଲେ ସବୁଠୁ ମୂଲ୍ୟବାନ ମଣିଷ ଥିଲେ ଚିତ୍ତଭାଇ ।

ସେ ସମୟରେ ମୁଁ ପୁରାଣ ଆଦି କଥା ବେଶୀ ଜାଣୁ ନଥାଏ । କିନ୍ତୁ ଚିତ୍ତଭାଇ ଆମକୁ ଗୀତା, ଉପନିଷଦ, ଯୋଗ ଆଦି ବହୁତ ବିଷୟରେ ଜ୍ଞାନ ଦେଇଛନ୍ତି । କିନ୍ତୁ ସେତେବେଳେ ମୁଁ ବେଶୀ ଗ୍ରହଣ କରିପାରୁ ନଥାଏ । ସେହି ବିଷୟଗୁଡ଼ାକ ମୋର ଏବେ ଯେତେବେଳେ ମନେପଡୁଛି ମୁଁ ଅତି ଖୁସିରେ ଅନୁମାନ କରିପାରୁଛି । ସେ ଜଣେ ଜ୍ଞାନର ଆଧାର ଥିଲେ, ତାକୁ ମୋର ହଜମ କରିବାର ଶକ୍ତି ନଥିଲା । ମୁଁ ଚିତ୍ତଭାଇଙ୍କୁ ଚିହ୍ନିପାରି ନଥିଲି ଯେ ଏତେ ଜ୍ଞାନୀ ଏବଂ ମଣିଷ ତିଆରି କରିବାର ଜଣେ ବଡ଼କାରିଗର । ପୁରାଣରୁ ଆମେ ଭଗବାନଙ୍କର ବିଷୟରେ ଅନେକ ପଢୁଛୁ ବା ଶୁଣୁଛୁ । ଯଥା- ରାମାୟଣ, ମହାଭାରତ, ଭାଗବତ ଆଦି ଅଷ୍ଟାଦଶ ପୁରାଣରୁ ପରମାର୍ଥ ଶକ୍ତି ଏବଂ ସୃଷ୍ଟିରେ ଯେଉଁ ଉପଦେଶ, ଜ୍ଞାନ, ଜୀବଜଗତ ତିଆରି ଆଦି । ଦେବକୀ ଗର୍ଭରୁ ଭଗବାନ କୃଷ୍ଣ ଜନ୍ମ ନେଇ ଗୋପରେ ଯଶୋଦା କୋଳରେ ବଢ଼ିଲେ ଏହି ମାଁ ମାନଙ୍କର ପୂର୍ବ ଜନ୍ମର ତପସ୍ୟା ଯୋଗୁଁ ଭଗବାନଙ୍କୁ ପାଇଲେ । ଭଗବାନ କୃଷ୍ଣ ଗୋପରେ ଯେଉଁ ଲୀଳା କରିଛନ୍ତି ତାହା ଅଦ୍ଭୂତ । ଯେଉଁ ମାନଙ୍କୁ ନେଇ ଏସବୁ କରିଛନ୍ତି, ସେମାନେ ଭଗବାନଙ୍କୁ ଚିହ୍ନିଥିଲେ ? ଯେଉଁମାନେ ପରମଜ୍ଞାନୀ ଓ ଭକ୍ତ ସେମାନେ କେବଳ ଚିହ୍ନିପାରିଥିଲେ । ସମସ୍ତେ ଯଦି ଚିହ୍ନିଥାନ୍ତେ ତେବେ ସେହି ସମୟରେ ସୃଷ୍ଟିର ଆକାର ଅଲଗା ହୋଇଯାଇଥାନ୍ତା । କିନ୍ତୁ ଲୀଳାମୟ ଭଗବାନ କରାଇ ଦିଅନ୍ତି ନାହିଁ । ଠିକ୍ ସେହିପରି ଆମେ ଯାହା ଭାଇଭଉଣୀ ଚମ୍ପତିମୁଣ୍ଡାରେ ପଢୁଥିଲୁ ଠିକ୍ ସେହି ଗୋପପୁର ଅବସ୍ଥା । ଚିତ୍ତଭାଇଙ୍କୁ ଯେଉଁମାନେ ଚିହ୍ନିପାରିଥିଲେ ସେମାନେ ଜ୍ଞାନ,

ଧ୍ୟାନ, ମାନରେ ଉପରକୁ ପହଞ୍ଚି ପାରିଥିଲେ । ଠିକ୍ ସେହିପରି ରାମାୟଣରେ ରାମଙ୍କୁ ଯେଉଁମାନେ ଚିହ୍ନିପାରିଲେ ତାଙ୍କର ମୁକ୍ତି ହୋଇଛି । ସେହିପରି ଚମ୍ପତିମୁଣ୍ଡା ଗୋଟିଏ ଅବତାରର ନିର୍ଦ୍ଦେଶରେ ଗଠିତ କରିଥିଲା କେତେ ଜଣ ପୁଅ, ଝିଅଙ୍କ ମଧ୍ୟରୁ ସେ ଭିତରୁ ମୁଁ ଜଣେ ହତଭାଗ୍ୟ ସେହି ମାଟିର ଗୁଣ ବୁଝିପାରୁ ନଥିଲି । ସେହିମାଟି, ସେହି ପବନ ସେହି ସଂପର୍କରେ କେତେ ଜଣ ଭାଇ ଗଢ଼ିନେଲେ ତାଙ୍କର ଜୀବନ ବାହିକା, ଅବଶ୍ୟ ସେହିମାନଙ୍କୁ ତାହାର ଦରକାର ମଧ୍ୟ ଥିଲା । ସଂସାରରେ ଜୀବନ ଧାରଣ କରିବା ପ୍ରାଣୀ ପକ୍ଷେ ଏକ ଅଦ୍ଭୁତ ପରିସ୍ଥିତି । ଏ ଭିତରୁ ଅନେକ ଭାଇ ତାଙ୍କର ନିଜସ୍ୱ ଅଭିମାନ ନେଇ ଅନ୍ୟଭାବେ ସୃଷ୍ଟିକଲେ ତାଙ୍କର ଜୀବନୀ ।

ମୋ ଜୀବନରେ ଦୁଇ, ତିନି, ଥର ଶିକ୍ଷକତା କରିବାର ଆଦେଶ ପାଇଥିଲି । ମୁଁ ତାହା ଚାହିଁଲି ନାହିଁ । ଏହିଟା କେବଳ ପେଟ ପୋଷି ହେବାର ଗୋଟିଏ ଜୀବନ । ଶିକ୍ଷକ ହେବାର ଯାହାର ଯୋଗ୍ୟ କ୍ଷମତା ନଥିବ ସେ ଯଦି ଏ କର୍ମ କରେ, ସେ ନିଜେ ବେଇମାନ ଏବଂ ଦେଶର କେତେକ ଭବିଷ୍ୟତର ସନ୍ତାନକୁ ବରବାଦ୍ କରିବାର ଯନ୍ତ୍ରୀ । ନଷ୍ଟ କରିବା ତା'ର ଲକ୍ଷଣ । ତେଣୁ ମୁଁ ଏହା ପସନ୍ଦ ନକରି ମୁଁ ଗୋଟିଏ ଅଲଗା ରାସ୍ତା ବାଛି ନେଲି । ଚିତ୍ତଭାଇଙ୍କର ବିଦେଶ ଯାତ୍ରାର କଥା ଶୁଣିଛି । ତେଣୁ ମୁଁ କିପରି ସାରା ପୃଥିବୀ ଦେଖିପାରିବି, ଏହେଲା ମୋ ମନର ସ୍ପୃହା । କିଛିବର୍ଷ ପୃଥିବୀର ଅନେକ ଦେଶ, ଅନେକ ସ୍ଥାନ ଏବଂ ପ୍ରତ୍ୟେକ ସ୍ଥାନର ସେଠି ବାସ କରୁଥିବା ମଣିଷ ସମାଜର ଭାଷା, ନିଶା, ଭୂଷା ଆଦି ଏସବୁ ମୁଁ ଅନୁଭବ କରି ମୋର ଜୀବନ ଆଶା ପୂରଣ କରିପାରିଲି ।

ଏହି ଅଳ୍ପ ବର୍ଷ ଭିତରେ ସାରା ସୃଷ୍ଟିର ଅତି ଶୀଘ୍ର ପରିବର୍ତ୍ତନ ଘଟିଯାଇଛି । ଯାହାକି ବର୍ଷ ବର୍ଷ ଧରି ହୋଇପାରୁ ନଥିଲା । ଆଜିର ସମୟରେ ଯଦି ମୁଁ ବିଦେଶ ଯାତ୍ରା କରନ୍ତି ତେବେ ସେଠି ରହିଯିବାର ପ୍ରୟାସ କରିଥାନ୍ତି । କିନ୍ତୁ ଏହି ଅଳ୍ପ ବର୍ଷ ଭିତରେ ମୁଁ ଯାଇଥିବା ବେଳେ ଘର, ବାପା, ମାଁ ପ୍ରତି ଯେଉଁ ଆତ୍ମୀୟତା ଥିଲା, ବର୍ତ୍ତମାନ ପ୍ରାୟ ତାହା କମ୍ ଦେଖାଯାଉଛି । ସଭ୍ୟତାର ପରିବର୍ତ୍ତନ ମଧ୍ୟରେ ଆତ୍ମୀୟତାର ପରିବର୍ତ୍ତନ ହୋଇଯାଇଛି । ବର୍ତ୍ତମାନ ପୁଅ ଝିଅ ମାନଙ୍କର ବଞ୍ଚିବାର ମାନ ବଦଳିଯାଇଛି ।

ଚମ୍ପତିମୁଣ୍ଡାର କିଛିଦିନର ଖାଦ୍ୟ, ବ୍ୟବହାର, ଜ୍ଞାନ କୌଶଳ ଏବଂ ମୋର ଚିତ୍ତଭାଇଙ୍କର ଆତ୍ମୀୟତା ଯୋଗୁଁ ମୁଁ ଆମ ଗ୍ରାମରେ ଗ୍ରାମପଞ୍ଚାୟତର ପ୍ରଥମ ସରପଞ୍ଚ, ତା'ପରେ M.E. School, ତା'ପରେ High School, ତା'ପରେ ଜଗନ୍ନାଥ ମନ୍ଦିର, କେନାଲ, ରାସ୍ତା ଆରମ୍ଭ କରି ଶେଷ କରିଛି ।

ଏ କାମମାନ କିପରି ଭଲ ଭାବରେ ହେବ ଏବଂ ଗ୍ରାମର ଉନ୍ନୟନ କାମ ହେବ, ସେହି ଚିନ୍ତା ଘାରିଥିଲା । ତେଣୁ ମୁଁ ଉନ୍ନତ କ୍ଲବ୍ କରି ଗୋଟିଏ ଉଚ୍ଚକୋଟୀର ଅପେରା ପାର୍ଟି ଆରମ୍ଭ କରି ତାକୁ ୨୦/୨୫ ବର୍ଷ ଜୀବନ୍ତ କରିପାରିଲି । ଆମ ଏ ଅଞ୍ଚଳରେ ମୁଁ ବଡ଼ଲୋକ ନହେଲେ ମଧ୍ୟ ମୁଁ ଖୁବ୍ ଭଲଭାବରେ ଅଛି ।

ସ୍ୱାର୍ଥପର ପ୍ରାଣୀମାନଙ୍କର ପକ୍ଷରେ ଏସବୁ କାମ ଅସୁବିଧା ହେବ । ତେଣୁ ମୁଁ ଯଦି କୌଣସି ଚାକିରୀ କରିଥାନ୍ତି ତେବେ ମୋ ଗାଁର ମୋର ମାଟିର ସବୁକାମ କରିପାରି ନଥାନ୍ତି । କିଛିଟା ସରକାର ଦରମା ପଇସାରେ ଆବଦ୍ଧ ହୋଇ ସ୍ୱାର୍ଥବାଦୀ ହୋଇଯାଇଥାନ୍ତି । ମୋତେ ସ୍ୱାର୍ଥ ଆବଦ୍ଧ କରିପାରିଲା ନାହିଁ । ଚମ୍ପତିମୁଣ୍ଡାର ମାଟିରେ, ଚିତ୍ତଭାଇଙ୍କର ପାଟିରେ, ଯାହା ମୁଁ ପାଇଛି ଏହିଟା ଏଯୁଗପାଇଁ ଅସୁବିଧା । କାରଣ ବର୍ତ୍ତମାନ ଭାରତ ୬୩ ବର୍ଷ ସ୍ୱାଧୀନତା ପରେ ମଧ୍ୟ ସ୍ୱାଧୀନତାର ମୂଲ୍ୟ କେହି ବୁଝିବାକୁ ଚେଷ୍ଟା କରୁନାହାନ୍ତି । ସେହି ସମୟରେ ଶିକ୍ଷାରେ ଯେଉଁ ଜୀବନଥିଲା ତାହା ଖୋଜିବାକୁ ଗଲେ ବର୍ତ୍ତମାନର ଏହି ଶିକ୍ଷାବିତ୍ ମାନଙ୍କୁ ପ୍ରଥମେ ଗୁଳି ମାରିଦେବା କଥା । ବର୍ତ୍ତମାନ ପରିବର୍ତ୍ତନ ଶିକ୍ଷା, ପରୀକ୍ଷାମୂଳକ ଶିକ୍ଷା ଦେଶର ମାନ ବିଦେଶରେ ପୁଣି ବିକ୍ରି କରିଦେବାକୁ ତାଙ୍କଠାରୁ ଏଡ଼ଭାନ୍ସ ଆଣୁଛି । ବର୍ତ୍ତମାନ ଶିକ୍ଷା ଗୋଟିଏ ବ୍ୟବସାୟିକ ହୋଇଯାଇଛି । ଏଶିକ୍ଷା କେତେଜଣ ସ୍ୱାର୍ଥବାଦୀ ମଣିଷଙ୍କ ଇଙ୍ଗିତରେ ଚଳିବାର ପ୍ରୟାସ କରିଛି ।

ନିଜର ଭରଣପୋଷଣ ପାଇଁ ଶିକ୍ଷାକୁ ବଦଳାବଦଳି କରି ଶିକ୍ଷାର ମାନଦଣ୍ଡକୁ ଏହି ଓଡ଼ିଶାର ଉଚ୍ଚସ୍ତରିଆ ଅଫିସର, ଶାସକ ଦଳ ଖାଇଗଲେ । ଶିକ୍ଷାକୁ ଚାକିରି ଅଭିମୁଖୀ କରି ବର୍ତ୍ତମାନ ଯେଉଁ ପରିସ୍ଥିତିରେ ଦେଶ ପଡ଼ିଛି ଖୁଦ୍ ଭଗବାନ୍ ଶାସନ କଲେ ମଧ୍ୟ ସୁଧାର କରିପାରିବେ ନାହିଁ ।

ଏହି ହେଲା ଶିକ୍ଷାର ଦୂରାବସ୍ଥା, ଦୁର୍ଦ୍ଦଶା ।

ବର୍ତ୍ତମାନ ଆମଦେଶ, ବିଦେଶର କପି କରିଚାଲିଛି, କିନ୍ତୁ ସମର୍ଥ ହୋଇପାରିବ କି ? ଏହି ଦେଶର ଶିକ୍ଷାପଦ୍ଧତି ପୁଣି ଯଦି ସେହି ଗୁରୁକୁଳାଶ୍ରମକୁ ନଯିବ ତେବେ ଏ ଦେଶର ସତ୍ତା ଅଳ୍ପଦିନରେ ପତନ ହେବ । ସୃଷ୍ଟି ଶିକ୍ଷା, ଦିକ୍ଷା, ନିଷ୍ଠା, କର୍ମ ଜୀବନଯାପନ, ବଞ୍ଚିରହିବାର ଆସ୍ଥା, ଏହି ସବୁରିମୂଳରେ ଯଦି ଆଧ୍ୟାତ୍ମିକ ଚେତନା ନରହେ । ଯେ ଯାହା ହେଲେ ସେହିଟା ପତନ ବୋଲି ମନେ କରିବାକୁ ହେବ । ଯେଉଁଥିରେ ଆଧ୍ୟାତ୍ମିକ ପୃଷ୍ଠଭୂମି ନାହିଁ ତାହାର ମୂଲ୍ୟ କିଛି ନାହିଁ ବା ତାହା ସାମାଜିକ, ମାନସିକ ଭିତ୍ତିର ରୁଦ୍ଧଦ୍ୱାର ବୋଲି ଭାବିବାକୁ ହେବ ।

ଚମ୍ପତିମୁଣ୍ଡା ଶିକ୍ଷାରେ ଆମକୁ ଚିତ୍ତଭାଇ ଯାହା ପଢ଼ାଇଥିଲେ ବା ଆମର ବଞ୍ଚିବା ରହିବା, ଖାଇବା, ସତ୍‌ଭାବନା, ଜାଗରଣ ମଣିଷ ଏବଂ ସମାଜକୁ ଭଲପାଇବା ଯାହା ଆମେ ଜାଣିଥିଲୁ, ଆମକୁ ଏଯୁଗର ଶିକ୍ଷାଭାବନା, ବେଇମାନୀ, ଦୂରନୀତି ଆଦି ସ୍ପର୍ଶ କରିପାରୁ ନଥିଲା। କାରଣ ସେହି ମାଟିରେ କାରିଗର ଆମକୁ ପିଟିପିଟି ତିଆରି କରି ଆମର ଭିତରେ ଏପରି ଶକ୍ତିଶାଳୀ ମେସିନ୍ ଭର୍ତ୍ତି କରି ଦେଇଥିଲେ ଯେ ସୃଷ୍ଟିର କୌଣସି ଅଣୁବୋମା ମଧ୍ୟ ଫୁଟାଇ ପାରିବନି। ଏହେଉଛି ସେ ଚିତ୍ତଭାଇଙ୍କର କଠିନ ପରିଶ୍ରମର ମୂଲ୍ୟ। ଚମ୍ପତିମୁଣ୍ଡାର ନାମକରଣ ବଦଳାଇ ତାକୁ (ସମ୍ପତିମୁଣ୍ଡା) ଦେଲେ ମଧ୍ୟ ଭଲ ହେବ।

ମୋର ଏହି ଲେଖା କେହି ପଢ଼ିଲେ ମଧ୍ୟ ଯାଏଆସେ ନାହିଁ। ମାତ୍ର ଭାଇ ପଢ଼ିଲେ ଭୟ ହେଉଛି, ସେ କାଳେ ମୋତେ ଖୋସାମଦିଆ କହିବେ କି ? ନା ସେ କହିପାରିବେ ନାହିଁ। କାରଣ ସେ ମନୋବୈଜ୍ଞାନିକ ମୁଁ ଯେତେବେଳେ ତାଙ୍କର ଛାତ୍ର ଏବଂ ମୁଁ ହୃଦୟର ସହିତ ତାଙ୍କର ପରିଭାଷା ଏବଂ ଭକ୍ତିମାର୍ଗରେ ବଢ଼ିପାରିଛି। ତାଙ୍କର ଛାତ୍ର ଘାସିରାମ ପ୍ରଧାନ ଏତେଟା ମିନ୍‌ମାଇଣ୍ଡେଡ୍ ବା ଛୋଟଲୋକ ନୁହେଁ। କାରଣ ତାଙ୍କଠାରୁ ମୁଁ ଯାହା ଶିକ୍ଷା ପାଇଛି ତାରି ଆଦର୍ଶରେ ମୁଁ ନିଜକୁ ଏତେ ବେଇମାନର ପରିଚୟ ଦେଇପାରିବି ନାହିଁ।

ମୁଁ ଲେଖୁ ଲେଖୁ ଲେଖିଛି ସିନା, କିନ୍ତୁ ମୋର ଲେଖିବାର ଶକ୍ତି ନାହିଁ, ଭାଷାସଂଯମ, ଶୈଳୀ ସଂଯମ ଆଦି ବିଷୟରେ ମୋର ଜ୍ଞାନ ନାହିଁ। କିନ୍ତୁ ମନଭିତର କୋହ ଏବଂ ଚେତନା, ମହତ୍ ଉଦ୍ଦେଶ୍ୟ ଲେଖାରେ ପ୍ରକାଶ କରିନପାରିଲି ସିନା, ମନର ଯୋଉଁ ବିଷୟରେ ଭଲଭାବରେ ମୋର ଧ୍ୟାନ ରହିଛି।

ଏଯାଏ ମୁଁ ବେଶୀ ନହେଲେ ମଧ୍ୟ କିଛିଟା ସମାଜ ଲାଗି ଚିନ୍ତା କରେ ଭାବେ, ଦୁଶ୍‌କୃତ କର୍ମରେ ମନଦୁଃଖ କରେ। ଚିତ୍ତଭାଇ ଓ ଚମ୍ପତିମୁଣ୍ଡା, ଏ ଯେଉଁ ସଂପର୍କ, ମଲାପରେ ଆର ଜନ୍ମରେ ଯଦି ମିଳିବ, ତେବେ ଆହୁରି ପୂଣ୍ୟବାନର ସମ୍ମାନ ପାଇଲି ବୋଲି ମନେ ହେବ।

ଆଜି ଟିଭିରେ ଟିକିଏ ଦେଖିବାକୁ ପାଇଲି ବାଜିରାଉତ ଛାତ୍ରାବାସରେ ୧୯୬୧ ସମିହାରେ ପଢୁଥିବା ଗୋଟିଏ ଝିଅ ତା' ନାଁ ହେଉଛି ତୁଳସୀମୁଣ୍ଡା। ତା'ର ସାକ୍ଷାତକାର ଦେଖିଲି ତା'ର ଯେଉଁ କାର୍ଯ୍ୟକଳାପ ଖୁବ୍ ଉଚ୍ଚକୋଟୀର। ଠିକ୍ ସେହିପରି ସେଠାକାର ଛାତ୍ରମାନେ ଗୋଟିଏ ଗୋଟିଏ କମାଣ। ନବବାବୁ, ନୁମା ଏ ଦୁଇମୂର୍ତ୍ତୀ ଯାହା କରିଛନ୍ତି ମୋର କଲମରେ ଲେଖି ବୁଝାଇ ପାରିବିନି। ଏ ମାନଙ୍କର ସ୍ୱାର୍ଥ ନିଜ

ପାଇଁ କିଛି ନାହିଁ । ପର ଦୁଃଖେ ଦୁଃଖୀ ହୋଇ ଯେଉଁ ସନ୍ତାନ ତିଆରି କରିଛନ୍ତ, ତାହା ଅତି ଦୁର୍ଲଭ କଥା ।

ସେହି ସମୟର ସେଠାରର ସମସ୍ତ ଗୁରୁଜୀ ଏବଂ ସମସ୍ତ ଭାଇ ଭଉଣୀମାନଙ୍କର ମୋର ପାଖରେ ଫଟ ନାହିଁ । ମାତ୍ର ମୋର ହୃଦୟରେ ସେହି ସମସ୍ତଙ୍କର ଫଟ ଷ୍ଟାଟ୍ ମୋର ଜୀବନକୁ ସ୍ପର୍ଶ କରି ପାରୁଛି । କାହିଁକି ଏସବୁ ମନେ ହେଉଛି ମୁଁ ଜାଣିପାରୁ ନାହିଁ । କେବଳ ଦୁଃଖ ଏହି ଯେ କେତେକ ଭାଇ ଅଛନ୍ତି ଏବଂ କେତେ ଗଲେଣି ତା'ର ଖବର ପାଇ ପାରୁନାହିଁ । ମନେ ହେଉଛି ସମସ୍ତଙ୍କୁ ଆଉ ଥରେ ଯଦି ଦେଖିପାରି ଏ ସଂସାରରୁ ପାର ହୁଅନ୍ତି । ତେବେ ପୂଣ୍ୟବାନ ମନେ କରନ୍ତି । ମୋର ମନରେ ଅନେକ ସମୟରେ ଚିନ୍ତା କରେ ଯେ ସେଠାକାର ଭାଇ ଭଉଣୀମାନେ, ମୁଁ ଯେପରି ମନେ କରୁଛି ସେମାନେ ଆମକୁ ମନେ ପକାଉଥିବେ କି ? ପୁଣି ଭାବେ ସେମାନେ ହୁଏତ ଉଚ୍ଚଧରଣର ବ୍ୟବସ୍ଥାରେ ଯଦି ଥିବେ, ତେବେ ତଳିଆ ଆମକୁ ଯାହାର କି ଆଧିପତ୍ୟ ବୋଲି ନାହିଁ କାହିଁକି ମନେ କରିବେ । ଏସବୁ ଯେତେବେଳେ ଭାବେ ନିଜକୁ ନିଜେ ଘୃଣା କରେ ଏବଂ ମନଟା ଛୋଟ ହୋଇଯାଏ । ପୁଣି ଦମ୍ଭ କରି ଗର୍ବ କରେ ଯାହାହେଲେ ଭି ଆମେ ଚିତ୍ତଭାଇଙ୍କ ଭବିଷ୍ୟତର ଅନୁକୂଳ । ମୁଁ ଭଗବାନଙ୍କୁ ପ୍ରାର୍ଥନା କରୁଛି ଯେ ମୋର ମଲାବେଳେ ଥରଟି ଏହି ଫଟଷ୍ଟାଟ୍ ମୋ ହୃଦୟରେ ଆଣିଦେବ ପ୍ରଭୁ ।

ବର୍ତ୍ତମାନ ପ୍ରାୟ ପ୍ରତ୍ୟେକ ସ୍କୁଲ ଆଦିରେ ବନ୍ଧୁମିଳନ ସମାରୋହ ପାଳିତ ହେଉଛି । ସେହି ସମାରୋହରେ ଦୀର୍ଘଦିନର ବନ୍ଧୁମିଳନ ଦ୍ୱାରା ଯାହା ଆରମ୍ଭ ଏବଂ ଶେଷହୁଏ ତାହା କେତେ ଆନନ୍ଦଦାୟକ; ତାହା କେବଳ ଅନୁଭବି ଜାଣିପାରିବ । ମୋର ବିଶେଷ ପ୍ରୟାସ ଶକ୍ତିହୀନ ହୋଇଯାଇଛି । ଚମ୍ପତିମୁଣ୍ଡାର ପରିବେଶର ଏତେ ଯେ କଳ୍ପନା ଆମର ବ୍ୟର୍ଥ ହୋଇପଡ଼ିଛି । ଥରଟିଏ ମଧ୍ୟ ଆମର ଏହି ବନ୍ଧୁମିଳନ ଅତି ଆବଶ୍ୟକ । ଏହି ସବୁରେ ଗତଜୀବନ ଦୁଃଖସୁଖର ସ୍ମୃତିକୁ ହୃଦୟଙ୍ଗମ କରି ନୂତନ ଭାବରେ ଭବିଷ୍ୟତ ଜୀବନ ସୁଦୃଢ଼ ଓ ଆକାଂକ୍ଷା ପରିପୂରକ ହୋଇପାରନ୍ତା ଏବଂ ଗତ ସ୍ମୃତିରେ ଯେଉଁ ଆନନ୍ଦ ମିଳନ୍ତା ତାହା ଭାଷାରେ ପ୍ରକାଶ କରିବା ଅସମ୍ଭବ । ସେହି ସୁଯୋଗ ବୋଧହୁଏ ଏ ଜୀବନରେ ନାହିଁ କାରଣ ଆମେ ଅତି ଅଭିମାନୀ ବା ଭୀରୁ ବ୍ୟକ୍ତିମାନେ ଅଛୁ ।

ଚମ୍ପତିମୁଣ୍ଡାର ହୃଦୟକୁ ଯାହା ସ୍ପର୍ଶ କରିଛି, ମୋ ପରି ଲେଖକ ତାହା ଭାଷାରେ ଫୁଟାଇ ପାରିବ ନାହିଁ । ବର୍ତ୍ତମାନ ମୁଁ ଏହି ଜ୍ଞାନ, ଭାଷା ବା ଆଦେଶଜନକ ପରିବେଶରେ ନାହିଁ । ବର୍ତ୍ତମାନ ଅତି ଆଉଳି ଏବଂ ନିଷ୍କ୍ରିୟ ପରିବେଶରେ ବନ୍ଧା ହୋଇ

ପଡ଼ିଛି । ଜୀବନର ସରସତା ନାହିଁ, କେବଳ ଜୀବନରେ ଇତିହାସକୁ ଇଛା କରୁଥିଲେ ମଧ୍ୟ ସେହି ସୁଯୋଗ ପାଇପାରୁନାହିଁ । ଏସବୁର ପୂରଣ ସକାଶେ ଭଗବାନଙ୍କର ଅନୁକମ୍ପା ଦରକାର ପଡ଼େ । ଭକ୍ତି କରିବାକୁ ଚାହିଁଲେ ମଧ୍ୟ ଭକ୍ତି ଦ୍ୱାରର କବାଟ ଏତେ ଯୋରଦାର ଯେ ଖୋଲିବା ପାଇଁ ଶକ୍ତି ନାହିଁ ବା ପାନା, ପାଲାସ୍ ନାହିଁ । ଏହି ପାନା ଦ୍ୱାରା ଅନେକ କବାଟ ଖୋଲିଛୁ, କିନ୍ତୁ ଆତ୍ମାର ଦ୍ୱାର ଖୋଲିବା ଲାଗି ବହୁତ କଷ୍ଟ କରିବାକୁ ପଡୁଛି । ତା'ପାଇଁ ଗୁରୁ ବା ନିର୍ଦ୍ଦେଶକ ମିଳୁନାହାନ୍ତି । ଯେଉଁ ଗୁରୁ ପାଇଥିଲୁ ଆଜିକୁ ଦୀର୍ଘଦିନପରେ ମଧ୍ୟ ଦେଖିବାକୁ, ଶୁଣିବାକୁ ମିଳୁନାହିଁ । ତେଣୁ ଜୀବନର ଶେଷ ମୁହୂର୍ତ୍ତରେ ଥରେଟିଏ ଦେଖା ପାଇଲେ ଏ ଜନ୍ମରେ ଏ ଜୀବନ ସାର୍ଥକ ହେବ ବୋଲି ମୁଁ ନିବେଦନ କରୁଛି । ସେହି ଗୁରୁ ଏବଂ ପରମାର୍ଥକୁ କୁଟୁମ୍ବ ପରିବେଶରେ ରହି ବର୍ତ୍ତମାନ ପରାଶ୍ରୟ ବନ୍ଧନ ଓ ନିକମା ହୋଇ ଯାଇଛି । ମାତ୍ର ମନରବଳ ହୃଦୟର ବଳ ଏବେ ବି ଯୋର୍‌ଦାର୍ ହୋଇ ରହିଛି । ଶରୀର ଓ ଆତ୍ମାର ଯେତେବେଳେ ଆନ୍ଦୋଳିତ ହେଉଛି । ସେତେବେଳେ ଶାରୀରିକ ଅକ୍ଷମତା ହେତୁ ହାର୍ ମାନିବାକୁ ପଡୁଛି । ମୋର ନିକମା ଜୀବନରେ ଏହାମୋର ଶେଷ ଲେଖା ଓ ଶେଷ ଆକାଂକ୍ଷା । କେବଳ ଏହାର ପୂରଣ କରିବେ ଖୁବ୍ ଦୂରରେ ଥିଲେ ମଧ୍ୟ ପରମାତ୍ମା ଓ ମୋର ଗୁରୁ ଚିତ୍ତରଂଜନ ଦାସ । -ନମସ୍କାର-

ପୁରାତନ ଛାତ୍ର<br>
ଚମ୍ପତିମୁଣ୍ଡା ଜୀବନ ବିଦ୍ୟାଳୟ,<br>
ଜମୁର୍ଡା, ବରଗଡ଼

□



ନଭେମ୍ବର-ଡିସେମ୍ବର ୧୯୫୭-୧୯୫୮

# ସମ୍ପାଦକ-ମଣ୍ଡଳୀ

ଶ୍ରୀ ହରିହର ମିଶ୍ର

ଶ୍ରୀ ବୈରାଗୀ ଚରଣ ପ୍ରଧାନ

ଶ୍ରୀ ନବଘନ ମଲ୍ଲିକ

ପ୍ରଚ୍ଛଦପଟ୍ଟ ଓ ଅନୁକୃତି

ଶ୍ରୀ ଅନିରୁଦ୍ଧ ମହାନ୍ତି

ରୂପସଜ୍ଜା

ଶ୍ରୀ ଦିବାକର ଶତପଥୀ

ଶ୍ରୀ ଅନିରୁଦ୍ଧ ମହାନ୍ତି

ଶ୍ରୀ ବିନୋଦ ରାଉତରାୟ

# "ବିକାଶ"ର ଦୁଃଖ

ଗତ ୧୮.୧୨.୧୯୫୭ ବୁଧବାର ସନ୍ଧ୍ୟାରେ କଟକ ଡ଼ାକ୍ତରଖାନାରେ ପଣ୍ଡିତ ଶ୍ରୀ ଲିଙ୍ଗରାଜ ମିଶ୍ରଙ୍କର ଦେହାନ୍ତ ହୋଇଯାଇଛି ।

ପଣ୍ଡିତ ମିଶ୍ରଙ୍କର ମୃତ୍ୟୁ ସମସ୍ତ ଓଡ଼ିଶାବାସୀଙ୍କ ପକ୍ଷରେ ଏକ ଅପୂରଣୀୟ କ୍ଷତି ବୋଲି କହିବାକୁ ହେବ । ସ୍ୱାଧୀନତା ଆନ୍ଦୋଳନ ଯେ କେବଳ ଏକ ରାଜନୈତିକ ଆନ୍ଦୋଳ ନୁହେଁ । ପଣ୍ଡିତ ମିଶ୍ର ତାଙ୍କର ଜୀବନର ନାନା କାର୍ଯ୍ୟକଳାପ ଦ୍ୱାରା ଆମକୁ ସୂଚାଇ ଦେଇଥିଲେ । ଓଡ଼ିଆ ଜାତୀୟତାର ସତ୍ୟବାଦୀ ଯୁଗ ଓଡ଼ିଶାର ବିବିଧ କ୍ଷେତ୍ରରେ ଏକ ନୂତନ ପରିବର୍ତ୍ତନର ପ୍ଲାବନ ଆଣିବାର ଉଦ୍ୟମ କରିଥିଲା । ସେହି ଯୁଗର ଅନ୍ୟତମ ପ୍ରତିନିଧି ହିସାବରେ ଶିକ୍ଷା, ସାହିତ୍ୟ, ସାଂବାଦିକତା ତଥା ସେବାକ୍ଷେତ୍ରରେ ପଣ୍ଡିତ ଲିଙ୍ଗରାଜ ଆପଣାର ଅନେକ ସହୃଦୟତା ଦେଖାଇ ଯାଇଛନ୍ତି ।

ଜାତୀୟତାର ରୋମାଣ୍ଟିକ୍ ପର୍ଯ୍ୟାୟ ସରି ଆସିବା ସଙ୍ଗେ ସଙ୍ଗେ ସେହି ପର୍ଯ୍ୟାୟର ଗୋଟିଏ ଗୋଟିଏ ଖୁଣ୍ଟ କ୍ରମେ ଖସି ପଡୁଛନ୍ତି । ଏ ଦେଶର ଆଧୁନିକ ମଣିଷ କ୍ରମେ ନିରାଟ ବାସ୍ତବତାକୁ ଆପଣାର ଧର୍ମ ବୋଲି ଗ୍ରହଣ କରିବାକୁ ଯାଉଛି । ହୁଏତ ଦିନେ ଯେତେବେଳେ ଏ ବାସ୍ତବତା ଆମକୁ ଚିଟା ଲାଗିବ, ଯେତେବେଳେ ରୋମାଣ୍ଟିକ୍ ଆଖିର ସମଗ୍ର ଦୃଷ୍ଟିରେ ପୁଣି ଆମେ ଜୀବନକୁ ଆବୋରି ଧରିବାକୁ ଚାହିଁବା, ସେତିକିବେଳେ ପୁଣି ଆମେ ସତ୍ୟବାଦୀଯୁଗ ଓ ତା'ର ପୁରୋହିତ ମାନଙ୍କୁ ଅଧିକ ସତ୍ୟ ଓ ନିକଟ ରୂପେ ଚିହ୍ନି ପାରିବା ।

ବିକାଶ ପଣ୍ଡିତ ମିଶ୍ରହ୍କର ମୃତ୍ୟୁରେ ଗଭୀର ଶୋକ ଅନୁଭବ କରୁଛି ଓ ତାଙ୍କର ପରିବାର ଲାଗି ସହାନୁଭୂତି ଜଣାଉଛି ।

# ସଂପାଦକୀୟ

## ସମସ୍ତେ ମିଳାମିଶା କଲେ ଯୁଦ୍ଧ ଲାଗନ୍ତା ନାହିଁ

ଯୁଦ୍ଧ ପ୍ରତି ମଣିଷର ଭୟ ଆଜି ପୃଥିବୀରେ ଏକ ପ୍ରଧାନ ଆଲୋଚନାର ବିଷୟ ହୋଇଛି । ଆମେ ଯୁଦ୍ଧକୁ ଡ଼ରୁଛେ କାହିଁକି ? ଏହାର ଆଲୋଚନା ଦରକାର । ବର୍ତ୍ତମାନ ସମସ୍ତେ କହୁଛନ୍ତି ଯେ ଯୁଦ୍ଧ ଯଦି ଲାଗେ ତେବେ ଆମେରିକା ଓ ଋଷମଧ୍ୟରେ ଲାଗିବ । ଏହାବି ଠିକ୍ କଥା । ଯେଉଁଠାରେ ହେଉ ଯେ କୌଣସି ଦୁଇଟି ଦେଶ ଯଦି ଯୁଦ୍ଧ ଲାଗନ୍ତି, କୌଣସି ଦେଶ ମଧ୍ୟ ଗୋଟିଏ ପଟ ଋଷିଆ ଓ ଆରପଟ ଆମେରିକା ନେବ । ସେ ଦୁଇ ଦେଶର ଧ୍ୱଂସ ହୋଇ ଯାଉ ମଧ୍ୟ ଏ ଦୁଇଦେଶ ଲାଗିବେ - ତୃତୀୟ ମହାଯୁଦ୍ଧ ସେଠାରେ ହିଁ ଆରମ୍ଭ ହେବ । ତେବେ ଏଥିରୁ ନିଷ୍କୃତିର ଉପାୟ ବର୍ତ୍ତମାନ ଆମେ ବିଚ଼ାର କରିବା । ପ୍ରତ୍ୟେକ ଦେଶର ପ୍ରଧାନମନ୍ତ୍ରୀ ଦେଶ ବିଦେଶର ରାଜନୀତି ଆଲୋଚ଼ନା କରି କହୁଛନ୍ତି ଯେ ଯୁଦ୍ଧ ଲାଗିଲେ ଆମେ ଧ୍ୱଂସ ହୋଇଯିବା । ଜବାହରଲାଲ୍ ନେହେରୁ କହନ୍ତି ଯେ ମାନବ ଧ୍ୱଂସ ହୋଇଯିବ । ପଞ୍ଚଶୀଳ ନୀତିହିଁ ଏକମାତ୍ର ରାସ୍ତା । ତାକୁ ମାନିଲେ ଆମର ବହୁ ଲାଭ ହୋଇ ପାରିବ । ପ୍ରକୃତରେ ଏହା ସତକଥା । ତଥାପି ପଞ୍ଚଶୀଳ ନୀତି ମଧ୍ୟରେ ଆହୁରି ଗୋଟିଏ ଅଭାବ ରହି ଯାଉଛି । ସମସ୍ତେ ଯେତେ ନିରପେକ୍ଷ ଭାବେ ରହିଲେ ବି ଆମ ମଧ୍ୟରେ କାହାରିକୁ ସନ୍ଦେହ ନ ରଖି ଚ଼ାଲିଲେ ବି ଗୋଟିଏ ଅଭାବ ପୂରଣ ହୋଇ ପାରିବ ନାହିଁ । ସେଇ କଥାଟି ହେଉଛି ଯେ ଯଦି ଆମେ ପୃଥିବୀର ପ୍ରତ୍ୟେକ ଯୁବକ, ନ ହେଲେ ବି ଅନେକ ଯୁବକ, ବିଭିନ୍ନ ଦେଶରେ ବୁଲିବାର ଅଧିକାର ପାଇବା, ଅର୍ଥାତ ସବୁ ଦେଶର ଲୋକମାନେ ଏହାକୁ ଅନୁମୋଦନ କରିବେ ଯେ ଆମେ ଆମର ପିଲାକୁ ବାହାରକୁ ପଠାଇବୁ । ଆମର ପିଲାମନେ ଆଉ ଆମରି ଦେଶରେ ଆବଦ୍ଧ ହୋଇ ରହିବେ ନାହିଁ । ପ୍ରତ୍ୟେକ ଦେଶରେ ମଣିଷ ଅଛନ୍ତି । ତାଙ୍କର ହୃଦୟ ଅଛି । ସେ ହୃଦୟ କେବେହେଲେ ନିଷ୍ଠୁର ହୃଦୟ ନୁହେଁ । ଦିନେ ନା ଦିନେ ତା'ର ପରିବର୍ତ୍ତନ ହୋଇ ପାରିବ । ମନେକର ଦଳେ ଆମେରିକାର ଯୁବକ ଋଷିଆରେ ବୁଲି ତାକୁ ଟିକିନିଖି କରି ଦେଖି ତାଙ୍କର ଦେଶକୁ ଫେରିଲେ । ସେହିପରି ଋଷିଆର ଦଳେ ଯୁବକ ଆମେରିକା ବୁଲି କରି ଆସିଲେ । ତେବେ ଏହା ସୁନିଶ୍ଚିତ ଯେ ଆମେରିକାର ପତ୍ର ପତ୍ରିକା ଯେଉଁ କୁତ୍ସାରଟନା ରୁଷ ନାଁରେ କରିବେ ତାହା ବନ୍ଦ କରି ଦେବ ଏଇ ଯୁବକଦଳ । ଋଷିଆରେ ବି ସେହିପରି ହୋଇ ପାରିବ । ସବୁ ଦେଶର ମଣିଷଙ୍କୁ ଏଇପରି ଯଦି ଆମେ ଚ଼ିହ୍ନି ପାରିବା, ତେବେ ଯାଇ

ଆମର ଭାଗ୍ୟ ପରିବର୍ତ୍ତନ ହୋଇଯିବ। ପୃଥିବୀରେ ଏପରି କେହି ରହିବେ ନାହିଁ ଯେକି ପର ଦେଶର କୁତ୍ସାରଟନା ସହ୍ୟ କରି ପାରିବ ଓ ବର୍ତ୍ତମାନ ଯେପରି ରୈଜନୈତିକ ଦଳର ନେତାମାନେ ବୁଲି ଆସୁଥିବାରୁ ପୃଥିବୀର ସବୁ ଜିନିଷକୁ ବଦଳଉଛନ୍ତି। ସବୁଠାରେ କର୍ତ୍ତା ହେଉଛନ୍ତି ! ସେଇପରି ଯୁବକମାନେ କର୍ତ୍ତା ହୋଇ ବାହାରିବେ। କେହି କେବେ ହେଲେ ପରଦେଶର ନିନ୍ଦା ଅପଯଶ ସହି ପାରିବ ନାହିଁ। ସବୁ ଦେଶ ମଧ୍ୟରେ ସୌହାର୍ଦ୍ଧ୍ୟ ବଢ଼ିବ। ତେବେଯାଇ ଆମେ ପୃଥିବୀରୁ ଯୁଦ୍ଧ ବନ୍ଦ କରିବାର ଆଶା ରଖିବା। ଆମେରିକା ବା ଇଂଲଣ୍ଡ ଋଷିଆ ବିରୁଦ୍ଧରେ ମତାଉଛି। ତାହା ଆଉ ହୋଇ ପାରିବ ନାହିଁ। କାହାରିକୁ ନମତାଇଲେ ଯୁଦ୍ଧ ହେବା ସମ୍ଭବ ନୁହେଁ। ଯୁଦ୍ଧ ପାଇଁ ଅନୁକୂଳ ହାଓ୍ୱା ଦରକାର। ମୋତେ ଯଦି ଜଣେ ଘୃଣା ନ କରେ। ତେବେ ସେ ଖୁସିରେ କ'ଣ ଯୁଦ୍ଧ କରିବ କି ? ମଣିଷ ମଣିଷକୁ ଆହୁରି ନିବିଡ଼ ଓ ବାସ୍ତବ ଭାବେ ଚିହ୍ନିବ। ତେବେ ଯାଇ ମଣିଷ ଭିତରୁ ସବୁପ୍ରକାର ବ୍ୟବଧାନର ସଂସ୍କାର ଚାଲିଯିବ। ଯୁଦ୍ଧର ଅବସାନ ଘଟିବ।

## ବୈଜ୍ଞାନିକ ଗବେଷଣା

ତା'ପରେ ବୈଜ୍ଞାନିକ ଗବେଷଣା। ବୈଜ୍ଞାନିକ ଗବେଷଣା ପାଇଁ ସବୁଦେଶ ଆଜି ଲାଗି ପଡ଼ିଛନ୍ତି। ଅନ୍ୟ ଦେଶର ବୈଜ୍ଞାନିକ ପାଇଁ ଆମର ଯେ କିଛି କର୍ତ୍ତବ୍ୟ ଅଛି, ଏକଥା ହୁଏତ କେହି ଜାଣନ୍ତି ନି, ଭାବିବାକୁ ମଧ୍ୟ ଆମକୁ ଡ଼ର ମାଡୁଛି। ଋଷିଆର ବୈଜ୍ଞାନିକ ଆବିଷ୍କାର ଆମକୁ ଆଶ୍ଚର୍ଯ୍ୟ କରିବ ଓ ଆମକୁ ମଧ୍ୟ ଲୋପ କରିବ। ମାତ୍ର ଋଷିଆ କାହିଁକି ଏ ଗବେଷଣା ଉପରେ ଏକ ଛତ୍ରାଧିପତି ହେବା ଏହାର କୌଣସି କାରଣ ଥାଇ ପାରେ କି ? ସବୁଦେଶ ସବୁଜାତି ମିଶି ଆମର ପୃଥିବୀର ଏପରି ଏକ ସଂଘ କରାଯିବ। ଯେଉଁଥିରେ ସବୁ ବୈଜ୍ଞାନିକ ତାଙ୍କର ଗବେଷଣା ଏକତ୍ର କରିବେ। ତେବେ ଯାଇ ଆମର ଅନେକ କଥା ହୋଇ ପାରିବ। ବୈଜ୍ଞାନିକ ଗବେଷଣା Negative ସ୍ତରକୁ ନ ଯାଇ Posative ସ୍ତରକୁ ଆସି ପାରନ୍ତା। ଛୋଟପିଲାଙ୍କର ଭାଙ୍ଗିବା ଉଜୁଡ଼ା ପ୍ରବୃତ୍ତି ଯାଇ ଗଢ଼ିବାର ସମୟ ବୈଜ୍ଞାନିକର ସେତିକିବେଳେ ଆସି ପାରନ୍ତା, ଆମେ ଏହାକୁ ନୂଆ ଭାବିଲୁ ଏକଥା ବି ନୁହେଁ। କାରଣ ଏକଥା ସତ୍ୟ ଯେ ଏ ଦିଗରେ ଅଧିକ କାମ ବି ଆରମ୍ଭ ହୋଇଗଲାଣି। UNESCO ଏ ବିଷୟରେ ବାଟ ଦେଖାଇଛି। UNESCOରେ ବର୍ତ୍ତମାନ ଏ କଥା ଚିନ୍ତାକରି ଠିକ୍ କରିଛନ୍ତି ଯେ ବିଶ୍ୱର ବୈଜ୍ଞାନିକମାନେ ସହଯୋଗ କଲେ ଏ ଗବେଷଣା ଏକତ୍ର ହୋଇ ପାରିବ। ବର୍ତ୍ତମାନ ୫୦୦୦ ଜଣ ବୈଜ୍ଞାନିକଙ୍କୁ ଏକାଠି କରି ଏପରି ଏକ ଗବେଷଣା ଆରମ୍ଭ

କରାଗଲାଣି। UNESCOକୁ ଆମେ ସ୍ୱାଗତ କରୁଛୁ ଯେ ସେମାନେ ଏ କାମରେ ଆଉରି ଅଗ୍ରସର ହୁଅନ୍ତୁ। ତେବେ ଏ ବିଶ୍ୱ ରକ୍ଷା ପାଇବ। ପୃଥିବୀର ସଂସ୍କୃତି ଆଜି ଶାସକଙ୍କ ହାତରେ। କିନ୍ତୁ ଏହାକୁ ତାଙ୍କ ହାତରୁ ଆଣି ସର୍ବ ସାଧାରଣଙ୍କୁ ଦେବାପାଇଁ ଆମେ କେତୋଟି ସାଧାରଣ କଥା ଦର୍ଶାଇଲୁ। UNESCO ଏହିପରି କେତୋଟି ଭଲ କାମରେ ଆଗେଇବାକୁ ଯାଉଛି। ସେ ଅନୁଷ୍ଠାନ ଜରିଆରେ ଆମ ପୃଥିବୀର ବହୁ ମଂଗଳ ହେଲାଣି, ହେବମଧ୍ୟ। ଏକଥା ଆଜି ଆଶ୍ଚର୍ଯ୍ୟର ନ ହେଲେ ବି କରିବା କଷ୍ଟସାଧ୍ୟ। UNESCO ର ଉଦ୍ୟମଙ୍କୁ ଆମର ଏଇ ସାଂସ୍କୃତିକ ବିଶେଷାଂଙ୍କ ସ୍ୱାଗତ କଣାଉଛି।

## ସଂସ୍କୃତି-ସଂସ୍କୃତି ମଧ୍ୟରେ ବାଡ଼ ରହିବା ଉଚିତ୍ ନୁହେଁ।

ସଂସ୍କୃତି ସଂସ୍କୃତି ମଧ୍ୟରେ କୌଣସି ବାଡ଼ ରହିବା ଉଚିତ୍ ନୁହେଁ। କାହାର ସଂସ୍କୃତି କାହାରିକୁ ଦଳି ଦେବାବି ଖରାପ। କେହି କହବ ନାହିଁ ଯେ ସଂସ୍କୃତି ଆଜି ଗୋଟିଏ ହୋଇଯାଉ। ମାତ୍ର ପ୍ରତ୍ୟେକ ମଣିଷର ବିବେକର ଆଦେଶହିଁ ମଣିଷର ଶ୍ରେଷ୍ଠ ସଂସ୍କୃତି ବୋଲି ମାନିବାକୁ ହେବ। ଆମ ଦେଶର ଗୋଟିଏ ସଂସ୍କୃତି ବୋଲି ଆମେକହୁ। ଏହିପରି ଯେତୋଟି ଦେଶ ଅଛି ସେମାନଙ୍କର ଗୋଟିଏ ଗୋଟିଏ ସଂସ୍କୃତି। ମାତ୍ର ପ୍ରକୃତରେ ଦେଖିଲେ ଏ ସଂସ୍କୃତି ଖାଲି ଉପରକୁ। ଏ ସଂସ୍କୃତି ଖାଲି ଆମକୁ ବାଧ୍ୟ ଓ ଦାସ କରି ରଖିବାର ଏକ ଆବରଣ। କୌଣସି ସଂସ୍କୃତି କୂପଜଳ ନୁହେଁ। ସେ ସର୍ବଦା ବହୁଛି ଓ ବହିବ ମଧ୍ୟ। କିମ୍ବା ବର୍ତ୍ତମାନ ଭାରତ କ'ଣ ଜଣଙ୍କର ସଂସ୍କୃତି ଉପରେ ପ୍ରତିଷ୍ଠିତ ନୁହେଁ। ସମସ୍ତଙ୍କର ଏଇପରି ସୁଖଦୁଃଖ ଅଛି। ତେଣୁ ସମସ୍ତଙ୍କୁ ଆମେ ସେ ସ୍ୱାଧୀନତା ଦେବା ଯେ ଯେକୌଣସି ଲୋକ ତା'ର ନିଜର ବିବେକକୁ ତା'ର ସଂସ୍କୃତି ବୋଲି ମାନିବ। ନିଜର ପଥ ନିଜେ ମାନିନେବ। କାହାରିକୁ ଆମେ ବାଧା ଦେଇ ପାରିବା ନାହିଁ। କାରଣ ଆମେ ଦେଖୁଛେ ଯେ ଆମର ଯାହା ସଂସ୍କୃତି, ଅନେକ ଯାଗାରେ ତାହା ଅସଂସ୍କୃତି ବୋଲି ଘୃଣ୍ୟ। ଏହା ମିଛ ନୁହେଁ। ସେଇ ଦୃଷ୍ଟିରୁ ଆମର ଏ ବିଶେଷାଙ୍କର ବହୁତ ବଡ଼ କର୍ତ୍ତବ୍ୟ ରହିଛି। ଆମେ ଏହାଦ୍ୱାରା ଦେଖାଇ ଦେବାକୁ ଚାହୁଁ ଯେ ସବୁ ସଂସ୍କୃତିରେ ଆମେ ବଢ଼ିନାହୁ। ବା ସବୁ ସଂସ୍କୃତି ସହିତ ଆମେ ପରିଚିତ ନୋହୁଁ। ଗୋଟିକୁ ଟେକିଧରି ଅନ୍ୟକୁ ଆମେ ପକାଇ ଦେଉଛୁ। ନିଜକୁ ଟେକିବାର ଜାତୀୟତା ବୋଧ ଆମର ଯାଇନାହିଁ। ତଥାପି ଆମେ ଏତକ ଏଇ ପତ୍ରିକା ସାହାଯ୍ୟରେ ଦେଖାଇବୁ ଯେ ଆମର ସଂସ୍କୃତି କୌଣସି ପ୍ରକାର ଚାରିକାନ୍ଥ ଭିତରେ ଆବଦ୍ଧ ନୁହେଁ। ଖୋଲା ବିସ୍ତୀର୍ଣ୍ଣ ପଡ଼ିଆ ପଡ଼ିଛି। ଯେଉଁଠି ଯେ କୌଣସି ଖେଳ ଖେଳା

ଯାଇ ପାରିବ । ସଂସ୍କୃତି ସେଇ ଯେ ମଣିଷକୁ ରାସ୍ତା ଦେଖାଇ ଦିଏ । ଅର୍ଥାତ ସଂସ୍କୃତି ହେଉଛି ଆଲୋକ । ଆଲୋକ ଆମକୁ କୁଆଡ଼େ ଯିବାକୁ ବତାଏ ନାହିଁ । କେବଳ ନାନା ପଥର ମର୍ଯ୍ୟାଦା ଦେଖାଇ ଦିଏ । ସେଇପରି ଏ ସଂସ୍କୃତି ଆଲୋକ ରୂପେ ଆମକୁ ପଥ ଦେଖାଇବ ଓ ଆମେ ସବୁ ପଥର ସୀମାଦେଖି ବିବେକ ଅନୁସାରେ ଯେ କୌଣସି ପଥ ନିର୍ବାଚନ କରିନେବା । ଏବଂ ଆପଣା ଜୀବନର ଅନ୍ଧକାର ଦୂର କରିବା । ତେବେ ଆମେ ଆଉ ଆମର ଦୁଃଖ ସୁଖର କର୍ତ୍ତା ରାଜନୀତିର ନେତାଙ୍କୁ ବଢ଼ାଇ ଦେବାନାହିଁ । ଆମେ ଏହା ଜାଣୁ ଯେ ଆମର ସଂସ୍କୃତି କାହାରିକୁ ଅପେକ୍ଷା କରିବ ନାହିଁ । କେହି କାହାରିକୁ ଅପେକ୍ଷା କାହିଁକି କରିବ । ଯିଏ ଯେଉଁଠି ଜୀବନର ପଥ ଆବିଷ୍କାର କରିବ, ସେଇଠି ସେ ତା'ର ପଥରେ ଚାଲିବ । କିନ୍ତୁ ପୂର୍ବ ଆଲୋକକୁ ନେଇ ଘନ ଅନ୍ଧକାରକୁ ବି ସେ ବାଛି ପାଇବ । ସଂସ୍କୃତିକୁ ଜାତୀୟତାର ଭେକ ପିନ୍ଧାଇଦେଇ ଆଜି ପୃଥିବୀରେ ଅନେକ ଘୃଣାର ଭେଳିକି ଲଗାଇ ଦିଆଯାଉଛି । ହିନ୍ଦୁ ମୁସଲମାନଙ୍କୁ ଘୃଣା କରୁଛି । ଦୁଇଧର୍ମ ପରସ୍ପରଙ୍କୁ ପରସ୍ପରର ଓଲଟା ବୋଲି ମାନୁଛନ୍ତି । ଆମ ସଂସ୍କୃତି ଆମକୁ ଆଉ ଚାରିକାନ୍ଥ ଦେଇ ଚିପି ନ ରଖୁ । ଯେଉଁ ପିଲାର ବାପା ମା' ଚାରିକାନ୍ଥ ମଧ୍ୟରେ ପିଲାକୁ ରଖି ମଣିଷ କରିବାକୁ ଚାହାନ୍ତି । ସେମାନେ ପିଲାକୁ ମଣିଷ ନ କରି ପଶୁହିଁ କରିଥାନ୍ତି । ସେଇପରି ଆମର ସଂସ୍କୃତି ଆମକୁ ବାନ୍ଧି ରଖିଲେ ଆମେ ମଣିଷ ନ ହୋଇ ପଶୁ ହୋଇଯିବାର ବହୁ ଆଶଙ୍କା ରହିଛି । ଆମେ କେବେ ହେଲେ କୌଣସି ନିର୍ଦ୍ଧାରିତ ସଂସ୍କୃତର ଫାସରେ ପଡ଼ିବା ନାହିଁ । ସଂସ୍କୃତି ନଦୀର ଶଯ୍ୟାପରି, ନଦୀର ସ୍ରୋତ ନୁହେଁ । ଆମ ସଂସ୍କୃତି ଶଯ୍ୟାହୋଇ ଆମ ଜୀବନର ସ୍ରୋତକୁ ନୂଆନୂଆ ସୃଷ୍ଟିର କୂଳଦେଇ ବୁହାଇ ନେଇଯାଉ ।

## ସାହିତ୍ୟ ଓ ସଂସ୍କୃତି ଦ୍ୱାରା ବିଶ୍ୱର ମିଳନ

ବର୍ତ୍ତମାନ ପୃଥିବୀରେ ପ୍ରତି ମୁହୂର୍ତ୍ତରେ ଅଶାନ୍ତି ବ୍ୟାପି ଯାଉଛି । ତା'ର ସମାଧାନ ପାଇଁ ଚେଷ୍ଟା ମଧ୍ୟ କରା ଯାଉଛି । କିନ୍ତୁ ଅସଲ କଥା ମଣିଷ ହୃଦୟଙ୍ଗମ କରିନାହିଁ । ବିଜ୍ଞାନ ଖୁବ୍ ବଢ଼ି ଚାଲିଛି । ବୁଝିବାକୁ ଗଲେ ମଣିଷ ଭୌତିକ ଦିଗରେ ଖୁବ୍ ଆଗେଇଛି । କିନ୍ତୁ ତା ସହିତ ତା'ର ଅନୁଭୂତି ଆଗେଇ ପାରୁନାହିଁ । ବର୍ତ୍ତମାନ ଦେଶ ଦେଶ ଭିତରେ ପ୍ରତିଯୋଗିତା ଚାଲିଛି ଯେ, କିଏ ଆଗକୁ ଯାଇ ପାରିବ । ସମସ୍ତେ ଯେ ଆଗେଇବେ ଏକଥା କେହି ବିଚାର କରୁ ନାହାନ୍ତି । ଦେଶ ଦେଶ, ଜାତି ଜାତି ଭିତରେ ବାଦ, ବିବାଦ ବଢ଼ି ଚାଲିଛି । ଗୋଟିଏ ଦେଶ ଅନ୍ୟଦେଶ ପ୍ରତି ଈର୍ଷାଭାବ କାହିଁକି ଆଣେ ? ସଂସ୍କୃତି, ସଂସ୍କୃତି ଭିତରେ ଘୃଣାଭାବ କାହିଁକି ଆସେ ? ଯିଏ ଯେଉଁ କ୍ଷେତ୍ରରେ

ରହିଛି, ସେ ତା'ର କ୍ଷେତ୍ରକୁ ସର୍ବସ୍ୱ ମନେ କରିଛି । ନିଜର ଭାଷା, ନିଜର ସାହିତ୍ୟ । ନିଜର ସଂସ୍କୃତିକୁ ମଣିଷ ବଡ଼ ମନେ କରିଛି । ଏଣେ ଅନ୍ୟ ସଂସ୍କୃତି ଓ ସାହିତ୍ୟ ପ୍ରତି ତା'ର ନଜର ରହୁନାହିଁ । ମଣିଷ ନିଜ ସଂସ୍କୃତିକୁ ଚିହ୍ନିଲେ ଏବଂ ଅନ୍ୟ ସଂସ୍କୃତିକୁ ଫିଙ୍ଗିଦେଲେ ତା'ର ମନର କ୍ଷେତ୍ର ଅପ୍ରଶସ୍ତ ହୋଇଯାଏ । ନିଜ ସଂସ୍କୃତିରେ ବୁଡ଼ି ରହିବା ଦ୍ୱାରା ଅନ୍ୟ ସଂସ୍କୃତି ପ୍ରତି ଘୃଣାଭାବ ଆସେ । ପ୍ରତ୍ୟେକ ଦେଶର ସାହିତ୍ୟ ଓ ସଂସ୍କୃତି ଅଛି । ପୃଥିବୀରେ ଯେତେ ଦେଶ ଅଛି ପ୍ରତ୍ୟେକ ଦେଶ ନିଜର ସାହିତ୍ୟ ଓ ସଂସ୍କୃତି ନେଇ ଗଢ଼ା । ତା ବୋଲି ଆମେ ଅନ୍ୟ ସାହିତ୍ୟ ଓ ସଂସ୍କୃତିକୁ ଘୃଣା କରିବା କାହିଁକି ? ନିଜ ସାହିତ୍ୟ ଓ ସଂସ୍କୃତିକୁ ଜାବୁଡ଼ି ଧରି ଅନ୍ୟ ସାହିତ୍ୟ ଓ ସଂସ୍କୃତିକୁ ନ ଚିହ୍ନିବା ମଣିଷ ପକ୍ଷେ କୂପ ମଣ୍ଡୁକ ହେବା ସଙ୍ଗେ ସମାନ । ନିଜର ସାଂସ୍କୃତିକ ଆୟତନ ଭିତରେ ରହିସୁଦ୍ଧା ଆମକୁ ଅନ୍ୟର ସଂସ୍କୃତି ଓ ସାହିତ୍ୟକୁ ଗ୍ରହଣ କରିବାକୁ ହେବ । ତାହେଲେ ଯାଇ ଆମେ ଅନ୍ୟର ହୃଦୟକୁ ଚିହ୍ନି ପାରିବା । ଅନେକ ସମୟରେ ମନରେ ଅନ୍ୟ ସାହିତ୍ୟ ଓ ସଂସ୍କୃତି ପ୍ରତି ଘୃଣା ଆସେ । ଈର୍ଷା ଆସେ । କିନ୍ତୁ ଏତିକି ମନେ ରଖିବା ଉଚିତ ଯେ, ପ୍ରତ୍ୟେକ ଦେଶର ସାହିତ୍ୟ ଓ ସଂସ୍କୃତିରେ ଯଥେଷ୍ଟ ବିଶେଷତ୍ୱ ରହିଛି । ସାହିତ୍ୟ ଓ ସଂସ୍କୃତି କୂପଜଳ ନୁହେଁ । ସେ ସର୍ବଦା ବହୁଛି, ଏବଂ ବହୁଥିବ । ତା'ର ଦ୍ୱାର ସମସ୍ତଙ୍କ ପାଇଁ ଖୋଲା । ସେଥିପାଇଁ ଆମକୁ ଅନ୍ୟ ସାହିତ୍ୟ ଓ ସଂସ୍କୃତି ଗ୍ରହଣ କରିବାକୁ ହେବ । ଆମର ସାହିତ୍ୟ ଓ ସଂସ୍କୃତିର ଦ୍ୱାରକୁ ମଧ୍ୟ ଅନ୍ୟପାଇଁ ଉନ୍ମୁକ୍ତ କରାଇବାକୁ ପଡ଼ିବ । ତାହେଲେ ଯାଇଁ ଆମେ ପରସ୍ପର ସାହିତ୍ୟର ମଧୁ ଚାଖି ପାରିବା । ପରସ୍ପର ଭିତରେ ସାହିତ୍ୟ ଓ ସଂସ୍କୃତିର ଆଦାନ ପ୍ରଦାନ ହେଲେ ପ୍ରତ୍ୟେକଙ୍କର ସାହିତ୍ୟ ଓ ସଂସ୍କୃତିର ଭଣ୍ଡାର ବୃଦ୍ଧି ପାଇବ । ମଣିଷ ମନରୁ ଘୃଣାଭାବ ଦୂରେଇ ଯିବ । ଘୃଣାଭାବ ଦୂରେଇ ଗଲେ ମଣିଷ ଆଉ ବାଦ, ବିବାଦ କରିବ ନାହିଁ । ସାହିତ୍ୟ ଓ ସଂସ୍କୃତି ଜରିଆରେ ଆମେ ପ୍ରତ୍ୟେକ ଦେଶକୁ ଚିହ୍ନିବା, ଏବଂ ଅନ୍ୟଦେଶ ସହ ସହାନୁଭୂତି ବଢ଼ାଇବା । ଆଜି ଆମେ ଅନ୍ୟ ଦେଶର ସଂସ୍କୃତି ସମ୍ବନ୍ଧରେ କ'ଣ ଜାଣୁ ? ଆମ ଦେଶର ଲୋକ ମାନେ ଅନ୍ୟ ଦେଶ ବିଷୟରେ କ'ଣ ଜାଣନ୍ତି ? ଏବଂ କାହିଁକି ଜାଣନ୍ତି ନାହିଁ ? ଏହି ଆଞ୍ଚଳିକତା ଯୋଗୁ ଅନ୍ୟ ଦେଶ ପ୍ରତି ଘୃଣା ଓ ଈର୍ଷା ଆସେ । ଏହି ଅଜ୍ଞାନତାକୁ ଦୂର କରିବା ପାଇଁ ସାହିତ୍ୟ ହିଁ ପ୍ରଶସ୍ତତମ ପନ୍ଥା ସାହିତ୍ୟ ଓ ସଂସ୍କୃତିର ସୂତ୍ର ଏକ ମହାନ୍ ସୂତ୍ର । ସେଥିପାଇଁ ବିଭିନ୍ନ ଭାଷାରେ ପ୍ରତ୍ୟେକ ଦେଶର ସାହିତ୍ୟର କିପରି ଅନୁବାଦ କରାଯିବ, ତା'ର ଅନୁଷ୍ଠାନ ମାନ ପୃଥିବୀର କେତେକ ଯାଗାରେ ସ୍ଥାପନ କରାଯାଉଛି । ପ୍ରତ୍ୟେକ ଦେଶ ଯଦି ପ୍ରତ୍ୟେକ ଦେଶର ସାହିତ୍ୟ ପଢ଼ିବାକୁ ପାଇବ, ତେବେ ଅନ୍ୟ ଦେଶର ସାହିତ୍ୟ ଓ ସଂସ୍କୃତି ସମ୍ବନ୍ଧରେ ବହୁତ କଥା

ଜାଣି ପାରିବ। ତାଦ୍ୱାରା ତା'ର ମନର କୁସଂସ୍କାର ଦୂର ହେବ। ଏହି ସାହିତ୍ୟକୁ ମୂଳକରି ମଣିଷ ମଣିଷର ନିକଟ ହୋଇ ପାରିବ। ଯେତେବେଳେ ମଣିଷ ସବୁ ଦେଶର ସାହିତ୍ୟକୁ ହୃଦୟଙ୍ଗମ କରିବ ଏବଂ ସବୁ ଦେଶର ସଂସ୍କୃତିକୁ ଆଦର କରିବ, ସେତେବେଳେ ସାରା ବିଶ୍ୱ ତା'ର ଘରପରି ମନେ ହେବ। ସେତେବେଳେ ଏ ବିଶ୍ୱ ଆଉ ଭାଗ ଭାଗ ମନେ ନ ହୋଇ ଗୋଟାଏ ଭାଗରେ ପରିଣତ ହେବ। ସେଥିପାଇଁ ଆମର ଏ ବିଶେଷାଙ୍କର ଯଥେଷ୍ଟ ମହତ୍ୱ ରହିଛି। ଆମେ ଆମର ଏହି କ୍ଷୁଦ୍ର ବିଶେଷାଙ୍କଟି ଦ୍ୱାରା ସାହିତ୍ୟ ଓ ସଂସ୍କୃତି ଜରିଆରେ ଆମ ହୃଦୟର ପ୍ରସାର କରି ପାରିବା। ସମସ୍ତ ସଂସାର ସହିତ ଏକ ମାନବୀୟ ଓ ମହନୀୟ ଭାବରେ ସମ୍ମିଳିତ ହୋଇ ପାରିବା।

## UNESCO

ଦୁଇଟି ମହାଯୁଦ୍ଧ ପରେ ସାରା ପୃଥିବୀ ଏବଂ ସମଗ୍ର ମାନବସମାଜ କ୍ଳାନ୍ତ ହୋଇ ପଡ଼ିଲା ସତ, ମାତ୍ର ତଥାପି ମହାଯୁଦ୍ଧର ଆତଙ୍କ ଯାଇ ନଥିଲା। ସେହି ସମୟରେ ପୃଥିବୀର ସବୁଦେଶ କ୍ଳାନ୍ତଚିତ୍ତରେ ଶାନ୍ତି ଖୋଜି ବୁଲିଲା। ବିଶେଷ କରି ଯୁଦ୍ଧାହତ ଜାପାନର ପରିସ୍ଥିତି ଦେଖି ସମସ୍ତଙ୍କ ମନରେ ଆଶଂକା ଦୁଇଗୁଣ ଭାବରେ ବଢ଼ି ଯାଇଥିଲା। ସେହି ସମୟରେ କେତୋଟି ଦେଶ ଏହାର ଗୋଟିଏ ବାଟ ଖୋଜି ବାହାର କରିଥିଲେ। ଖାଲି କେତେ ଦେଶ ଯେ, ବିଚାର କଲେ ତାହା ନୁହେଁ। ସେମାନେ ପୃଥିବୀକୁ ଗୋଟାଏ ଆହ୍ୱାନ ଦେଲେ। ପୃଥିବୀକୁ ଯୁଦ୍ଧ ମୁଖରୁ ରକ୍ଷା କରିବା ପାଇଁ ଗୋଟିଏ ମେଣ୍ଟ କଲେ। ଏଇ ମେଣ୍ଟର ନାମ ହେଲା ଜାତିସଂଘ [United Nations Organization]। ୟୁନେସ୍କୋ (UNESCO) ବିଷୟରେ ପଦେ ଲେଖିବା ଆଗରୁ ଜାତିସଂଘ କଥା ଆଗରୁ ସୂଚାଇବା ଅତି ଆବଶ୍ୟକ। ୟୁନେସ୍କୋ ଜାତିସଂଘର ଗୋଟିଏ ବିଭାଗ। ଜାତିସଂଘ ହେବାପରେ ସମସ୍ତେ ଅନୁଭବ କଲେ ଯେ ଯୁଦ୍ଧ ମୁଖରୁ ପୃଥିବୀକୁ ରକ୍ଷା କରିବାକୁ ହେଲେ ପ୍ରତ୍ୟେକ ମଣିଷ ପ୍ରତ୍ୟେକ ମଣିଷକୁ ଜାଣିବା ଦରକାର। ଯୁଦ୍ଧଖାଲି ଦେଶ, ଦେଶ ମଧ୍ୟରେ ହୁଏ ନାହିଁ। ଯୁଦ୍ଧ ମଣିଷ ମନ ଭିତରେହିଁ ଆରମ୍ଭ ହୁଏ। ଏଇ ମନ ଭିତରେ ଯୁଦ୍ଧକୁ ବନ୍ଦ ନ କରାଗଲେ ପୃଥିବୀ ପୃଷ୍ଠରୁ ଯୁଦ୍ଧର ଅଗ୍ନି ଲିଭି ପାରିବ ନାହିଁ। ସେଥିପାଇଁ ଜାତିସଂଘର କାର୍ଯ୍ୟ-ପରିସର ବହୁଗୁଣ ବଢ଼ିଗଲା। ୟୁନେସ୍କୋ ରାଷ୍ଟ୍ରସଂଘର ଅନ୍ୟାନ୍ୟ ପ୍ରଧାନ ବିଭାଗ ପରି ମଧ୍ୟ ଗୋଟିଏ ପ୍ରଧାନ ସଂସ୍ଥା। ପ୍ରକୃତରେ ଦେଖିବାକୁ ଗଲେ ୟୁନେସ୍କୋ ଦ୍ୱାରା ଯେଉଁ କାର୍ଯ୍ୟ ହେଉଛି ତାହା ପୃଥିବୀର ଭାଗ୍ୟ ଅଧିକରୁ ଅଧିକ ବଦଳିବାରେ ଲାଗିଛି।

ଆଜି ସାରା ସଂସାରରେ ୟୁନେସ୍କୋ ଜରିଆରେ ଜାତିସଂଘ ମାନବର ସଂଧାନରେ ଅଗ୍ରସର ହେଉଛି । ପୂର୍ବରୁ ଆମ୍ଭେ ଅବଗତ ଅଛୁଁ ଯେ ଭୂପୃଷ୍ଠରୁ ଯୁଦ୍ଧ ନିବାରଣ କରିବା ପାଇଁ ହେଲେ ପ୍ରଥମେ ମଣିଷ ମନ ଭିତରେ ଯେଉଁ ଯୁଦ୍ଧ ଲାଗିଚି, ତାକୁ ପ୍ରଥମେ ବନ୍ଦ କରିବାକୁ ହେବ । ତାହା ବନ୍ଦ ହେବ କିପରି ? ତାହାର ପ୍ରଧାନ ଉପାୟ, ମନୁଷ୍ୟ ମନୁଷ୍ୟକୁ ଜାଣିବା ଦରକାର ମନୁଷ୍ୟ ମନୁଷ୍ୟକୁ ଜାଣିବ କିପରି ? ଏଥିପାଇଁ ପ୍ରତ୍ୟେକଙ୍କୁ ପ୍ରତ୍ୟେକଙ୍କ ସଂସ୍କୃତି ସଙ୍ଗେ ପରିଚିତ ହେବା ଉଚିତ । ଶିକ୍ଷା ଓ ସଂସ୍କୃତି ଦ୍ୱାରା ସମାଜରୁ ଘୃଣା ଦୂର ହୋଇ ପାରିବ । ଶିକ୍ଷା ଓ ସଂସ୍କୃତିର ପ୍ରସାର ଦ୍ୱାରା ପ୍ରତ୍ୟେକ ପ୍ରତ୍ୟେକଙ୍କୁ ଭଲ ପାଇ ପାରିବ । ସେହିଠାରେ ମଣିଷ ଭିତରେ ସଦ୍‌ଭାବ ସତ୍‌ଚିନ୍ତା ଜାତ ହେବ । ମନର ଯୁଦ୍ଧ ସେହିଠାରୁ ଲୋପ ହେବ ।

ଆଜି ପୃଥିବୀରେ ବା ଏଇ ବିଂଶ ଶତାବ୍ଦୀରେ କୌଣସି ଦେଶ ଏକା ନିଜେ ନିଜର ଭାଗ୍ୟ ଆଦରି କାହା ସହିତ କୌଣସି ସଂପର୍କ ନରଖି ଚାଲିପାରିବ ନାହିଁ । ସାରା ସଂସାର ଭାଗ୍ୟ ସହିତ ନିଜର ଭାଗ୍ୟ ନିୟନ୍ତ୍ରଣ କରିବାକୁ ହେବ । ସମସ୍ତେ ବିଶ୍ୱ ମୁଖୀ ହୋଇ ଚାଲିବା ଆରମ୍ଭ କଲେଣି । ଖାଲି ଯେ ଚାଲୁଚନ୍ତି ତାହା ନୁହେଁ । ବର୍ତ୍ତମାନ କାଳ ସେଥିଲାଗି ସେମାନଙ୍କୁ ବାଧ୍ୟ କରୁଛି । ଆଜିକାଲି କେହି ନିଜପାଇଁ କିଛି କରୁନାହିଁ । ଯାହା ହେଉଛି ସମସ୍ତଙ୍କ ପାଇଁ । କାଲି କେଉଁଦେଶ କେଉଁ କୋଣରେ ଗୋଟିଏ ବୈଜ୍ଞାନିକ ତତ୍ତ୍ୱ ବାହାର କଲାତ ତାହା ଦୁଇ ଦିନ ଭିତରେ ଦୁନିଆଁର କୋଣ କୋଣରେ ପହଞ୍ଚି ଯାଉଛି । ତାକୁ ନେଇ ନୂଆ ପ୍ରୟୋଗ ହେଉଛି । ତା'ର ପରିଣାମ ସମସ୍ତଙ୍କୁ ଭୋଗିବାକୁ ପଡୁଛି । ତାହା କୌଣସି ପ୍ରକାରେ କେହି ଛପାଇ ରଖି ପାରି ନାହିଁ । କାଲି କେଉଁ ଦେଶ କେଉଁ କୋଣରେ ଜଣେ ଭଲ ବହିଖଣ୍ଡେ ଲେଖିଲା । ଅଳ୍ପଦିନ ପରେ ତାହା ଅନେକ ଭାଷାରେ ଅନୁବାଦ ହୋଇ ପ୍ରକାଶ ପାଇଲାଣି । ଏବଂ ନାନା ଦେଶର ସାହିତ୍ୟିକମାନେ ତା'ର ସମାଲୋଚନା କଲେଣି । ଏଇପରି ଭାବରେ ମଣିଷ ମଣିଷର ନିକଟକୁ ଆସୁଛି । କିନ୍ତୁ ଆଜି ପୃଥିବୀରେ ତାହା କେତେ ଜଣ ଉପଭୋଗ କରି ପାରୁଛନ୍ତି ? ପୃଥିବୀରେ କେତେ ଜଣ ପାଠ ପଢ଼ିଛନ୍ତି ? ସେଇ ମାନଙ୍କ ଜ୍ଞାନଚକ୍ଷୁ ଖୋଲିବା ପାଇଁ ୟୁନେସ୍କୋ ବା ଜାତିସଂଘର ଶିକ୍ଷା, ବିଜ୍ଞାନ, ସାଂସ୍କୃତିକ ପରିଷଦ ବହୁତ କାମ କରୁଛି । [United Nations Educational Scientific and Cultural Organization] ଏହି ପରିଷଦ ତାଙ୍କ ଯେଉଁ ଦେଶରେ ଶିକ୍ଷାର ପ୍ରସାର ହୋଇନାହିଁ । ସେ ଦେଶରେ ଶିକ୍ଷା ବ୍ୟବସ୍ଥା କରା ଯାଉଛି । ଗୋଟାଏ ଦେଶ ଆଉ ଗୋଟାଏ ଦେଶରୁ ବୈଜ୍ଞାନିକ ସାହାଯ୍ୟ ପାଉଛି । ମୋଟା ମୋଟି କହିବାକୁ ଗଲେ ପ୍ରକୃତରେ ଆଜି ୟୁନେସ୍କୋ ଦ୍ୱାରା ଜାତିସଂଘ ଲୋକ ସଂଧାନ କରୁନାହିଁ । ଆଲୋକର ସଂଧାନ କରୁଛି ।

ଏଥିରୁ ଆମେ ବେଶ୍ ଭଲ ଭାବରେ ବୁଝି ପାରିବା ଜାତିସଂଘର ଏହି ବିଭାଗ କିପରି ଭାବରେ ମନୁଷ୍ୟ ମନରୁ ଯୁଦ୍ଧର ବୀଜ ନିବାରଣ କରି ପାରୁଛି । ଏହାଦ୍ୱାରା ମନୁଷ୍ୟ ପ୍ରତ୍ୟେକଙ୍କ ସହିତ ହୃଦୟର ବିନିମୟ କରୁଛି । ଏହା ଦ୍ୱାରା ମନୁଷ୍ୟ ମନୁଷ୍ୟ ସହିତ ପରିଚିତ ହୋଇ ପାରୁଛି । ଏହାଦ୍ୱାରା ଅନ୍ୟପ୍ରତି ଯେଉଁ ବୃଥା ଘୃଣା ମନୁଷ୍ୟ ମନକୁ ଘେରି ରହିଛି । ତାହାକ୍ରମେ ଅପସରି ଯାଉଛି । ଆମେ ଯେତେବେଳେ ସଂସ୍କୃତି ବିଷୟରେ ଆଲୋଚନା କରୁଛେ । ସେତେବେଳେ ୟୁନେସ୍କୋର ମହତ୍ୱ ଉପଲବ୍ଧି କରିବା ଆମର ନିହାତି ଦରକାର ।

ଆଜି ଜାତିସଂଘ ବହୁତ କାମ କରୁଛି ପୃଥିବୀ ପୃଷ୍ଠରୁ କିପରି ଯୁଦ୍ଧର ନିବାରଣ ହେବ । ଏତେ କଥା ହେବା ପରେ ମଧ୍ୟ ପୃଥିବୀ ଯେ, ପ୍ରଧାନତଃ ଦୁଇଟି ଯୁଦ୍ଧ ଶିବିରରେ ପରିଣତ ହୋଇ ରହିଛି ତାହା ଭାବିବାର କଥା । ଜାତିସଂଘରେ ବଡ଼ବଡ଼ ଶକ୍ତିର ଖେଳ ଅହରହ ଲାଗିଛି । ସମସ୍ତଙ୍କ ପ୍ରସ୍ତାବକୁ ହୁଏତ କୌଣସି ଶକ୍ତି ନିଜର ସର୍ବୋଚ୍ଚ କ୍ଷମତା ପ୍ରୟୋଗ କରି ନାକଚ କରି ଦେଉଛି । ବର୍ତ୍ତମାନ ସୁଦ୍ଧା ଜାତିସଂଘ ବଡ଼ବଡ଼ ଶକ୍ତିର ହାତ ବାରିସି ପରି ରହିଛି । ୬୦ଟି ରାଜ୍ୟ ଜାତିସଂଘର -------- --------------------- ପୃଥିବୀକୁ ବାନ୍ଧି ରଖିଥିବା କ୍ଷମତାନୀତିର ନାଗଫାଶ ଫିଟିଯିବ । ଜାତିସଂଘର ନାନା ବିଭାଗ ଭିତରୁ ବୋଧହୁଏ ୟୁନେସ୍କୋ ଏ ଦିଗରେ ସବୁଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ କରୁଛି । ମଣିଷ ସହିତ ମଣିଷର ସୌହାର୍ଦ୍ଦ୍ୟ ଓ ମିଳନ କାମନା କରୁଥିବା ସମସ୍ତେ ଅବଶ୍ୟ ୟୁନେସ୍କୋର ଏହି ଉଦ୍ୟମକୁ ସ୍ୱାଗତ ଓ ସ୍ୱୀକାର କରିବେ ।

ସଂପାଦକ ମଣ୍ଡଳୀ

# ଶେଷରେ ପଦେ

**ଚୈତନ୍ୟ ପ୍ରସାଦ ସେଠୀ**

ଆମ ଜୀବନ ବିଦ୍ୟାଳୟର ଜଣେ ବିଦ୍ୟାର୍ଥୀ ନିଜ ଜୀବନ ବଂଚିବାର ବାଟଟିଏ ନିଜେ କିପରି ଆବିଷ୍କାର କରିବାରେ ସକ୍ଷମ ହୋଇପାରିବ ସେଥିଲାଗି ଶିକ୍ଷାନୁଷ୍ଠାନର ଶିକ୍ଷାପ୍ରଣାଳି ଭିତରେ ତହିଁର ବାତାବରଣକୁ ବେଶ୍ ସ୍ୱାଭାବିକ ଭାବରେ ବିଦ୍ୟାର୍ଥୀର ସମକ୍ଷରେ ଏ ବିଦ୍ୟାଳୟ କ୍ରମ-ବିସ୍ତାର କରି ଯାଉଥିଲା । ବିଦ୍ୟାର୍ଥୀଟିକୁ କୌଣସି ପୂର୍ବନିର୍ଦ୍ଦିଷ୍ଟ ଆଦର୍ଶର ଖୁଆଡ଼ ଭିତରକୁ ଅନ୍ୟ କାହାର ଆଦେଶ ମୁତାବକ ଭର୍ତ୍ତି କରି ଦିଆଯାଉ ନଥିଲା । ଆଜିକାଲିର ପିଲାଟି ପରି ସେଠିକାର ବିଦ୍ୟାର୍ଥୀ ପିଠିରେ ପାଠର ବୋଝ ବୋହି ଘରୁ ବିଦ୍ୟାଳୟ ଓ ବିଦ୍ୟାଳୟରୁ ଘରକୁ ଯାତାୟତ କରୁନଥିଲା । ବରଂ ସେ ନିଜେ ଅତି ସ୍ୱାଭାବିକ ଆନନ୍ଦର ଖୁସିବାସିରେ ସବୁକିଛି ଶିକ୍ଷା କରି ଯାଉଥିଲା । ପାଠ ସହ ସହଯାତ୍ରୀଟିଏ ହୋଇ ନିଜେ ନିଜ ବିଦ୍ୟାର୍ଥୀ ଜୀବନର ବାଟଟି ଚାଲୁଥିଲା । ନାନାଦି ଅଭାବ ଓ ଅସୁବିଧା ସତ୍ତ୍ୱେ ସେ ତା'ର ଶିକ୍ଷକମାନଙ୍କ ସହିତ ଏକ ପାରିବାରିକ ସହଯାତ୍ରୀ ଭାବରେ ଅନୁଷ୍ଠାନର ବିଦ୍ୟା-ଉଦ୍ୟାନରୁ ବିଦ୍ୟାଚୟନ କରି ଆପଣାର ଜିଜ୍ଞାସୁ ଅଣ୍ଟି ଭରାଇ ଚାଲିଥିଲା ।

ବିଦ୍ୟାଳୟରେ ବିଦ୍ୟାପାଇଁ ସେ ମୂଲ ଲାଗୁନଥିଲା ବା ବାଧ୍ୟବାଧକତାର ବଶବର୍ତ୍ତୀ ହୋଇ ମୂଲ୍ୟ ଦେଉ ନଥିଲା । ବରଂ ଖୁବ୍ ଖୁସିରେ, ଖୁସିରେ ମହୁମାଛିଟିଏ ମହୁ ସଂଗ୍ରହ କଲାପରି ତା'ର କାଂକ୍ଷିତ ବିଦ୍ୟାର୍ଜନ କରି ଚାଲିଥିଲା । ଯାହା ସେହି ସମୟର ଅନ୍ୟ କୌଣସି ବିଦ୍ୟାଳୟ ମାନଙ୍କରେ ଆଦୌ ହେଉ ନଥିଲା ବା ସେପରି କିଛି ଦେଖିବାକୁ ମିଳୁ ନଥିଲା । ଅର୍ଥାତ୍ ସେଠି ବିଦ୍ୟାର୍ଥୀଟିଏ ବିଦ୍ୟାର୍ଜନ ମାଧ୍ୟମ ଦେଇ ନିଜ ଜୀବନକୁ ଦେଖୁଥିଲା ଓ ଜୀବନ ମାଧ୍ୟମ ଦେଇ ସ୍ୱକୀୟ ବିଦ୍ୟାର୍ଜନ କରି ପାରୁଥିଲା । ସେଇଥିପାଇଁ ବୋଧହୁଏ ସେ ବିଦ୍ୟାଳୟର ପ୍ରାଜ୍ଞ୍ୟ ଅଧ୍ୟକ୍ଷ ପ୍ରଫେସର ଚିତ୍ତରଂଜନ ଦାସ (ଚିତ୍ତଭାଇ) ବିଦ୍ୟାଳୟର ନାମ ମୂଳରୁ "ଜୀବନ ବିଦ୍ୟାଳୟ" ରଖିଥିଲେ ବୋଲି ସମସ୍ତଙ୍କର ହୃଦ୍‌ବୋଧ ହୁଏ ।

ସେହି ବିଦ୍ୟାଳୟର ସବୁଠାରୁ ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ ମହତ୍ୱ ହେଉଛି- ସେଠି ବିଦ୍ୟା ଚୋରି ହେଉନଥିଲା କିମ୍ବା ଆଜିକାଲିକା ପରି ଆମ ଓଡ଼ିଶାରେ ଯେଭଳି ବିଦ୍ୟାସବୁ

ବେପାରଭଳି କିଣାବିକା ହେଉଛି ଯେମିତି ହେଉନଥିଲା । ସେଇ ବିଦ୍ୟା ବେପାର ଆଜି ଏମିତି ଚାଲୁଛି ଯେ, ଯାହାର ଆଜି ହାତରେ ପଇସା ଅଛି ସେ ତା ପିଲାକୁ ପାଠ ପଢ଼େଇ ପାରିବ ବା ତା ପିଲାଟି ମାନଙ୍କ ପାଇଁ ସବିସ୍ତାରେ ପାଠ କିଣେଇ ଦେଇପାରିବ ଏବଂ ଯେଉଁ ବାପ ବିଚ୍ରାଟିର ପଇସାନାହିଁ ସେ ବାଧ୍ୟ ହୋଇ ତା ପିଲାଟିକୁ ନିଜ ସଂଗେ ନେଇ ପର ଘରେ ମୂଲ ଲାଗିବ ଅଥବା ସେ ପିଲା ବଂଚିବା ପାଇଁ ନାନା ଅସତ୍ ଉପାୟର ବିକଳ୍ପ ମୋହ ମାନଙ୍କର ବଶବର୍ତ୍ତୀ ହୋଇ ନିଜ ଜୀବନକୁ ନାରଖାର କରିବା ସହ ସମାଜିକ ଜୀବନକୁ ମଧ୍ୟ ଖିନ୍‌ଖରାପ କରି ନାନାଦି ତ୍ରାସ ଭିତରେ ରଖିବାକୁ ଏକପ୍ରକାର ନିଷ୍ଠୁର ବା କ୍ରୁର ଖୁସି ବୋଲି ଅନୁଭବ କରି ଚାଲିବ ।

ଏଇକଥା ପ୍ରତ୍ୟେକ ଦେଶବାସୀ ତଥା ଦେଶକୁ ପରିଚାଳିତ କରୁଥିବା ମଂତ୍ରୀ, ମହାମଂତ୍ରୀ ଏବଂ ଅଫିସର ବାବୁ ମାନେ ବେଶ୍ ଭଲଭାବେ ଜାଣୁଥିଲେ ମଧ୍ୟ ବନ୍ଧଗୋଳିଆ ପାଣିର କଙ୍କଡ଼ା ଜୀବନକୁ ଆଦରି ନେଇ ନିଜନିଜର ଖୁଆଡ଼ଟି ଭିତରେ 'ବିଲେଇ ଆଖିବୁଜି ଖିର ପିଇଲା ପରି' ରହି, ''ଯାହା ହେବାର ହେଉଥାଉ, ମାତ୍ର ଆମ ଜୀବନ ଏଇମିତି ଅଂଧାରି ସୁଖରେ ଗଡ଼ି ଚାଲିଥାଉ'' ବୋଲି ଭାବି ଏଇପରି ଏକ ଅପଚିନ୍ତାରେ କଡ଼ାପାନ ବା କମଳା ମିଠେଇ କୋଳ ପାଟିରେ ଜାକି ଚୋବାଇ ଚୋବାଇ ସ୍ୱ ସ୍ୱ ଜୀବନକୁ ବେଶ୍ ଠକି ଦେଇ ଆଇନ୍‌ର ବିରୁଡ଼ିଭରା କରି ତାରି ଭିତରେ ରହିଛନ୍ତି । ସେମାନଙ୍କର ଏତାଦୃଶ ଜୀବନ ଚର୍ଯ୍ୟାର କାରଣ ଆଉ ଯାହା ହୋଇଥାଉ ନା କାହିଁକି ମାତ୍ର ଆଜି ଆମର ଏ ମୂଲ୍ୟହୀନ ବିଚାରରେ ତାହା ସେହି ଚିରାଚ୍ରରିତ ତଥାକଥିତ ବିଦେଶୀ ଶାସନ ଅମଳର ଶିକ୍ଷା-ବିଚାରର ମାନସିକତା ହିଁ ମୂଳକାରଣ । ଇଂରେଜମାନେ ଆମକୁ ଶାସନ କରିବା ପାଇଁ ତାଙ୍କ ମନୋମତ ବୋଲକରା କିରାନୀମାନେ ଯେମିତି ବିଦ୍ୟାଳୟରୁ ଉତୁରିବେ ସେଇପରି ଏକ ଶିକ୍ଷାବ୍ୟବସ୍ଥା ମାନ କରି ଦେଇଥିଲେ । ତାହା ମଧ୍ୟ ଏଯାବତ୍ ଠିକ୍ ସେଇମିତି ଚାଲି ଆସିଛି । ଏଯାଏଁ ଶିକ୍ଷାରେ ଯେତେସବୁ ସଂସ୍କାର ଆଣିବାପାଇଁ ନାମୀ ନାମୀ କମିଶନ ବସିଛି; ସବୁ ଶିକ୍ଷା କମିଶନ ଗୁଡ଼ିକ ଏପର୍ଯ୍ୟନ୍ତ ମଧ୍ୟ ସେଇ ପୁରୁଣା ମଦକୁ ନୂଆ ବୋତଲରେ ପୁରାଇ ଆମଦେଶକୁ ଓ ସେଦେଶର ଲୋକସମୂହକୁ ଉପରୁ ତଳ ଯାଏ ନିଶାଗ୍ରସ୍ତ କରି ରଖାଇଛନ୍ତି । ଆମ ଦେଶୀୟ ଜୀବନର ମୂଲ୍ୟବୋଧ ଗୁଡ଼ିକୁ କ୍ରମଶଃ କଳଙ୍କି ଲଗା ଉପକରଣ କରି ଅଦରକାରୀ ପେଡ଼ି ଓ ପେଟରାରେ ଚାବି ପକାଇ ଦେଇଛନ୍ତି ।

ଆଜି ଏ ଦେଶର ଅଧିକାଂଶ କ୍ଷେତ୍ରରେ ବୈଜ୍ଞାନିକ କର୍ମକୌଶଳ ଓ ସେସବୁର ଶିକ୍ଷାପ୍ରଣାଳି ତଥା ଖାସ୍ ବିଜ୍ଞାନ ବି ଆଗେଇ ଗଲାଣି । ମାତ୍ର ସେହି ସବୁର ସଫଳତାକୁ ଆମ ମାଟିର ଜୀବନାଭିମୁଖୀ କରାଇ ନିରାପଦରେ ଜୀବନଚ୍ରର୍ଯ୍ୟା ଦେଇ ଅନୁଭବ

କରିବାଲାଗି ଆବଶ୍ୟକ ସୁସ୍ଥ ମାନସିକତାର ବିକାଶ ହୋଇପାରି ନାହିଁ । ଯଦି ଆମର ଶିକ୍ଷାପ୍ରଣାଳି ଓ ଶିକ୍ଷା ପରିବେଶ ଏଠାରେ ଉଲ୍ଲିଖିତ ମାନସିକତା; ମାନବୀୟ ହୃଦୟ ବିସ୍ତାରର ବିକାଶ ଲାଗି ବାଲ୍ୟାବସ୍ଥାରୁ ବିଦ୍ୟାଳୟମାନଙ୍କରେ ସୃଷ୍ଟି କରାଯାଇ ବିଦ୍ୟାର୍ଥୀ ମାନଙ୍କୁ ଜୀବନକୁ ମାଧ୍ୟମ କରି ଶିକ୍ଷା ଏବଂ ଶିକ୍ଷାକୁ ମାଧ୍ୟମ କରି ଜୀବନ ବଂଚିବାର ଆନନ୍ଦଦାୟୀ ରାହାମାନ (ସରକାରୀ ସ୍ତରରେ ଯେତେ ବ୍ୟୟବହୁଳ ହେଉପଛେ) ଦେଖାଇ ଦେବାର ପ୍ରଚେଷ୍ଟା ସମସ୍ତ ଶିକ୍ଷାନୁଷ୍ଠାନ ଓ ଶିକ୍ଷକମାନଙ୍କ ଦ୍ୱାରା କରାଯାଇ ପାରନ୍ତା, ତା'ହେଲେ ଜଣେ ବିଦ୍ୟାର୍ଥୀ ତା'ର ଶିକ୍ଷା ସମାପ୍ତ ପରେ ବେକାର ହେବାର ଐହିକ ଅଭିଶାପ ପାଇଁ ଭାଗ୍ୟକୁ ଦାୟୀ କରିବାର ଅବକାଶ ପାଆନ୍ତା ନାହିଁ । ବିଦ୍ୟାର୍ଥୀ ମାନଙ୍କର ଏପରି ଅସହାୟ ଅବସ୍ଥାକୁ ଆମଜୀବନ ବିଦ୍ୟାଳୟଟିର ଜନ୍ମଦାତା ମାନେ ଅନେକ ଅନେକ ଆଗରୁ ସେମାନଙ୍କର ମନଶ୍ଚକ୍ଷୁରେ ଦେଖିପାରି ସେମାନଙ୍କ କଳ୍ପିତ ବିଦ୍ୟାଳୟଟିର ସାମଗ୍ରିକ ପରିକଳ୍ପନା କରି କାର୍ଯ୍ୟାରମ୍ଭ କରିଥିଲେ ଓ ଅନେକ ବାଟ ଆଗେଇ ଥିଲେ । ସେଇଠି ଛାତ୍ର ଓ ଶିକ୍ଷକ ଉଭୟେ ମିଶି ଏକ ଜୀବନାଭିମୁଖୀ ଶିକ୍ଷା ବ୍ୟବସ୍ଥାରେ ନିଜକୁ ଆବିଷ୍କାର କରିବାର ବିଦ୍ୟାର୍ଥୀ ଜୀବନ ଅତିବାହିତ କରି ନିଜ ନିଜର ବିଦ୍ୟାର୍ଜନ କରିପାରୁଥିଲେ ।

ସେଇ ଜୀବନ ବିଦ୍ୟାଳୟରେ ବିଦ୍ୟାର୍ଥୀଟି ବିଦ୍ୟାର୍ଜନ ଶେଷରେ କେବଳ ଚାକିରି ଖଣ୍ଡେ ପାଇବାକୁ ନିଜେ ନିଜକୁ ପ୍ରସ୍ତୁତ କରୁନଥିଲେ । ବରଂ ଚାକିରି କରି ଜୀବନ ବଂଚିବାର ଅନ୍ୟ ବିକଳ୍ପଟିର ନକ୍‌ସା ମଧ୍ୟ ନିଜ ମନଭିତରେ ତିଆରି କରି ପାରୁଥିଲେ । ତେଣୁ ସେଠାରେ ଅନ୍ୟ ଏକପ୍ରକାର ଶିକ୍ଷା (ଯାହା ପ୍ରଚଳିତ ଶିକ୍ଷାଠାରୁ ଭିନ୍ନ) ଯେ' ତାକୁ ଭାଗ୍ୟବାଦୀ କରାଇ ବିମୂଢ଼ କରି ରଖିବ, ସେପରି ଏକ ଚିନ୍ତାର ବହୁ ଦୂରରେ ସେ ରହିପାରୁଥିଲା । ଏତାଦୃଶ ଶିକ୍ଷା ବ୍ୟବସ୍ଥାରେ ଚାଷୀ, ମୂଲିଆ, ଆଦିବାସୀ, ହରିଜନ, ଥିଲାବାଲା ଓ ନଥିଲା ବାଲା ନାଗରିକ ମାନଙ୍କର ପୁଅଝିଅ ଏକାଠି ସ୍ୱାଭାବିକ ଆନନ୍ଦମନରେ ପାଠପଢ଼ି ବିଦ୍ୟାର୍ଜନ କରିବାର ସମୁଚିତ ସୁବିଧା ପାଇ ପାରୁଥିଲେ । ସେଭଳି ଏକ ଆଦର୍ଶ-ଶିକ୍ଷା-ଆସ୍ଥାନରେ କେହି କାହାକୁ ନ୍ୟୂନ କରି କୌଣସି ସ୍ଥଳରେ ଦେଖୁନଥିଲେ । ସେଇଠି ସଭିଏଁ ସଭିଙ୍କୁ ଗୋଟିଏ ପରିବାରର ବୋଲି ପ୍ରତି ପଦେପଦେ ଆତ୍ମୀୟ ଭାବେ ଅନୁଭବ କରୁଥିଲେ । ସେମାନଙ୍କର ବାପା, ମାଆ ଓ ଅଭିଭାବକ ମାନେ ମଧ୍ୟ ନିଜେ ସେଠାରେ ଦିନେ ଅଧେ ରହି ନିଜନିଜର ପିଲାମାନଙ୍କର ଅଗ୍ରଗତିରେ ବେଶ୍ ସଂତୋଷ ପ୍ରକାଶ କରି ସ୍ୱସ୍ୱ ଗୃହକୁ ପ୍ରତ୍ୟାବର୍ତ୍ତନ କରୁଥିଲେ । ଅଥଚ ଅତି ଦୁଃଖର ସହ ଏଠି କହିବାକୁ ପଡୁଛି ଯେ ସେପରି ଏକ ଦୁର୍ଲଭ

ଶିକ୍ଷାନୁଷ୍ଠାନକୁ ତା'ର ବାଲ୍ୟାବସ୍ଥାରୁ ତା କଳିଟି ମୋଡ଼ି ଜାଣିଶୁଣି ସରକାରୀ ସ୍ତରରେ ପଙ୍ଗୁ ତଥା ଭିନ୍ନକ୍ଷମ କରି ଦିଆଗଲା ।

ଏଠି ଆମେ ସେ ବିଦ୍ୟାଳୟର ଜଣେ ଶିକ୍ଷାର୍ଥୀ ଥିଲୁ ବୋଲି ତା'ର ଗୁଣଗ୍ରାମକୁ ମିଥ୍ୟାର ଆଶ୍ରୟ ନେଇ ବହୁତ ବଢ଼େଇକରି କହିବାର ଆଦୌ ଧୃଷ୍ଟତା ଅର୍ଜନ କରୁନାହୁଁ । ଯାହା ଅଂଗେ ନିଭେଇଛୁ ବା ଅନୁଭବ କରିଛୁ ତାହାହିଁ ଚୁମ୍ବକେ ଚୁମ୍ବକେ କହିବାକୁ କୁଣ୍ଠାବୋଧ କରୁନାହୁଁ । ସାରା ଜୀବନ ମୁଁ କଲେଜରେ ଶିକ୍ଷକ ଚାକିରି କରି ଶେଷରେ ଅବସର ନେଇ ଏଇକଥାଗୁଡ଼ିକ ମୋ ଦେଶର, ଓଡ଼ିଶାର ଭାଇଭଉଣୀ ମାନଙ୍କର ଗୋଚରାର୍ଥେ ଏହା ଲେଖୁଛି । କାରଣ ମୁଁ ଜଣେ ଶିକ୍ଷକ ହିସାବରେ ମୋ ସ୍କୁଲ ଜୀବନର ସେତେବେଳେ ଆମ ଜୀବନ ବିଦ୍ୟାଳୟରେ ନିରନ୍ତର କାର୍ଯ୍ୟରତ ଗୁରୁଜୀ ବା ଶିକ୍ଷକମାନଙ୍କ ଦ୍ୱାରା ଅନୁସୃତ ଆଦର୍ଶ ତଥା ଆତ୍ମୀୟ ଶିକ୍ଷା ପ୍ରଣାଳୀର ଉତ୍କର୍ଷତାକୁ ଆଖି ଆଗରେ ରଖି ମୋ ଛାତ୍ରଛାତ୍ରୀମାନେ କେମିତି ନିଜେ ନିଜର ଜୀବନକୁ ଗଢ଼ି ତୋଳିବାର ରାହା ପାଇ ପାରିବେ ତହିଁର ଦୂରଦୃଷ୍ଟିଟିକୁ ଆମ ଜୀବନ ବିଦ୍ୟାଳୟର ଉଦାହରଣକୁ ଜାଣିଶୁଣି ସେମାନଙ୍କ ସମକ୍ଷରେ ବାଢ଼ି ଦେଇଛି ଏବଂ କେତେକ ପିଲାମାନଙ୍କ ଜୀବନରେ ତହିଁର ସାଫଲ୍ୟ ଦେଖି ମନେମନେ ସଂତୋଷ ଲାଭ କରିଛି ବୋଲି ଆଜି ସବୁଠି ଦୃଢ଼ଭାବେ କହିପାରିବି । ସେତେବେଳେ ମୋ ରାଜ୍ୟ ଓଡିଶା ଓ ଓଡ଼ିଆ ଜୀବନ-ସଂସ୍କୃତିକୁ ଆଖି ଆଗରେ ରଖି ବିଦ୍ୟାର୍ଥୀଟିର ତଥାକଥିତ ପାଠ୍ୟ ଖସଡ଼ା ସହିତ ବର୍ତ୍ତମାନ ପ୍ରଚଳିତ ଜୀବନ ଦର୍ଶନ ଭିନ୍ନ ଏକ ବାସ୍ତବ ଦିଗରେ ତା'ର ଜୀବନ ଦୃଷ୍ଟିଟି କିପରି ଏକ ଅସ୍ତିବାଚକ ଜୀବନଚର୍ଯ୍ୟାର ଆଲୋକ ପ୍ରତି ଆକୃଷ୍ଟ ହୋଇପାରିବ, ସେଇ ଚେତନା ଟିକକ ତା ମନ ପ୍ରାଣରେ ଉଦ୍ରେକ କରିବାକୁ ମୁଁ ଆପ୍ରାଣ ଚେଷ୍ଟା କରିଛି ଏବଂ ସେତେବେଳେ ସ୍ପଷ୍ଟ ଅନୁଭବ କରିଛି ଯେ ଛାତ୍ରଟି ତା'ର ଶିକ୍ଷା ଶେଷ ପରବର୍ତ୍ତୀ ଜୀବନରେ ହତୋତ୍ସାହ ନହୋଇ ନିଜକୁ ସ୍ୱକୀୟ ଢ଼ଙ୍ଗରେ ନିଜର ତଥା ସମାଜର ମଂଗଳକାରୀ ହିସାବରେ ବେଶ୍ ପ୍ରତିଷ୍ଠିତ କରିପାରିଛି । ଛାତ୍ରର ଏଇ ସାଫଲ୍ୟରେ ମୋର କୌଣସି କୃତିତ୍ୱ ନାହିଁ । ତାହା କେବଳ ସେଇଛାତ୍ରଟିର ସତ୍‌ଉଦ୍ୟମ ଓ ମୋର ଜୀବନଗୁରୁ ଚିତ୍ତଭାଇଙ୍କ ଶିକ୍ଷାଦର୍ଶର ଚମତ୍କାରିତା ବୋଲି ଦୃଢ଼ ଭାବେ କହିବି ।

ଆମର ଏ ଦେଶ ଭାରତବର୍ଷ ଏକ ଗ୍ରାମବହୁଳ ଦେଶ । ତା ଭିତରେ ଆମର ପ୍ରିୟ ଓଡ଼ିଶାରେ ଅଶିରୁ ନବେଭାଗ ଲୋକ ଗାଁ ଗହଳରେ ବସବାସ କରନ୍ତି । ଏହାର ଗ୍ରାମ୍ୟ ସମାଜ, ଦେଶୀୟ ସଂସ୍କୃତି ଓ ଲୋକ ମନର ଆକାଂକ୍ଷା ତଥା ଜୀବନ-ଦର୍ଶନ ପାଶ୍ଚାତ୍ୟ

ଶିକ୍ଷା-ଦର୍ଶନ ଠାରୁ ଅନେକ ଭିନ୍ନ । ପାଶ୍ଚାତ୍ୟ ଢ଼ାଞ୍ଚାରେ ଶିକ୍ଷାର ଅନୁକୃତି ଏଠାକାର ଜୀବନରେ କେବଳ ବସ୍ତୁସର୍ବସ୍ୱ ଆପଣା ସୁଖୀ ଜୀବନ ଚଳଣିର ବିପଣି ସିନା ଆମ ସମ୍ମୁଖରେ ବିସ୍ତାର କରି ବାଢ଼ି ଦେବ ଓ ଦେଉଛି ମଧ୍ୟ । ମାତ୍ର ଆମ ଏ ମାଟିର ଜୀବନ ଶୈଳୀଟିରେ ନାନା ଅବାଂଛିତ ବିଭୀଷିକା ଭର୍ତ୍ତି କରିବାରେ ବ୍ୟାପୃତ ରହି ସ୍ୱଦେଶୀ ସୁଖୀ ଜୀବନର ପ୍ରତ୍ୟୟ (Concept)ଟିକୁ ଅସହାୟ ଭାବେ ମାରି ଦେଇଯାଉଛି । ଗ୍ରାମ୍ୟ ଜୀବନର ଆତ୍ମୀୟ ପରିବେଶ କ୍ରମଶଃ ଉଭେଇ ଯାଉଛି । ସମସ୍ତଙ୍କୁ ଘରେ ଓ ବାହାରେ ଅଳ୍ପେ ବହୁତେ ଅସୁଖୀ କରାଇ ରଖୁଛି । ଗ୍ରାମ୍ୟ କୃଷକ ଜୀବନର ଅମୃତସମ ଆନନ୍ଦମୟ କୃଷ୍ଟ କାହିଁ କେଉଁ ଦୂର ଆକାଶରେ ନିଶ୍ଚିହ୍ନ ହୋଇ ଯାଉଛନ୍ତି । ଗୋଷ୍ଠିଗତ ଜୀବନ-ସମାଜ ବ୍ୟଷ୍ଟିମୟ ହୋଇ ସଂପର୍କର ଡୋରୀ ତୁଟେଇ ଫିଙ୍ଗି ଫୋପାଡ଼ି ଦେଉଛି । ଏଠି ମଣିଷ ଆପଣାର ଅଦୂରଦର୍ଶିପଣ ହେତୁ ଅନେକ ସ୍ଥଳରେ ସେ ଏକୁଟିଆ ହୋଇ ଭିନ୍ନ ଏକ ବସ୍ତୁବାଦୀ ପ୍ରତ୍ୟୟରେ ବିଶ୍ୱାସୀ ହୋଇ ନିଜକୁ ନିଜେ ସାନ୍ତ୍ୱନା ଦେଇ କୌଣସିମତେ ବଂଚି ରହିବାକୁ ଚେଷ୍ଟା କରୁଛି । ଗୋଟାଏ ଭିନ୍ନ ଏକ ପୋଷାକୀ-ଜୀବନ ଓ ସ୍ୱକୀୟ ବିବେକକୁ ଆଖିବୁଜି ବିତାଇବାକୁ ବାଧ୍ୟ ହେଉଛି । ଏଠି ସମାଜ ଭାଙ୍ଗି ପଡୁଛି । ନିଜ ଭିଟାମାଟିର ସଂସ୍କୃତି ତାକୁ ସଂଗ ଦେଇପାରୁ ନାହିଁ ବୋଲି ଏଠାରେ ସେ ଅନୁଭବ କରୁଛି । ଏବଂ ସେଇଥିପାଇଁ ସେ ଦେଶୀୟ ସମାଜ ଓ ସଂସ୍କୃତିକୁ ଅବାଂଛିତ ବୋଲି ଭାବୁଛି । ଏପରି ଏକ ପରିସ୍ଥିତିର ମୂଳକାରଣ ଖୋଜିବାକୁ ସତେଅବା ସେ ଭୟ କରୁଛି ।

ଏ ସବୁର ଉତ୍ପତ୍ତି ସ୍ଥଳ ଯେ ଆମର ଏଠି ପ୍ରଚଳିତ ଶିକ୍ଷା ପଦ୍ଧତିର ତ୍ରୁଟି ତାହା ହୃଦୟଙ୍ଗମ କରିବାକୁ ତା ପାଖରେ ଆଜି ସମୟ କାହିଁ ? ଆଜିର ଶିକ୍ଷା ଯେ ବର୍ତ୍ତମାନର ଏଇ ବସ୍ତୁବାଦୀ ଜୀବନର ସହଜ ଓ ସୁଲଭ ପୃଷ୍ଠପୋଷକ (Patronage) ଏବଂ ସ୍ୱଚ୍ଛ ସଚ୍ଚେତନ ବ୍ୟକ୍ତିର ଅଶାନ୍ତି ତଥା ଅସନ୍ତୋଷର କାରଣ, ତାହା କେହିହେଲେ ସ୍ୱୀକାର କରି ତହିଁର ପ୍ରତିକାର ଲୋଡ଼ିବାର ବ୍ୟବସ୍ଥା କରିପାରୁ ନାହାନ୍ତି । କାରଣ ସେମାନେ ଆପଣାସୁଖି ହୋଇ ସେହି ଚିରାଚରିତ ଗୋଳିଆ ପାଣିର ମୂଢ଼ କଙ୍କଡ଼ା ଜୀବନ ହିଁ ଭଲ ବୋଲି ଏକ ମଧୁର-ଆଳସ୍ୟ ଚିନ୍ତାରେ ଶ୍ରମ-କାତର ଜୀବନ ଧାରାକୁ ପସନ୍ଦ କରୁଛନ୍ତି । ତୁଚ୍ଛାଟାରେ ଭାଗ୍ୟବାଦୀ ହୋଇ ରହୁଛନ୍ତି । ପରିସ୍ଥିତି ଏବେ ଏତେ ଜଟିଳ ହେଲାଣି ଯେ, ସେମାନେ ନିଜ ଘାଆକୁ ନିଜେ ଦେଖିବାକୁ ବି ଭୟ କରି ବସିଲେଣି । ଏଇସବୁର କୁପରିଣତିକୁ ବହୁ ଆଗରୁ କ୍ରାନ୍ତଦର୍ଶୀ ଭାବେ ଅନୁଭବ କରି ଦେଶ ସ୍ୱାଧୀନ ହେବାର ଠିକ୍ ପରେ ପରେ ସେଇ ଏକ ଜୀବନଦାୟି

ଶିକ୍ଷା ଧାରାର ପ୍ରାରମ୍ଭ କରିବାକୁ ବାପି, ନୁମା ଓ ଚିତ୍ତଭାଇ ନିଜର ସକଳ ସୁଖ ସ୍ୱାଚ୍ଛନ୍ଦ୍ୟକୁ ନିଜ ଆଖି ଆଗରୁ ଆଡ଼େଇ ଦେଇ ତାଙ୍କମାନଙ୍କ ପରିକଳ୍ପିତ ଜୀବନ ବିଦ୍ୟାଳୟର ଅୟମାରମ୍ଭ କରିଥିଲେ। ସେହି ବିଦ୍ୟାଳୟର ପ୍ରାରମ୍ଭିକ ପ୍ରାଜ୍ଞିକ ବିଦ୍ୟାଦାନ ନକ୍ସାରୁ ଯାହା ଅନୁମାନ କରାଯାଏ; ସେଠାରେ ନିଜ ଜୀବନକୁ ନିଜେ ଗଢ଼ିବାର ସକଳ ସମ୍ଭାବ୍ୟ ସୁ-ଶିକ୍ଷା ପରିବେଶଟିଏ ସୃଷ୍ଟି କରି ତହିଁରେ ଛାତ୍ରଛାତ୍ରୀଙ୍କୁ ସେମାନଙ୍କର ନିଜ ଜିଜ୍ଞାସା ଗୁଡ଼ିକର ସମୁଚିତ ପରିପୂରଣ ପାଇଁ ଶିକ୍ଷକ ମାନଙ୍କର ପ୍ରଚେଷ୍ଟା ଜାରି ରଖିବାର ସଦିଛାର ସଦୁପୋଯୋଗ। ସେଠି ଏମିତି ଏକ ପରିବେଶ ସୃଷ୍ଟି ହୋଇପାରିବ (ଶିକ୍ଷକମାନଙ୍କ ଦ୍ୱାରା); ଯେଉଁଠି ସମସ୍ତଙ୍କ ଲାଗି ଶିକ୍ଷା ବା ବିଦ୍ୟା ସହଜ ଲଭ୍ୟ ହେବ, ସମସ୍ତ ବିଦ୍ୟାର୍ଥୀ ମାନଙ୍କ ଲାଗି ସମାନ ଭାବେ ହେବ। ତେଣୁ ବିଦ୍ୟାର୍ଥୀଙ୍କ ଉପରେ ଅଥବା ସେମାନଙ୍କ ବାପା, ମାଆ ମାନଙ୍କର ଉପରେ ଆଜିକାଲିକା ପରି ବିଦ୍ୟାର୍ଜନର ଖର୍ଚ୍ଚ ଭରଣାପାଇଁ ଅର୍ଥର ବୋଝ ଲଦି ଦିଆଯିବ ନାହିଁ। ସେଇ ମର୍ମରେ କ୍ରମଶଃ ପରିବର୍ତ୍ତିତ ସମୟର ଦାବିକୁ ଲକ୍ଷ୍ୟ କରି ଔଦ୍ୟୋଗିକ ଶିକ୍ଷାର ଏବଂ କୃଷି ସମ୍ବନ୍ଧୀୟ ଶିକ୍ଷାର ବୈଜ୍ଞାନିକ ଉତ୍କର୍ଷତା ସହ ବୈଜ୍ଞାନିକ ଜ୍ଞାନକୌଶଳ (Technological development) ବିକାଶର ସାହାଯ୍ୟ ନିଆଯାଇ ପାରିବ। ଯାହା ଫଳରେ ଜଣେ ବିଦ୍ୟାର୍ଥୀ ତାର ମାନସିକ ଆବଶ୍ୟକତା ମୁତାବକ ଶିକ୍ଷା ଗ୍ରହଣ କରିପାରିବ ଏବଂ ଭବିଷ୍ୟତରେ ନିଜ ଜୀବନକୁ କିପରି ବ୍ୟକ୍ତିଗତ ତଥା ସାମାଜିକ ସ୍ତରରେ ସୁପ୍ରତିଷ୍ଠିତ କରିପାରିବ, ତହିଁର ସଂପୂର୍ଣ୍ଣ ସୁବିଧା ତଥା ସ୍ୱାଧୀନତା ପାଇପାରିବ। ସେଠିସବୁ ସମୟରେ ଓ ସକଳ ସ୍ତରରେ ଶିକ୍ଷକମାନେ ତାଙ୍କର ସୁଚିନ୍ତିତ ଦିଗଦର୍ଶନ ଦ୍ୱାରା ବିଦ୍ୟାର୍ଥୀର ବିଦ୍ୟାର୍ଜନ ଅଭୀପ୍‌ସାଟିକୁ ସଠିକ ପରିଚାଳିତ କରିବାର ଆୟାସ ଜାରି ରଖିଥାନ୍ତି। ସେଥିପାଇଁ ଶିକ୍ଷକମାନଙ୍କର ଗୁରୁତ୍ୱ ଓ ଦାୟିତ୍ୱ ଆମ ଜୀବନ ବିଦ୍ୟାଳୟରେ ବେଶ୍ ଅନୁଭୂତ ହୁଏ। ଚିତ୍ତଭାଇଙ୍କର ଦାୟିତ୍ୱ ତଥା ଗୁରୁତ୍ୱ ଛାତ୍ର ଭାଇଭଉଣୀମାନେ ଭଲଭାବେ ହୃଦୟଙ୍ଗମ କରିପାରୁଥିଲେ। ଜୀବନ ବିଦ୍ୟାଳୟ ପରି ଶିକ୍ଷା ଅନୁଷ୍ଠାନଟିକୁ ସବୁ ଦୃଷ୍ଟିରୁ ସର୍ବାଙ୍ଗ ସୁନ୍ଦର କରି ଆଜିକାଲି ଯେପରି ସବୁକ୍ଷେତ୍ରରେ ପ୍ରଯୁକ୍ତି ବିଦ୍ୟାର ପ୍ରୟୋଜନ ଜନିତ ଉନ୍ନତି ଲକ୍ଷ୍ୟ କରାଯାଇ ପାରୁଛି ସେପରି କରିପାରିଥିଲେ ଅନୁଷ୍ଠାନର ସ୍ଥିତି ସୁଦୃଢ଼ ହେବା ସହ ତହିଁର ସୁଫଳ ଆମ ରାଜ୍ୟରେ ଶିକ୍ଷାକ୍ଷେତ୍ରରେ ଏକ ଅଲିଭା ଇତିହାସ ସୃଷ୍ଟି କରିପାରି ଥାଆନ୍ତା।

ଅବଶ୍ୟ ସେଥିପାଇଁ ଅନୁଷ୍ଠାନ ପାଇଁ ସେତେବେଳେ ପ୍ରଚୁର ଆର୍ଥିକ ପୃଷ୍ଠପୋଷକତା ଆବଶ୍ୟକ ପଡୁଥିଲା। ତାକୁ ପରିପୂରଣ ପାଇଁ ନୁମା ଏଇ ଅଭାବଗ୍ରସ୍ତ ବିଦ୍ୟାର୍ଥୀ ପରିବାରଟିର ସାହାରାହାହୀନ ମାଆଟିଏ ପରି ଜୀବନର ସକଳ ସୁଖ

ସୁବିଧାକୁ ଜଳାଞ୍ଜଳି ଦେଇ ଆପ୍ରାଣ ଉଦ୍ୟମ ଜାରି ରଖିଥିଲେ। ନାନା ବ୍ୟକ୍ତି ବିଶେଷ ତଥା ସଂସ୍ଥାନ ମାନଙ୍କର ଦାନସୂତ୍ରେ ଅର୍ଥ ଭିକ୍ଷା କରିବାକୁ କୁଣ୍ଠାବୋଧ କରୁନଥିଲେ। ଦୀର୍ଘ ଚାରିବର୍ଷ କାଳ ବିଦ୍ୟାଳୟଟିର ମୁଖରେ ଆର୍ଥିକ ପାଣି ଟୋରାଣି ଦେଇ ଜୀବନ ବିଦ୍ୟାଳୟକୁ ବଢ଼ାଇ କୁଢ଼ାଇ ଚାଲିଥିଲେ। ଏଥିଲାଗି ସରକାରୀ ସ୍ତରରୁ ଖୁବ୍ କମ ଅନୁଦାନ ଆସୁଥିବାରୁ ଆର୍ଥିକ ନିଅଣ୍ଟିଆ ବୋଝ ବଢ଼ିବଢ଼ି ଯାଉଥିଲା। ପିଲାମାନଙ୍କର ଷ୍ଟାଇପେଣ୍ଡ୍ ବ୍ୟତୀତ ଖୁବ୍ ନଗଣ୍ୟ ସରକାରୀ ଅନୁଦାନ ବିଦ୍ୟାଳୟକୁ ସବୁଦିଗରୁ ଦୁର୍ବଳ କରି ଚାଲିଥିଲା। ଏତେ ସମ୍ଭାବନାପୂର୍ଣ୍ଣ ଏପରି ଏକ ଅଭିନବ ଶିକ୍ଷାନୁଷ୍ଠାନ ପ୍ରତି ଶିକ୍ଷା ବିଭାଗର ଦୂରଦୃଷ୍ଟିର ଅଭାବ ଓ ଉଦାସୀନତା ଅନୁଷ୍ଠାନର କର୍ମକର୍ତ୍ତାମାନଙ୍କର ମନୋବଳକୁ କ୍ରମଶଃ ଦୁର୍ବଳ କରି ଦେଉଥିଲା।

ଏ ଅବସ୍ଥାରେ ଏଇଠିଲକ୍ଷ୍ୟ କରିବାର କଥା ଯେ ସେତେବେଳେ ଆମରାଜ୍ୟର ସରକାର ଗାନ୍ଧିଜୀଙ୍କ ପରିକଳ୍ପିତ ସଂସ୍କାର ମୂଳକ ଶିକ୍ଷା ପଦ୍ଧତିର ନାନା ସ୍ଥାନ ଅସ୍ଥାନରେ ବହୁତ ଗୁଣଗାନ କେବଳ ମୁଖରେ ମୁଖରେ କରୁଥିଲେ ହେଁ ସେ ସମୟର ସରକାରୀ ଶିକ୍ଷାଧୀଶ ମାନଙ୍କର ପ୍ରବଳ ଅହଂକାର ପ୍ରସୁତ ହୀନମନ୍ୟତାର ପ୍ରତିରୋଧ କରିନପାରି ଦୂରଦୃଷ୍ଟିବିହୀନ ପାଶ୍ଚାତ୍ୟ ଶିକ୍ଷାଭିମୁଖୀ ମାନସିକତା ନେଇ ସବୁକିଛି ଜାଣି ନଜାଣିଲା ପରି ବ୍ୟବହାର କରି ଚାଲିଲେ। ଯାହାର ଫଳ ସ୍ୱରୂପ ଆଜି ଆମଦେଶର ଶିକ୍ଷା ଆମ ଦେଶୀୟ ଜୀବନଚର୍ଯ୍ୟାର ଏବଂ ଦେଶୀୟ ସଂସ୍କୃତିର ପରିପନ୍ଥୀ ରୂପେ ଠିଆ ହୋଇ ଆମକୁ ସବୁକ୍ଷେତ୍ରରେ ଅସ୍ପୃହଣୀୟ ଭାଗ ଭାଗ କରି ପକାଇଲା। କୁଶିକ୍ଷା, ଅଶିକ୍ଷାମାନ ସେହି ଦୃଷ୍ଟିରୁ ଚାରିଆଡ଼େ ବଢ଼ିବଢ଼ି ଚାଲିଲା। ଆମ ଜୀବନଦୃଷ୍ଟି ଖାସ୍ ଆମର ହୋଇ ରହିପାରିଲା ନାହିଁ। ଗୋଟାଏ ମିଶାମିଶି ଖେଚୁଡ଼ି ସଂସ୍କୃତିର ଅସହ୍ୟ ବିସ୍ତାର ସମାଜର ସୁଖ ଶାନ୍ତିକୁ ନାରଖାର କରି ଚାଲିଲା। ଏଠି ନାନାପ୍ରକାରର ତ୍ରାସ ତଥା ସଂତ୍ରାସରେ କୌଣସି ମତେ ତିଷ୍ଠି ରହିବାର ଅନିଶ୍ଚିତ-ମାପ ଫିତା ବଢ଼ି ବଢ଼ି ଚାଲିଲା। ବ୍ୟକ୍ତି, ସମାଜ ଓ ସର୍ବୋପରି ଆମ ଦେଶ ନାନାଦି ବାହ୍ୟ ତଥା ଆଭ୍ୟନ୍ତରୀଣ ବିଭିଷିକାର ଶିକାର ହେବାରେ ଲାଗିଲା ଓ ତାହା ବର୍ତ୍ତମାନ ମଧ୍ୟ ଚାଲିଛି। ଏଥିପ୍ରତି କାହାର ହେଲେ ସାମାନ୍ୟତମ ଆଡ଼ନେତ୍ରରେ ଚାହିଁ ବା ନାହିଁ କହିଲେ ଆଦୌ ମିଥ୍ୟା ହେବ ନାହିଁ। ମୋ ମତରେ ଦେଶର ଏ ସାମୁହିକ ସଂକଟକୁ କେବଳ ଏକ ବଳିଷ୍ଠ ସମୁନ୍ନତ ଶିକ୍ଷା କ୍ଷେତ୍ରରୁ ହିଁ ମୁକାବିଲା କରାଯାଇ ପାରନ୍ତା ଯଦି ଆମ ଦେଶର ଶିକ୍ଷା ପଦ୍ଧତିଟିର ଆମୂଳଚୂଳ ପରିବର୍ତ୍ତନ କରିପାରନ୍ତେ। ସତ କହିବାକୁ ଗଲେ ତହିଁର ଅୟମାରମ୍ଭ ଆମ ଜୀବନ ବିଦ୍ୟାଳୟରେ ହୋଇଥିଲା। ସରକାର ବାହାଦୁର ଓ ରାଜନୈତିକ ଇଚ୍ଛାଶକ୍ତି ଯଦି ସେତେବେଳେ ସେପରି ଏକ ସୁଶିକ୍ଷା

ପଦ୍ଧତିଟିକୁ ସର୍ବାନ୍ତଃକରଣରେ ଆର୍ଥିକ ତଥା ମାନବ ସଂବଳ ସାହାଯ୍ୟ ସହଯୋଗ ସ୍ୱତଃସ୍ଫୂର୍ତ୍ତ ଯୋଗାଇ ଦେଇଥାଆନ୍ତେ, ତେବେ ତହିଁର ସୁଫଳ ଆମେ ସମସ୍ତେ ଅଳ୍ପେ ବହୁତେ ଉପଭୋଗ କରୁଥାଆନ୍ତେ । ଅବଶ୍ୟ ତାହା ନିଶ୍ଚିତ ଭାବେ ଏକ ବ୍ୟୟବହୁଳ ଶିକ୍ଷା ଯୋଜନା ଥିଲା; ଯାହା ବିଦ୍ୟାର୍ଥୀଟିର ଆତ୍ମବଳକୁ ବଢ଼ାଇ ସ୍ୱାବଲମ୍ବନର ମାର୍ଗରେ ନେଇଯାଇ ପାରୁଥାନ୍ତା । ତାଦ୍ୱାରା ଆଜିର ବେକାରୀ ଚିନ୍ତାରୁ ସେ ମୁକ୍ତ ହୋଇ ମଣିଷ ପରି ବଂଚି ରହିବାର ପ୍ରଚେଷ୍ଟାରେ ଲାଗି ପଡ଼ିଥାଆନ୍ତା । କିନ୍ତୁ ଆଜି ବେସରକାରୀ ସ୍ତରରେ ଯେଉଁ ବହୁ ବ୍ୟୟବହୁଳ ଶିକ୍ଷାନୁଷ୍ଠାନ ଖୋଲାଯାଇ ସେଠାରେ ପାଠ ପଢ଼ାକୁ କିଣାବିକାରେ ଲାଭଖୋର୍ ମନ ନେଇ ଯୋରଦାର୍ ବଜାୟ୍ ରଖାଯାଇଛି; ନା ସେଠି ରହୁଛି ଚରିତ୍ର ଗଠନର ମର୍ଯ୍ୟାଦା, ନା ଅଛି ଆମ ଦେଶୀୟ ସଂସ୍କୃତିର ଉଚ୍ଚ ମନୋଭାବ । ସେଠି ଜୀବନ, ବିଦ୍ୟାର୍ଥୀମାନଙ୍କ ଆଗରେ ଉଭାହୁଏ କେବଳ ବ୍ୟକ୍ତିଗତ-ବ୍ୟକ୍ତିନିଷ୍ଠ ଆପଣା ସୁଖର ଜୀବନ । ନୈତିକତାର ସ୍ୱପ୍ନ ସେଠି ସୁଦୂର ପରାହତ । ସେଠି ଭରପୁର ବ୍ୟକ୍ତି ସର୍ବସ୍ୱ ବସ୍ତୁବାଦୀ ସୁଖ ସ୍ୱପ୍ନର ହାଉଯାଉ ପରିବେଶ । ସେଠି ସମାଜ ଓ ସମୂହର ଚିନ୍ତାନଗଣ୍ୟ । ତେଣୁ ସେଠି ଦେଶ ଦଶ, ସଂସ୍କୃତି, ଦର୍ଶନ ଏବଂ ନୈତିକ ଜୀବନ ଚିନ୍ତା ଆସିବ କେଉଁଠୁ ? ସେଠି ଶିକ୍ଷା ବ୍ୟଷ୍ଟିର ଜୀବନକୁ ଆଖି ଆଗରେ ରଖେ- ସମଷ୍ଟିର ନାହିଁ । ଯାହା ମଣିଷକୁ ପଶୁ ସ୍ତର ଆଡ଼କୁ ବଳେଇ ନିଏ । ତେଣୁ ସାଧୁ ! ସାବଧାନ ॥



ସଂଶିତ ବିକାଶ ପତ୍ରିକାର ପାଶ୍ଚାତ୍ୟ ସଂସ୍କୃତି ବିଶେଷାଙ୍କ ପାଇଁ ପୃଥିବୀର ୧୬ଟି ଦେଶର ଜାତୀୟ ପତାକାର ଛବି

ଚ଼ଂପତିମୁଣ୍ଡା ଜୀବନ ବିଦ୍ୟାଳୟର ଜନ୍ମ ୧୯୫୪ ମସିହା ଅଗଷ୍ଟ ମାସ ଛବିଶ ତାରିଖ ଏକ ବର୍ଷଣମୁଖର ଦିବସରେ। ତତ୍‌କାଳୀନ ଅବିଭକ୍ତ ଢ଼େଙ୍କାନାଳ ଜିଲ୍ଲା (ବର୍ତ୍ତମାନ ଅନଗୁଳ ଜିଲ୍ଲା)ର ସଦର ମହକୁମା ଅନଗୁଳ ଟାଉନ୍‌ଠାରୁ ଏହି ସ୍ଥାନର ଦୂରତା ପ୍ରାୟ ଆଠ ମାଇଲ୍ ବା ବାର କିଲୋମିଟର ମଧ୍ୟରେ। ଏକ ନିଘଞ୍ଚ ବନ ପର୍ବତ ଘେରା ଅଞ୍ଚଳରେ ଏହା ଅବସ୍ଥିତ।

ସେଦିନ ଯେଉଁମାନେ ଆମ ରାଜ୍ୟରେ ଏକ ଆଦର୍ଶ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିବାର ପରିକଳ୍ପନା କରିଥିଲେ ଓ ସ୍ୱପ୍ନ ଦେଖିଥିଲେ ସେମାନେ ସମସ୍ତେ ଥିଲେ ମହାମାନବ ମହାତ୍ମାଗାନ୍ଧି, ବିଶ୍ୱକବି ରବୀନ୍ଦ୍ରନାଥଙ୍କର ଅନୁଗତ ଶିଷ୍ୟ ଆଉ ଶିଷ୍ୟା। ସେମାନେ ପ୍ରତ୍ୟେକେ ଥିଲେ ଭାରତ ସ୍ୱାଧୀନତା ସଂଗ୍ରାମର ତ୍ୟାଗନିଷ୍ଠ ସଂଗ୍ରାମୀ ସୈନିକ। ସେମାନେ ପ୍ରତ୍ୟେକ ଗାନ୍ଧିଜୀଙ୍କ ମୌଳିକ ଶିକ୍ଷା, ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଶାନ୍ତି ନିକେତନ ଶିକ୍ଷାପଦ୍ଧତି ସହିତ ଅତି ଓତଃପ୍ରୋତଃ ଭାବେ ଜଡ଼ିତ ଥିଲେ।

ପ୍ରଫେସର ୰ ଶତ୍ରୁଘ୍ନ ନାଥଙ୍କ ଭାଷାରେ ପୂଜ୍ୟ ବାପି (ନବକୃଷ୍ଣ ଚୌଧୁରୀ)ଙ୍କ କଳ୍ପନା, ପୂଜ୍ୟା ନୁମା (ମାଳତୀ ଚୌଧୁରୀ)ଙ୍କର ପ୍ରେରଣା ଓ ଯୁବକ ଶିକ୍ଷାବିତ୍ ଚିତ୍ତଭାଇ (ଚିତ୍ତରଞ୍ଜନ ଦାସ)ଙ୍କର ସାଧନା ଫଳରେ ଗଢ଼ିଉଠିଥିଲା ଚଂପତିମୁଣ୍ଡା ଜୀବନ ବିଦ୍ୟାଳୟ। ଚିତ୍ତରଞ୍ଜନ ଦାସ ବିଶ୍ୱଭାରତୀ ଶାନ୍ତି ନିକେତନ ଶିକ୍ଷା ସମାପ୍ତି ପରେ ପାଶ୍ଚାତ୍ୟ ଦେଶମାନଙ୍କରେ ଉଚ୍ଚଶିକ୍ଷା ଲାଭ କରି ନିଜ ରାଜ୍ୟକୁ ଫେରି ଆସିଥିଲେ ଶିକ୍ଷାକ୍ଷେତ୍ରରେ ନୂତନ କିଛି କରିବା ଉଦ୍ଦେଶ୍ୟ ନେଇ।

ISBN-13:978-81-87982-61-6

Rs. 70/-